

# ଇନ୍ଦିରା ଗାନ୍ଧି

## ଇନ୍ଦର ମାଲହୋତ୍ରା

ଅନୁବାଦ : ପ୍ରୀତୀଶ ଆଚାର୍ଯ୍ୟ ▪ ସିଦ୍ଧାର୍ଥ ମହାପାତ୍ର

ଜାତୀୟ ଜୀବନଚରିତ ମାଳା

# ଇନ୍ଦିରା ଗାନ୍ଧି

ଇନ୍ଦର ମାଲହୋତ୍ରା

ଅନୁବାଦ

ପ୍ରୀତୀଶ ଆଚାର୍ଯ୍ୟ

ସିଦ୍ଧାର୍ଥ ମହାପାତ୍ର



ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ଆମେରିକାରେ ଜନ୍ମିତ ମୋର ନାତୁଣୀ
ଆୟେଷା ହାତରେ,
ଯିଏ ଚାରିବର୍ଷ ବୟସରେ
ଇନ୍ଦିରା ଗାନ୍ଧିଙ୍କ ସମ୍ପର୍କରେ
ମତେ ତା'ର ପ୍ରଥମ ପ୍ରଶ୍ନ ପଚାରିଥିଲା ।

# ସୂଚୀପତ୍ର

# କୃତଜ୍ଞତା

ଗତ କେତେ ବର୍ଷ ଧରି ଅନେକ ବ୍ୟକ୍ତି ଇନ୍ଦିରା ଗାନ୍ଧିଙ୍କ ଜୀବନ ଏବଂ ସମୟ ସମ୍ପର୍କରେ ମତେ ସୂଚନା ଦେଇଛନ୍ତି, ବ୍ୟାଖ୍ୟା କରିଛନ୍ତି । ସମସ୍ତଙ୍କର ନାମୋଲ୍ଲେଖ ମଧ୍ୟ ଆଜି ସମ୍ଭବ ନୁହେଁ । ଅବଶ୍ୟ, ସେମାନଙ୍କ ମଧ୍ୟରୁ କିଛି ଲୋକ ନିଜର ନାମୋଲ୍ଲେଖ ଚାହାନ୍ତି ନାହିଁ । ଆଉ କିଛି ଲୋକ ଯେଉଁଭଳି ଭାବେ ଇନ୍ଦିରା ଗାନ୍ଧିଙ୍କର ଏହି ଜୀବନୀକୁ ଲେଖିବାରେ ମତେ ଅକୁଣ୍ଠ ସହଯୋଗ କରିଛନ୍ତି, ବହୁମୂଲ୍ୟ ସମୟ ଦେଇଛନ୍ତି, ତାଙ୍କୁ ଯଦି ଧନ୍ୟବାଦ ନ ଦିଏ, ମୋର କର୍ତ୍ତବ୍ୟ ପୂରଣ ହେବ ନାହିଁ । ଏଚ.ୱାଇ. ପ୍ରସାଦ ଇନ୍ଦିରା ଗାନ୍ଧିଙ୍କର ସୂଚନା ପରାମର୍ଶଦାତା ଭାବରେ ପ୍ରଧାନମନ୍ତ୍ରୀତ୍ୱର ପ୍ରଥମ ଦିନରୁ ଆରମ୍ଭ କରି ଅନ୍ତିମ ସମୟ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ । ମୋର ଅସରା ପ୍ରଶ୍ନଗୁଡ଼ିକର ସେ ଉତ୍ସାହ ସହକାରେ ଅବେଳାରେ ମଧ୍ୟ ଉତ୍ତର ଯୋଗାଇଛନ୍ତି, ପ୍ରଦତ୍ତ ତଥ୍ୟକୁ ପରଖିବା ସକାଶେ ଆଗ୍ରହ ଦେଖାଇଛନ୍ତି । କେ ସୁବ୍ରମନିଅମ ଏବଂ ଆନ୍ଦ୍ରେ ବେତେ ପାଣ୍ଡୁଲିପିର କେତେଗୋଟି ମହତ୍ତ୍ୱପୂର୍ଣ୍ଣ ପରିଚ୍ଛେଦକୁ ପଢ଼ି, ମତେ ତାଙ୍କର ବହୁମୂଲ୍ୟ ଉପଦେଶ ଦେଇଛନ୍ତି । ଇନ୍ଦିରାଙ୍କର ବିଜ୍ଞାନ ପରାମର୍ଶଦାତା ଭାବରେ ବହୁ ବର୍ଷ ଧରି କାର୍ଯ୍ୟ କରିଥିବା ଅଶୋକ ପାର୍ଥସାରଥୀ ଲୋକଲୋଚନକୁ ଆସିନଥିବା କେତୋଟି ପ୍ରସଙ୍ଗକୁ ରଖିବା ପାଇଁ ନୂଆ ଦୃଷ୍ଟିକୋଣ ଦେଇଛନ୍ତି । ନ୍ୟାସନାଲ ବୁକ୍ ଟ୍ରଷ୍ଟର ଚେୟାରମ୍ୟାନ୍ ପ୍ରଫେସର ବିପିନ ଚନ୍ଦ୍ର ଏବଂ ପାଣ୍ଡୁଲିପି ସଂପାଦନା କରିଥିବା ଶ୍ରୀରଙ୍ଗ ଝା କେବଳ ଉତ୍ସାହ ଦେଇନାହାନ୍ତି, ସାଙ୍ଗରେ ଧୈର୍ଯ୍ୟ ବି ରଖିଛନ୍ତି ।

ଇନ୍ଦିରା ଗାନ୍ଧିଙ୍କର ଜୀବନୀ ଲେଖକଙ୍କ ମଧ୍ୟରେ ଜଣେ ଅତି ପୁରୁଣା ଲେଖକ ଉମା ବାସୁଦେବ, ଯିଏ ଇନ୍ଦିରାଙ୍କୁ ନେଇ ଆଉ ଦୁଇଟି ପୁସ୍ତକ ମଧ୍ୟ ଲେଖିଛନ୍ତି, ମତେ ଅଶେଷ ସାହାଯ୍ୟ କରିଛନ୍ତି । ଇନ୍ଦିରାଙ୍କୁ ନେଇ ଅନେକ ବିବାଦୀୟ ପ୍ରସଙ୍ଗରେ ଖାସକରି ମୋ ସହ ତାଙ୍କର ଲିଖିତ ନୋଟ ବିନିମୟ ହୋଇଛି । ସେ ଇନ୍ଦିରାଙ୍କର କେତୋଟି ଫଟୋ ମଧ୍ୟ ମୋତେ ନିଜ ସଂଗ୍ରହରୁ କାଢ଼ି ଦେଇଛନ୍ତି । ତନ୍ମଧ୍ୟରୁ ଦୁଇଟି ଫଟୋଗ୍ରାଫ ଏହି ପୁସ୍ତକରେ ପ୍ରକାଶିତ । ପ୍ରେସ୍ ଇନଫର୍ମେଶନ ବ୍ୟୁରୋର ମୁଖ୍ୟ ସୂଚନା ଅଧିକାରୀ ଦୀପକ ସାଂଧୁ ଏବଂ ଫଟୋଗ୍ରାଫି

ବିଭାଗର ତାଙ୍କ ସହକର୍ମୀମାନେ ଫଟୋଗ୍ରାଫ ଦେବାରେ ଅଧିକ ଉଦାରତା ଦେଖାଇଛନ୍ତି । ଏହି ପୁସ୍ତକରେ ପ୍ରକାଶିତ ଅନେକ ପିଆଇବି ଫଟୋଗ୍ରାଫରୁ ସେମାନଙ୍କ ଉଦାରତାର ପ୍ରମାଣ ମିଳେ ।

ଉଲ୍ଲିଖିତ ସମସ୍ତ ବନ୍ଧୁଙ୍କୁ ମୋର ଅଶେଷ କୃତଜ୍ଞତା । ହେଲେ ସବୁଠାରୁ ଅଧିକ କୃତଜ୍ଞ ମୁଁ ବେନଜିର ଭୁଟ୍ଟୋଙ୍କ ପାଖରେ । ପାକିସ୍ତାନର ପୂର୍ବତନ ନିର୍ବାଚିତ ପ୍ରଧାନମନ୍ତ୍ରୀ ସେ । ବର୍ତ୍ତମାନ ଆତ୍ମ ନିର୍ବାସିତା । ଅତି ଆଗ୍ରହ ସହକାରେ ସେ ଇ-ମେଲ ମାଧ୍ୟମରେ ମୋର ଇନ୍ଦିରା ଗାନ୍ଧିଙ୍କ ସମ୍ପର୍କରେ ପ୍ରଶ୍ନଗୁଡ଼ିକର ଉତ୍ତର ଯୋଗାଇଛନ୍ତି । ଜଣେ କିଶୋରୀ ଭାବରେ ସେ ପ୍ରଥମେ ଭାରତର ଏହି "ରେଶମ ତୁଲ୍ୟ ନରମ ଓ ଇସ୍ପାତ ତୁଲ୍ୟ ଟାଣ ମହିଳା"ଙ୍କୁ ୧୯୭୨ ମସିହା ଜୁନ୍ ମାସରେ ସିମ୍ଲାଠାରେ ଭେଟିଥିଲେ । ସେହି ଦିନଠାରୁ ସେ (ବେନଜିର) ଗଭୀର ଦୁଃଖ ଏବଂ ଅତି ନାଟକୀୟତାରେ ଭରପୂର ଇନ୍ଦିରାଙ୍କର ଜୀବନକୁ ଅନୁଧ୍ୟାନ କରିଛନ୍ତି । ତାଙ୍କର ପୂର୍ଣ୍ଣ ସହଯୋଗ ପାଇଁ ମୁଁ ତାଙ୍କଠାରେ ଅତ୍ୟନ୍ତ କୃତଜ୍ଞ ।

**ଇନ୍ଦର ମାଲହୋତ୍ରା**

# ମୁଖବନ୍ଧ

ଇନ୍ଦିରା ଗାନ୍ଧିଙ୍କୁ ନେଇ ଯେତେ ବହି ଲେଖା ହୋଇଛି ବା ଲେଖା ହେଉଛି, ସେତିକି ସଂଖ୍ୟାରେ ବହି ଇନ୍ଦିରାଙ୍କ ଗୁଣୀ ପିତା ଜବାହରଲାଲ ନେହେରୁଙ୍କ ଉପରେ ସୁଦ୍ଧା ଲେଖା ହୋଇନାହିଁ । ଯା' ପଛରେ ଯଥେଷ୍ଟ କାରଣ ବି ରହିଛି । ପିତାଙ୍କ ଠାରୁ, କେବଳ ପିତା କାହିଁକି ବାକି ସମସ୍ତଙ୍କଠାରୁ ପରିମାଣରେ ଅଧିକ ହେବ ଇନ୍ଦିରାଙ୍କ ଜୀବନ ଓ କାର୍ଯ୍ୟର ନାଟକୀୟତା ଏବଂ ଦୁଃଖ । ତାଙ୍କ ଜୀବନର ଉଠାଣି-ଗଡ଼ାଣି, ମୋଡ଼-ବାଙ୍କ ଏବଂ ଦୁଃଖ-ହର୍ଷକୁ କେବଳ ଇଙ୍ଗିତ କଲେ ହିଁ ତାହା ସୁସ୍ପଷ୍ଟ ହେବ । ଉଦାହରଣସ୍ୱରୂପ, ପ୍ରଥମ ଥର ପ୍ରଧାନମନ୍ତ୍ରୀ ହେବା ପରେ ପରେ "ମୂକ କଣ୍ଢେଇ" ନାମରେ ପ୍ରତ୍ୟାଖ୍ୟାତ ହେବାର ମାତ୍ର କେତୋଟି ବର୍ଷରେ ସେ ହିନ୍ଦୁ ବିଶ୍ୱାସର ଅପରାଜେୟ ଦେବୀ ଦୂର୍ଗାର ସମ୍ମାନ ପାଇଲେ । ତା' ପଛରେ ପ୍ରମୁଖ କାରଣ ଥିଲା ୧୯୭୧ ମସିହାର ସାଧାରଣ ନିର୍ବାଚନରେ ତାଙ୍କର ବିପୁଳ ବିଜୟ ଏବଂ ବର୍ଷର ଅନ୍ତିମ କାଳଖଣ୍ଡରେ ପାକିସ୍ତାନ ଯୁଦ୍ଧରେ ମିଳିଥିବା ପ୍ରବଳ ଜୟଲାଭ, ଯାହାକି ବାଲାଂଦେଶର ମୁକ୍ତି ଆଣିଦେଲା । ଏହାର ମାତ୍ର ପାଞ୍ଚବର୍ଷ ପରେ ସେ ନିଜ ଲୋକପ୍ରିୟତାର ସବାତଳ ପାହାଚକୁ ପୁଣି ଖସି ଆସିଲେ । ସତୁରି ଦଶନ୍ଧିର ମଧ୍ୟକାଳୀନ ସମୟରେ ସେ ଲାଗୁ କରିଥିବା ଇମର୍ଜେନ୍‌ସି ବିରୁଦ୍ଧରେ ଯେଉଁ ଗଣ ଅସନ୍ତୋଷର ଜୁଆର ବଢ଼ିଲା, ତାହା ତାଙ୍କୁ ୧୯୭୭ ମାର୍ଚ୍ଚ ମାସରେ ସଂଘଟିତ ହୋଇଥିବା ନିର୍ବାଚନରେ ପରାଜିତ କଲା, କ୍ଷମତାଚ୍ୟୁତ କଲା । ପୁଣି, ଏହି ଘଟଣାର ମାତ୍ର ୩୩ ମାସ ପରେ ସେ ପାର୍ଲ୍ୟାମେଣ୍ଟରେ ଦୁଇ-ତୃତୀୟାଂଶ ବହୁମତ ଲାଭକରି କ୍ଷମତାକୁ ପ୍ରତ୍ୟାବର୍ତ୍ତନ କଲେ । ଯେଉଁମାନେ ଧରିନେଇଥିଲେ ଯେ ସେ "ଇତିହାସର ଅଳିଆ ଗଦାକୁ ଫିଙ୍ଗା ହେଲେ", ସେମାନଙ୍କୁ ଏହା ହତଚକିତ କରିବା ସ୍ୱାଭାବିକ କଥା । ଏହି ଦ୍ୱିତୀୟ ବିଜୟର ଉଲ୍ଲାସ ନ ସରୁଣୁ ପୁଣି ଆରମ୍ଭ ହେଲା ତାଙ୍କର ଦୁଃଖାନ୍ତକ ପର୍ବ । ତାଙ୍କର ଅତ୍ୟନ୍ତ ପ୍ରିୟ ଦ୍ୱିତୀୟ ପୁତ୍ର ସଂଜୟ ଷଣ୍ଡ ବିମାନ ଚାଳନା କରୁଥିବାବେଳେ ଦୁର୍ଘଟଣାଗ୍ରସ୍ତ ହୋଇ ନିହତ ହେଲେ । ଏହି ନିଷ୍ଠୁର ଦୁଃଖରୁ ସେ ଆଉ ଶେଷଯାଏଁ ଉଭୁରି ପାରିଲେ ନାହିଁ, ଯଦିଓ ଦେଶର ସେବାକୁ ଯନ୍ତ୍ରବତ ମୁଣ୍ଡେଇବା ଦାୟିତ୍ୱରୁ କେବେ ଅବ୍ୟାହତି ନେଇନାହାନ୍ତି । ପୁତ୍ର-ମୃତ୍ୟୁର ଚାରିବର୍ଷ ପରେ ସେ ନିଜେ ହତ୍ୟାର ଶିକାର ହେଲେ ।

ଇନ୍ଦିରା ଗାନ୍ଧିଙ୍କ ଜୀବନ ଓ ସମୟକୁ ନେଇ ଲୋକଙ୍କର ଅସରନ୍ତି ତଥା ବର୍ଦ୍ଧିଷ୍ଣୁ ଆଗ୍ରହ ପଛରେ ଆଉ ଏକ କାରଣ ହେଲା, ତାଙ୍କର (ଇନ୍ଦିରାଙ୍କର) ଦେଶ ଉପରେ ରହିଥିବା ଗଭୀର ଏବଂ ଦୀର୍ଘସ୍ଥାୟୀ ପ୍ରଭାବ ଏବଂ ଦେଶ ବାହାରେ ତାଙ୍କ ପ୍ରତି ରହିଥିବା ସମ୍ମାନ । ସ୍ୱାଧୀନତା ସଂଗ୍ରାମ ସମୟରେ ତଥା ତଦ୍‌ପରବର୍ତ୍ତୀ ଛଅ ଦଶନ୍ଧିରେ ଦେଶକୁ ନେତୃତ୍ୱ ଦେଇଥିବା ଏବଂ ଦେଶ ଗଠନ କରିଥିବା ଉଜ୍ଜ୍ୱଳ ତାରକାଙ୍କ ନଭମଣ୍ଡଳରେ ଭାରତର ମୁକ୍ତିଦାତା ମହାତ୍ମା ଗାନ୍ଧି ସର୍ବବୃହତ ସ୍ଥାନ ଗ୍ରହଣ କରିବେ, ଏଥିରେ ସନ୍ଦେହ ନାହିଁ । ତାଙ୍କର କେତୋଟି ପାଦ ପଛରେ ରହିବେ ମହାତ୍ମାଙ୍କ ରାଜନୈତିକ ଉତ୍ତରାଧିକାରୀ ଜବାହରଲାଲ ନେହେରୁ । ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଭାବରେ ସେ ଏକକାଳୀନ ୧୭ ବର୍ଷ ଧରି ଦେଶକୁ ସଂଗଠିତ କରିଛନ୍ତି । ସେ ଥିଲେ ଦେଶ ଆଧୁନିକୀକରଣର ସ୍ରଷ୍ଟା, ସାମାଜିକ ନ୍ୟାୟ ଓ ଗଣତନ୍ତ୍ରର ପ୍ରତିଷ୍ଠାତା ଏବଂ ଇନ୍ଦିରାଙ୍କର ପ୍ରିୟ "ପାପୁ" । ଉଜ୍ଜ୍ୱଳ ତାରକାଙ୍କର ଏହି କ୍ରମରେ ସ୍ୱାଧୀନତା ସଂଗ୍ରାମ ଏବଂ ସ୍ୱାଧୀନତୋତ୍ତର ଭାରତ ସରକାରରେ କାମ କରିଥିବା ନେହେରୁଙ୍କ କେତେ ଜଣ ସହକର୍ମୀ ମଧ୍ୟ ସ୍ଥାନ ପାଇବେ । ବିଶେଷକରି, ସର୍ଦ୍ଦାର ପଟେଲ ଯିଏ ଦେଶୀୟ ରାଜ୍ୟଗୁଡ଼ିକର ସମସ୍ୟାକୁ ଶୀଘ୍ରାତିଶୀଘ୍ର ସମାଧାନ କରି ନୂଆକରି ମିଳିଥିବା ଦେଶର ସ୍ୱାଧୀନତାକୁ ମଜବୁତ କରିବାରେ ସାହାଯ୍ୟ କଲେ । ଏମାନଙ୍କ ପରେ ନକ୍ଷତ୍ରପୁଞ୍ଜରେ ସ୍ଥାନ ମିଳିବ ଇନ୍ଦିରା ଗାନ୍ଧିଙ୍କୁ । ତାଙ୍କର ଦୀର୍ଘ କାର୍ଯ୍ୟକାଳ ଏବଂ ଅସାମାନ୍ୟ ଝଡ଼ଝଞ୍ଜାପୂର୍ଣ୍ଣ ମଧ୍ୟକାଳୀନ ଅନ୍ତରାଳ ସମୟରେ ହୋଇଥିବା ସବୁ ବିବାଦ ଓ ଅଭିଯୋଗ ସତ୍ତ୍ୱେ ତାଙ୍କ ମହତ୍ତ୍ୱ ଊଣା ହୁଏନାହିଁ । କ୍ଷମତାରେ ଥିଲାବେଳେ ଏବଂ ନଥିଲାବେଳେ ବି ଦୀର୍ଘ ଦୁଇ ଦଶନ୍ଧି ଧରି ସେ ଖୁଣ୍ଟଭଳି ସର୍ବଦା ଦୃଶ୍ୟକୁ କର୍ତ୍ତୃତ୍ୱାଧୀନ କରି ରଖିଥିଲେ । ଲୋକ ସାଂପ୍ରତିକ ପ୍ରସଙ୍ଗରେ ନିଜ ସ୍ଥିତିକୁ ପରିଭାଷିତ କରିବାପାଇଁ ଇନ୍ଦିରାଙ୍କୁ କେନ୍ଦ୍ର କରୁଥିଲେ ।

ଏହି ପରିପ୍ରେକ୍ଷୀରେ ଇନ୍ଦିରାଙ୍କୁ ନେଇ ଏବଂ ଇନ୍ଦିରାଙ୍କ ସମ୍ପର୍କରେ ନିରନ୍ତର ପ୍ରକାଶିତ ହେଉଥିବା ପ୍ରତ୍ୟେକ ପୁସ୍ତକରୁ ନୂଆ ନୂଆ କାହାଣୀର ଉଦ୍‌ଗମ ହୁଏ । ବିଶ୍ୱର ଦ୍ୱିତୀୟ ଜନସଂଖ୍ୟା ବହୁଳ ଏବଂ ସର୍ବବୃହତ ଗଣତନ୍ତ୍ର ଭାରତର ପ୍ରଧାନମନ୍ତ୍ରୀ ପଦକୁ ଇନ୍ଦିରା ଉନ୍ନୀତ ହୋଇଥିଲେ । ତାଙ୍କ ସମ୍ପର୍କରେ ଜାଣିବାପାଇଁ ବିଶ୍ୱର ଚାରିଆଡ଼େ ଆଗ୍ରହ । ଅଥଚ ଆରମ୍ଭରେ ଖୁବ୍ କମ୍ ସଂଖ୍ୟାରେ ପୁସ୍ତକ ତାଙ୍କ ସମ୍ପର୍କରେ ପ୍ରକାଶିତ ହେଲା । ତନ୍ମଧ୍ୟରୁ କେତେଗୁଡ଼ିଏ ଥିଲେ ଚଟପଟି କିସମର ଜୀବନୀ । ଆଉ କେତେକ ଥିଲେ କେବଳ ସଂବାଦପତ୍ର ଲେଖା ଓ ନିବନ୍ଧର ସଂକଳନ । "ଇନ୍ଦିରା ପୁସ୍ତକ"ର ବେଶୀଭାଗ ଦେଖିବାକୁ ମିଳିଲା ଯେତେବେଳେ ସେ (ଇନ୍ଦିରା) ପ୍ରସିଦ୍ଧିର ଶିଖର ପ୍ରଦେଶରେ ଏବଂ ସବାତଳ ପାହାଚରେ ଥିଲେ । ସତୁରି ଦଶକର ଆରମ୍ଭରେ ଇନ୍ଦିରା ଜୀବନୀ ପୁସ୍ତକର ଯେମିତି ପାହାଡ଼ ଛିଡ଼ା ହୋଇଗଲା । ପ୍ରତ୍ୟେକ ପୁସ୍ତକରେ ତାଙ୍କୁ ନଭସ୍ପର୍ଶୀ ପ୍ରଶଂସା କରାଗଲା ଏବଂ ଦୋଷ-ଦୁର୍ବଳତା ଶୂନ୍ୟ ଜଣେ ଚରିତ୍ର ବୋଲି ଘୋଷଣା କରାଗଲା । ସତୁରି ଦଶକର ଉତ୍ତରାର୍ଦ୍ଧରେ ଯେତେବେଳେ ତାଙ୍କର ରାଜନୈତିକ ପତନ ହେଲା,

ସେତେବେଳେ ସେମିତି ତାଙ୍କୁ ନେଇ ପୁସ୍ତକର ମହାବାତ୍ୟା ଆରମ୍ଭ ହୋଇଗଲା । ପ୍ରତ୍ୟେକ ପୁସ୍ତକରେ ଇମର୍ଜେନ୍‌ସି ହେଲା ପ୍ରମୁଖ ପ୍ରସଙ୍ଗ ; ନିନ୍ଦାର କାଳିମାରେ ତାଙ୍କୁ ପୋତି ଦିଆଗଲା ; କୁହାଗଲା, ସେ ଏମିତି ଏକ ଆସୁରିକ ଶକ୍ତି, ଯିଏ କସ୍ମିନକାଳେ ଦୋଷମୁକ୍ତ ହୋଇ ନପାରନ୍ତି । ବିଡ଼ମ୍ବନାର ବିଷୟ ଏହି ଯେ, କେତେକାଂଶରେ ଉଭୟ ଗୁଣଗାନ କରିଥିବା ଏବଂ ଗାଳିବର୍ଷଣ କରିଥିବା ପୁସ୍ତକର ରଚୟିତା ଥିଲେ ଜଣେ ।

ଆଶ୍ଚର୍ଯ୍ୟର କଥା ଯେ,୧୯୮୦ରେ ଇନ୍ଦିରା ଗାନ୍ଧି କ୍ଷମତାକୁ ଫେରିଆସିଲେ, ତାଙ୍କ ପଛରେ ଅକୁଣ୍ଠ ଜନସ୍ୱୀକୃତି ରହିଥିଲା । ତା ସତ୍ତ୍ୱେ, ତାଙ୍କୁ ନେଇ ନିନ୍ଦାରଟନାର ଯେଉଁ ସ୍ଥିତି, ତହିଁରେ ବିଶେଷ ପରିବର୍ତ୍ତନ ଦେଖାଗଲା ନାହିଁ । ତାଙ୍କୁ ନେଇ ଦୁଇ ବିପରୀତ ଏବଂ ଚରମ ବିଚାର ସମତାଳରେ ଦୃଢ଼ ରହିଥିଲେ । ବସ୍ତୁନିଷ୍ଠ ମତର କାହିଁ କେଉଁଠି ଦେଖା ପ୍ରାୟ ନ ଥାଏ । ଯା' ପଛରେ ମଧ୍ୟ କାରଣ ସୁସ୍ପଷ୍ଟ । ଜନସାଧାରଣ ଇମର୍ଜେନ୍‌ସିକୁ ଭୁଲିଗଲେ, ଇମର୍ଜେନ୍‌ସିର ଭୁଲ ଓ ଯଥେଚ୍ଛାଚାର ପାଇଁ କ୍ଷମା କରିଦେଲେ ଏବଂ ପ୍ରତିବଦଳରେ ଇନ୍ଦିରାଙ୍କୁ ମହାଉତ୍ସାହରେ ଭୋଟଦେଇ ଜୟଯୁକ୍ତ କରାଇଲେ । ମାତ୍ର କୁହାଳିଆ ବର୍ଗ ନା ତାଙ୍କୁ କ୍ଷମା ଦେଲେ, ନା ତାଙ୍କୁ ଭୁଲିଗଲେ । ଏମିତିରେ ବି ଦେଶର ରାଜନୈତିକ ବର୍ଗ ଇନ୍ଦିରାଙ୍କ ପକ୍ଷ ଓ ବିପକ୍ଷରେ ଦୁଇଭାଗ ହୋଇ ବିଭକ୍ତ ହୋଇଯାଇଥିଲେ । ପୁଣି, ଅଧିକାଂଶ ପଢ଼ାଶୁଣା ବ୍ୟକ୍ତି, ଗଣମାଧ୍ୟମବାଲା, କର୍ପୋରେଟ ନିର୍ବାହୀ ଅଧିକାରୀ,ଉଚ୍ଚାଧିକାରୀ ଏବଂ ସେମାନଙ୍କ ଭଳି ଲୋକ ଇନ୍ଦିରାଙ୍କ ଭିତରେ କୌଣସି କିସମର ଭଲଗୁଣ ଦେଖିବା ପାଇଁ ନାରାଜ । ଇନ୍ଦିରାଙ୍କ ହତ୍ୟାପରେ ଯେଉଁ ଜନ ସହାନୁଭୂତିର ଲହର ବୋହିଲା ଏବଂ ତା' ଦ୍ୱାରା ତାଙ୍କ ପୁଅ ଓ ଉତ୍ତରାଧିକାରୀ ରାଜୀବ ଗାନ୍ଧିଙ୍କୁ ଡ଼ିସେମ୍ବର ୧୯୮୪ମସିହାରେ ଲୋକସଭାରେ ଅଭୂତପୂର୍ବ ଚାରି-ପଞ୍ଚମାଂଶ ବହୁମତ ମିଳିଲା, ତା ବି ସେମାନଙ୍କ ମତକୁ ପରିବର୍ତ୍ତନ କରିପାରିଲା ନାହିଁ । ଏହାର ବିପରୀତ, କେତେକ ବୁଦ୍ଧିଜୀବୀ ପଞ୍ଜାବର ଦୁଃଖଦ ଘଟଣା ପାଇଁ ତାଙ୍କୁ (ଇନ୍ଦିରାଙ୍କୁ) ଆହୁରି ସମାଲୋଚନା କଲେ । ଇନ୍ଦିରାଙ୍କର ଶିଖ ସମ୍ପ୍ରଦାୟ ପ୍ରତି ପ୍ରଚୁର ଶୁଭେଚ୍ଛା ରହିଥିଲା । ଅଥଚ ସର୍ବବୃହତ ଶିଖ ଧର୍ମପୀଠ ଅମୃତସର ସ୍ୱର୍ଣ୍ଣମନ୍ଦିର ଭିତରକୁ ତାଙ୍କୁ ସୈନ୍ୟ ପ୍ରେରଣ କରିବାକୁ ପଡ଼ିଲା, କାରଣ ଉଗ୍ରବାଦୀ ଏବଂ ବିଚ୍ଛିନ୍ନତାବାଦୀ ମାତ୍ରାଧିକ ଅସ୍ତ୍ରଶସ୍ତ୍ର ଠୁଳକରି ତାକୁ ଏକ ଦୁର୍ଭେଦ୍ୟ ଗଡ଼ରେ ପରିଣତ କରି ଦେଇଥିଲେ ।

ଏଭଳି ଏକ ପରିସ୍ଥିତିରେ ମୁଁ ତାଙ୍କର ଜୀବନୀ, ଇନ୍ଦିରା ଗାନ୍ଧି : ଏ ପର୍ସନାଲ ଏଣ୍ଡ ପୋଲିଟିକଲ ବାଇଓଗ୍ରାଫି (ଇନ୍ଦିରା ଗାନ୍ଧି : ଏକ ବ୍ୟକ୍ତିଗତ ଓ ରାଜନୈତିକ ଜୀବନୀ) (ହଡ଼ର ଏଣ୍ଡ ଷ୍ଟନ, ୧୯୮୯) ଲେଖିବାକୁ ସ୍ଥିର କଲି । ଉଦ୍ଦେଶ୍ୟ ଥିଲା, ଅଯଥା ନିନ୍ଦାରଟନା ଓ ପ୍ରଂଶସାଗାନର ପଙ୍କିଳ ସ୍ରୋତରୁ ଉର୍ଦ୍ଧ୍ୱରେ ରହି ଏକ ଯଥାସମ୍ଭବ ବସ୍ତୁନିଷ୍ଠ ଚିତ୍ରକଳ୍ପର ନିର୍ମାଣ କରିବା । ଏହି ଉଦ୍ଦେଶ୍ୟ ମୋର କେତେ ଦୂର ପୂରଣ ହୋଇଛି, ତାହା ଅନ୍ୟମାନେ ନିଷ୍ପତ୍ତି କରି କହିବେ ।

ସେ ଯାହାହେଉ, ମୁଁ ଖୁସି ଯେ, ଉଭୟ ଭାରତୀୟ ଏବଂ ବିଦେଶୀ ସମୀକ୍ଷକମାନେ ପୁସ୍ତକ ସମ୍ବନ୍ଧରେ ପ୍ରାୟ ଦୁଇଭାଗରେ ବିଭାଜିତ । କେତେକଙ୍କ ମତରେ ମୁଁ ପୁସ୍ତକର ମୁଖ୍ୟ ଚରିତ୍ର ପ୍ରତି "ଅତି-ସହାନୁଭୂତିଶୀଳ" ତ ପୁଣି ଆଉ କେତେକଙ୍କ ମତରେ ଇନ୍ଦିରାଙ୍କ ଗୁଣାବଳୀ ତଥା ଉପଲବ୍ଧକୁ ବ୍ୟାଖ୍ୟା କଲାବେଳେ ମୁଁ "ଅତ୍ୟନ୍ତ କୃପଣ" ଏବଂ ତାଙ୍କର ଦୋଷତ୍ରୁଟିକୁ ବଖାଣିଲାବେଳେ ତୀବ୍ର ସମାଲୋଚନା କରିଛି । ସବୁଠାରୁ ମତେ ବେଶୀ ଦୁଃଖିତ କଲା ଯେ, ଏହି ଜୀବନୀ ପୁସ୍ତକର ଆଲୋଚନା ପାଇଁ ଉଦ୍ଦିଷ୍ଟ ସଭାମାନଙ୍କରେ ଇନ୍ଦିରାଙ୍କ ସମ୍ବନ୍ଧରେ ଭଲ କିଛି କହିବା ଆଦୌ ସମ୍ଭବପର ହେଲାନାହିଁ ।

ଆଜି ସ୍ଥିତିରେ ଦୃଢ଼ ପରିବର୍ତ୍ତନ ଦେଖାଦେଇଛି । ଦେଶବାସୀ ଅନୁଭବ କରୁଛନ୍ତି ଯେ, ଇନ୍ଦିରାଙ୍କ ଭୁଲ-ଭଟକା ତୁଳନାରେ ଦେଶ ପାଇଁ କରିଥିବା ତ୍ୟାଗର ପରିମାଣ ଅନେକ ବେଶୀ । ତାଙ୍କର ରୂପାଙ୍କନରେ ପରିବର୍ତ୍ତନ ହୋଇଛି, ଯଦିଓ ଏବେ ସୁଦ୍ଧା ତାଙ୍କର ଅନେକ ତୀବ୍ର ସମାଲୋଚକ ରହିଛନ୍ତି, ଯେଉଁମାନେ ପଦପଦକେ ତାଙ୍କୁ ଭର୍ତ୍ସନା କରିବାକୁ ପଛାନ୍ତି ନାହିଁ ।

ଉଲ୍ଲେଖର ବିଷୟ ଏହି ଯେ, ଏଭଳି ସମାଲୋଚକଙ୍କର ସଂଖ୍ୟା ମଧ୍ୟ କ୍ଷୀଣରୁ କ୍ଷୀଣତର ହେବାରେ ଲାଗିଛି । ଏହି ମହତ୍ତ୍ୱପୂର୍ଣ୍ଣ ପରିଘଟଣା ପଛରେ ରହିଥିବା କାରଣଗୁଡ଼ିକୁ ପୁସ୍ତକରେ ଯଥୋଚିତ ସ୍ଥାନରେ ଆଲୋଚନା କରାଯିବ । ମାତ୍ର ଦେଶ ତଥା ସମସାମୟିକ ଇତିହାସର ପ୍ରତିବଦ୍ଧ ଛାତ୍ରମାନେ ଇନ୍ଦିରାଙ୍କର ଜୀବନ ଏବଂ ନେତୃତ୍ୱକୁ ପୁନରାବଲୋକନ କରନ୍ତୁ ବୋଲି ଇଚ୍ଛା କଲାବେଳେ ପରିବର୍ତ୍ତନର ସେହି ବ୍ୟାପକତା ଓ ମହତ୍ତ୍ୱ ପ୍ରମୁଖ କାରଣ ହେବା ଉଚିତ । ତାଙ୍କ ମୃତ୍ୟୁର ଅର୍ଥାତ୍ ଇତିହାସ ପାଲଟିବାର ଏକୋଇଶ ବର୍ଷ ପରେ ଏହି ନୂତନ ପରିପ୍ରେକ୍ଷୀରେ ତାଙ୍କୁ ଦେଖିବାର ଆବଶ୍ୟକତା ରହିଥିବାରୁ ତାଙ୍କର ଏକ ସଦ୍ୟତମ ଜୀବନୀ ଲେଖିବା ଉଚିତ ହେବ ବୋଲି ବିଚାରିଲି । ଉତ୍ସମାନର ବସ୍ତୁନିଷ୍ଠା ରଖିବା ଏବଂ ନ୍ୟାୟପୂର୍ଣ୍ଣ ହେବା ହେଲା ମୋର ପ୍ରମୁଖ ପ୍ରେରଣାର ସ୍ରୋତ ।

ଏହି ପରିପ୍ରେକ୍ଷୀରେ ଏତିକି କହିବା ଠିକ୍ ହେବ ଯେ ପୂର୍ବରୁ ଲିଖିତ ଜୀବନୀରେ କିଛି ନୂଆ ତଥ୍ୟ ଦେଇ ବା ତାକୁ ସଂକ୍ଷିପ୍ତ କରି ମୁଁ ଏହି ପାଣ୍ଡୁଲିପି ପ୍ରସ୍ତୁତ କରିନାହିଁ । କାରଣ, ଆଗରୁ ତାଙ୍କ ସମ୍ପର୍କରେ ଯାହା ସବୁ ତଥ୍ୟ ଦିଆଯାଇଛି, ତା' ବାହାରେ ଏମିତି କିଛି ନୂଆ ଉନ୍ମୋଚିତ ହୋଇନାହିଁ, ଯାହାକୁ ସାମିଲ କରିହେବ । ଅବଶ୍ୟ ଦଲିଲଗୁଡ଼ିକରେ ଏମିତି କିଛି ରହିଥାଇପାରେ, ଯାହାକୁ ସରକାରୀଭାବେ ଗୁପ୍ତ ବୋଲି ବିଜ୍ଞାପିତ କରାଯିବ । ସେହି ଦଲିଲଗୁଡ଼ିକ ସାଧାରଣରେ ପଢ଼ିବାପାଇଁ ଅନୁମତି ମିଳିବା ହୁଏତ ନିକଟ ଭବିଷ୍ୟତରେ ଏକ ଦୁରୂହ ବ୍ୟାପାର ହେବ । ବନ୍ଧୁ ତଥା ଅଚିହ୍ନା ବ୍ୟକ୍ତିମାନଙ୍କୁ ଇନ୍ଦିରା ହଜାର ହଜାର ସଂଖ୍ୟାରେ ଚିଠି ଲେଖିଛନ୍ତି । କିଛି ଲୋକ ଚାହାନ୍ତି ନାହିଁ ଯେ ସେହି ପତ୍ରଗୁଡ଼ିକ ଲୋକଲୋଚନକୁ ଆସୁ । ଯଦିଓ ସେଥିରେ କିଛି ସୁରକ୍ଷା କିମ୍ବା ସରକାରୀ ଗୋପନୀୟତା ପ୍ରଶ୍ନ ଜଡ଼ିତ ନୁହେଁ । ପତ୍ରଗୁଡ଼ିକରୁ ଇନ୍ଦିରାଙ୍କ ବ୍ୟକ୍ତିତ୍ୱ ସମ୍ପର୍କରେ ମୂଲ୍ୟବାନ ଦୃଷ୍ଟିକୋଣ ମିଳିପାରନ୍ତା । ଏହା ଅତ୍ୟନ୍ତ ଅବସୋସର କଥା । ତା'

ସତ୍ତ୍ୱେ, ମୁଁ ବିଶେଷ ଆନନ୍ଦିତ ଯେ, ଲୋକ ଦୃଷ୍ଟିକୁ ଏଯାଏଁ ଆସି ନଥିବା କେତୋଟି ମହତ୍ତ୍ୱପୂର୍ଣ୍ଣ ଘଟଣା ଏବଂ ତାର ଗୁମର କଥାକୁ ଏହି ପୁସ୍ତକରେ ସମ୍ମିଳିତ କରିପାରିଛି ।

ପ୍ରଦତ୍ତ ମତ ବା ବିଚାର ପାଇଁ କେବଳ ମୁଁ ହିଁ ଉତ୍ତରଦାୟୀ ରହିବି । ପାଠକ ତାକୁ ଗ୍ରହଣ କରିପାରନ୍ତି, ବା ଅଗ୍ରହଣୀୟ ବି ମନେ କରିପାରନ୍ତି । ଇନ୍ଦିରା ମତେ ବା ଅନ୍ୟମାନଙ୍କୁ ଘରୋଇ କଥାବାର୍ତ୍ତାବେଳେ ଯାହା କହିଛନ୍ତି, ତାର ସତ୍ୟତା ଜାଣିବାପାଇଁ ଯଥାସମ୍ଭବ ପ୍ରୟାସ କରିଛି । ବହିରେ ସାମିଲ କରାଯାଇଥିବା ଅନ୍ୟ ତଥ୍ୟଗୁଡ଼ିକୁ ମଧ୍ୟ ବାରମ୍ବାର ପରୀକ୍ଷା ନିରୀକ୍ଷା କଲାପରେ ସ୍ଥାନିତ କରାଯାଇଛି । ଆଶା, ପାଠକ ମତେ ବିଶ୍ୱାସ କରିବେ । ଏହିଭଳି ଏକ କ୍ଷୁଦ୍ରାକାରର ପୁସ୍ତକକୁ ସଂଖ୍ୟା ଏବଂ ତଥ୍ୟର ପ୍ରାପ୍ତସ୍ଥାନ ଆଦି ବିସ୍ତୃତ ସ୍ରୋତକୁ ଉଲ୍ଲେଖକରି ମୁଁ ବୋଝିଲା କରିନାହିଁ । ଯେଉଁଠି ଅତ୍ୟନ୍ତ ଆବଶ୍ୟକ, ସେଠାରେ ତଥ୍ୟର ସ୍ରୋତ ଉଲ୍ଲିଖିତ ହୋଇଛି । ଅବଶ୍ୟ ଏହାର ସଂଖ୍ୟା ବହୁତ ବେଶୀ ନୁହେଁ । ତଥ୍ୟାତ୍ମକତା ପଛରେ କେବଳ ଗୋଟାଏ ନିଦର୍ଶନ ହେଲା ସାମ୍ବାଦିକ ଭାବରେ ମୋର ପରିଚୟ । 'ଷ୍ଟେଟସ୍‌ମେନ"ର ରାଜନୈତିକ ପ୍ରତିନିଧି ଏବଂ ରେସିଡ଼େଣ୍ଟ ସଂପାଦକ ରୂପରେ ଦାୟିତ୍ୱ ନିର୍ବାହ କରିଛି, 'ଦି ଟାଇମ୍‌ସ ଅଫ ଇଣ୍ଡିଆ'ର ଦିଲ୍ଲୀ ସଂପାଦକ ପଦରେ ରହିଛି ଏବଂ ଲଣ୍ଡନ, ମାଞ୍ଚେଷ୍ଟରର 'ଦ ଗାର୍ଡ଼ିଆନ୍' ପତ୍ରିକାର ଭାରତରେ ପ୍ରତିନିଧି ଭାବରେ କାର୍ଯ୍ୟ କରିଛି ତଥା ଲେଖକ ଭାବରେ ମୋର ନିଜସ୍ୱ ପରିଚୟ ରହିଛି ।

ଇନ୍ଦିରା ଗାନ୍ଧିଙ୍କର କେବଳ ପ୍ରଥମ ନାମ 'ଇନ୍ଦିରା'ର ବହୁଳ ଭାବରେ ପୁସ୍ତକଟିରେ ବ୍ୟବହାର ହୋଇଛି । ତା' ପଛରେ ଥିବା କାରଣକୁ ମୋର ସ୍ପଷ୍ଟ କରିଦେବା କଥା । ଏହା ସମ୍ପୂର୍ଣ୍ଣ ରୂପେ ବ୍ୟାବହାରିକ କାରଣରୁ କରାଯାଇଛି, ଇନ୍ଦିରାଙ୍କ ସାଙ୍ଗରେ ଘନିଷ୍ଠତା ଦେଖାଇବାକୁ ଯାଇ ନୁହେଁ । ଗାନ୍ଧି କିମ୍ବା ଶ୍ରୀମତୀ ଗାନ୍ଧି ବୋଲି ବାରମ୍ବାର ଲେଖିଥିଲେ, ସ୍ପଷ୍ଟତା ରହିପାରି ନଥାନ୍ତା । ଗାନ୍ଧିର ମାନେ ମହାତ୍ମା ଗାନ୍ଧି ବି ହୋଇପାରେ, ଇନ୍ଦିରାଙ୍କର ଦୁଇ ପୁଅ ବି ହୋଇପାରନ୍ତି । ଠିକ୍ ସେମିତି ଶ୍ରୀମତୀ ଗାନ୍ଧି ବୋଲି ଲେଖିଥିଲେ ବିଭ୍ରାନ୍ତି ଦୂର ହୋଇନଥାନ୍ତା, କାରଣ ତାଙ୍କର ଦୁଇ ବୋହୂ, ସୋନିଆ ଏବଂ ମେନେକା ଗାନ୍ଧିଙ୍କର ମଧ୍ୟ ବହିରେ ଉଲ୍ଲେଖ ରହିଛି । ଏମାନଙ୍କ ମଧ୍ୟରୁ ସୋନିଆ ଗାନ୍ଧିଙ୍କୁ ସେ ଅତ୍ୟନ୍ତ ଭଲ ପାଉଥିଲେ । ବର୍ତ୍ତମାନ ଇନ୍ଦିରା ଏବଂ ନିଜ ପତିଙ୍କ ସେ ହିଁ ନ୍ୟାୟପୂର୍ଣ୍ଣ ଉତ୍ତରାଧିକାରିଣୀ ।ମେନେକାଙ୍କ ସହ ଇନ୍ଦିରାଙ୍କର ଘୋର ମନୋମାଳିନ୍ୟ ସୃଷ୍ଟିହେଲା ।

ଏହି ସଂକ୍ଷିପ୍ତ ଭୂମିକା ଉତ୍ତାରୁ ମୁଁ ସିଧା ସିଧା ଆମ ସମୟର ସେହି ମହାନ ଭାରତୀୟଙ୍କ ଅନନ୍ୟ ଜୀବନ-କାହାଣୀ କହିବାକୁ ପ୍ରୟାସ କରିବି, ଯିଏ ବିବାଦୀୟ ଥିଲେ, ତାଙ୍କଠାରେ ଜଟିଳତା ବି ରହିଥିଲା ; ବିରୋଧାଭାସର ତ ତାଙ୍କୁ ଏକ ନିଦର୍ଶନ ବୋଲି କୁହାଯିବ ; ତା' ସାଙ୍ଗରେ କିନ୍ତୁ ସେ ସମସ୍ତଙ୍କର ଦୃଷ୍ଟି ମଧ୍ୟ ଆକର୍ଷଣ କରିପାରୁଥିଲେ ।

—— ୧ ——



# ଆରମ୍ଭ

ଯେଉଁ ସ୍ଥାନରେ ଏବଂ ଯେଉଁ ପରିବାରରେ ସେ ଜନ୍ମନେଲେ, ଉଭୟକୁ ନେଇ ଇନ୍ଦିରା ଗାନ୍ଧି ଥିଲେ ନିତାନ୍ତ ଭାଗ୍ୟବାନ । ୧୯୧୭ ନଭେମ୍ବର ୧୯ରେ ତାଙ୍କ ଜନ୍ମବେଳକୁ ଆହ୍ଲାବାଦ, ଯାହା କି ବର୍ତ୍ତମାନ ବିମର୍ଷକର ଭାବେ ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥାରେ, ସେତେବେଳେ ଥିଲା ଏକ ପ୍ରମୁଖ ସହର ଏବଂ ତାଙ୍କ ଜେଜେ ବାପା ମୋତିଲାଲ ନେହେରୁ - ଦୀର୍ଘକାୟ, ଅଭିଜାତ, ଅତ୍ୟନ୍ତ ସଫଳ ଏବଂ ଧନାଢ୍ୟ ଓକିଲ-ଥିଲେ ସେହି ସହରର ଜଣେ ବିଶିଷ୍ଟ ନାଗରିକ । ଭାରତର ତିନିଟି ପବିତ୍ର ନଦୀ, ଗଙ୍ଗା, ଯମୁନା ଏବଂ ପୁରାଣ ବର୍ଣ୍ଣିତ ଏବଂ ଆମ ଚୈତନ୍ୟ ତଳେ ପ୍ରବହମାନ ବୋଲି ବିଶ୍ୱାସ କରାଯାଉଥିବା ସରସ୍ୱତୀର ସଙ୍ଗମସ୍ଥଳ ଭାବେ ପରିଚିତ ଆହ୍ଲାବାଦ କେବଳ ଏକ ପ୍ରମୁଖ ତୀର୍ଥସ୍ଥାନ ଭାବେ ପରିଚିତ ନଥିଲା, ଯାହା ଆଜି ଯାଏଁ ଅଛି ମଧ୍ୟ, ଏହା ଥିଲା ପ୍ରଶାସନ, ନ୍ୟାୟ, ରାଜନୀତି, ଶିକ୍ଷା ଏବଂ ବାଣିଜ୍ୟର ଏକ ପେଣ୍ଠସ୍ଥଳୀ । ଉଚ୍ଚ ପର୍ବତାଞ୍ଚଳରୁ ଗାଙ୍ଗେୟ ସମତଳ ଭୂମିକୁ ଓହ୍ଲାଇ ଆସି ବସବାସ କରିଥିବା ଏକ କାଶ୍ମୀର ପଣ୍ଡିତ ପରିବାରର ଦାୟାଦ ମୋତିଲାଲ ୧୮୬୧ ମସିହାରେ ଜନ୍ମଲାଭ କରିବାର ଛଅମାସ ଆଗରୁ ତାଙ୍କ ବାପାଙ୍କ ମୃତ୍ୟୁ ହୋଇସାରିଥିଲା, ସୁତରାଂ ଭାରତୀ-ପର୍ସୀୟ ଏବଂ ପାଶ୍ଚାତ୍ୟ ସଂସ୍କୃତି ଦ୍ୱାରା ପ୍ରଭାବିତ ତାଙ୍କର ଜଣେ ବଡ଼ ଭାଇଙ୍କ ନିକଟରେ ସେ ଲାଳିତ ପାଳିତ ହୋଇଥିଲେ । ସେ ଥିଲେ ସମ୍ପୂର୍ଣ୍ଣଭାବେ ନିଜ ହାତରେ ଗଢ଼ା ହୋଇଥିବା ଜଣେ ବ୍ୟକ୍ତିଙ୍କୁ ଏବଂ ହଠାତ୍ ତାଙ୍କ ବଡ଼ଭାଇଙ୍କ ଅକାଳ ବିୟୋଗ ଘଟିଲାପରେ ଏକ ବିଶାଳ ଯୌଥ ପରିବାରର ଦାୟିତ୍ୱ ତାଙ୍କ ଉପରକୁ ହିଁ ଚାଲିଆସିଲା ।

ତାଙ୍କ ବିଶାଳ ପ୍ରାସାଦୋପମ ଘରେ, ଯାହାର ନାମ ସେ ଯଥାର୍ଥରେ ରଖିଥିଲେ ଆନନ୍ଦ ଭବନ ଏବଂ ଯାହାକୁ ସେ ପରେ ଦେଶ ଉଦ୍ଦେଶ୍ୟରେ ଦାନ କରିଯାଇଥିଲେ, ସେ ତାଙ୍କ ଦୁଇ ଝିଅ ସ୍ୱରୂପ (ଯେ କି ପରେ ବିଜୟଲକ୍ଷ୍ମୀ ପଣ୍ଡିତ ଭାବେ ପ୍ରସିଦ୍ଧି ଲାଭ କରିଥିଲେ) ଏବଂ କୃଷ୍ଣାଙ୍କ ପାଇଁ ରଖିଥିଲେ ଇଂରାଜୀ ତତ୍ତ୍ୱାବଧାୟିକା ଏବଂ ପୁଅ ଜବାହରଙ୍କୁ ଶିକ୍ଷା ଲାଭ ପାଇଁ ହାରୋ ଏବଂ କେମ୍ବ୍ରିଜ୍‌କୁ ପଠାଇଥିଲେ । ତେଣୁ ଏଥିରେ ବିସ୍ମିତ ହେବାର ନଥିଲା ଯେ ତାଙ୍କର ସୁନ୍ଦରୀ ବୋହୂ କମଳାଙ୍କ ପ୍ରସବକାଳୀନ ଚିକିତ୍ସା ପାଇଁ ସେ କରିଥିଲେ ପାରୁପର୍ଯ୍ୟନ୍ତ ପ୍ରୟାସ

ଏବଂ ଅର୍ଥବ୍ୟୟ । ସେ ନିଜ ଚରିତ୍ରାନୁସାରେ ଜଣେ ସ୍କଟଲାଣ୍ଡିୟ ଡ଼ାକ୍ତରଙ୍କୁ ସେଇ ସମୟତକ ସ୍ଥାୟୀଭାବେ ନିଜଘରେ ରଖିଥିଲେ । ସେଦିନ ଆଗ୍ରହ ଏବଂ ଉତ୍କଣ୍ଠାରେ ଶ୍ୱାସରୁଦ୍ଧ ହେବା ପ୍ରାୟ ଅପେକ୍ଷାରତ ନେହେରୁ ପରିବାର ସମ୍ମୁଖରେ ଯେତେବେଳେ ସେଇ ସ୍କଟୀୟ ଡ଼ାକ୍ତର ଘୋଷଣାକଲେ ଯେ ସୁନ୍ଦର ଝିଅଟିଏ ହୋଇଛି, ସେତେବେଳେ ଜବାହର ଖୁସିରେ କୁରୁଳି ଉଠିଥିଲେ । ଅନ୍ୟମାନେ ଯଦିଓ ଏହି ସମ୍ବାଦରେ ଖୁସି ନଥିଲେ, ତଥାପି କେଉଁଠାରେ ଚୁପ୍‌ରହିବା ଶ୍ରେୟସ୍କର, ତାହା ବୁଝିପାରି ନିରବ ରହିଥିଲେ । ତେବେ, ଜବାହରଙ୍କ ମା, ସ୍ୱରୂପ ରାଣୀ, ନିଜର ତଥା ସେଇ ସମୟର ପୁରୁଷପ୍ରଧାନ ସମାଜର ଭାବନାକୁ ପ୍ରକାଶ କରିବାକୁ ଯାଇ ଯେତେବେଳେ କହିଦେଇଥିଲେ, "ପୁଅଟିଏ ହେବା ଉଚିତ୍ ଥିଲା", ସେତେବେଳେ ମୋତିଲାଲଙ୍କ ଠାରୁ ଏକ ଗାଳି ଆମନ୍ତ୍ରଣ କରିବା ହିଁ ସାର ଥିଲା । ମୋତିଲାଲ ଥିଲେ ନିଜ କୋପ ପାଇଁ ପ୍ରସିଦ୍ଧ ଏବଂ ପୁରୁଷାନୁକ୍ରମିକ ଭାବେ ଯେଉଁ ଗୁଣର ଅଧିକାରୀ ତାଙ୍କ ପରବର୍ତ୍ତୀ ପିଢ଼ିର ଲୋକେ ହୋଇଥିଲେ ।

"ଆମେ ଆମ ପୁଅ ଏବଂ ଝିଅଙ୍କ ଲାଳନପାଳନ ଭିତରେ କିଛି ପ୍ରଭେଦ ରଖିଛେ କି ?", କୁପିତ ମୋତିଲାଲ ତାଙ୍କ ପତ୍ନୀଙ୍କ ଠାରୁ ଜାଣିବାକୁ ଚାହିଁଲେ । "ତୁମେ ଉଭୟଙ୍କୁ ଏକାଭଳି ଭଲପାଅ ନାହିଁ କି ? ଜବାହରର ଏଇ ଝିଅ, କିଏ ଜାଣେ, ହଜାରେ ପୁଅଙ୍କଠାରୁ ବି ଭଲ ନକରିବ ।" ଖୁବ୍ କ୍ୱଚିତ ଏଭଳି ଏକ ଭବିଷ୍ୟବାଣୀ ସମ୍ଭବ ହୋଇଥାଏ । ସେଇଭଳି ଆଉ ଏକ ସନ୍ଦେଶ ଥିଲା ଆଗତଦଷ୍ଟାର ବାଣୀ ଭଳି । ସେଦିନ ଆନନ୍ଦ ଭବନକୁ ଆସୁଥିବା ହଜାରହଜାର ଟେଲିଗ୍ରାମ ସନ୍ଦେଶ ଭିତରୁ କବି ଏବଂ ନେତ୍ରୀର ବିରଳ ସମ୍ମିଶ୍ରଣ ତଥା ଭାରତର କୋକିଳଭାବେ ଖ୍ୟାତ ସରୋଜିନୀ ନାଇଡୁଙ୍କ ପାଖରୁ ଆସିଥିବା ଟେଲିଗ୍ରାମ୍‌ଟି ଥିଲା ସେଇ ଦୃଷ୍ଟିରୁ ସ୍ୱତନ୍ତ୍ର । ସେ ଲେଖିଥିଲେ, "ଏଇ ଶିଶୁଟି ହେଉଛି ଭାରତର ନୂତନ ଆତ୍ମା ।" ଗର୍ବିତ ପିତା ; ଯେ କି ଏକାଧାରରେ ଥିଲେ ଇତିହାସସ୍ରଷ୍ଟା ଏବଂ ଲେଖକ, ତାଙ୍କ ପାଇଁ କନ୍ୟାଟି ଥିଲା 'ବିପ୍ଳବର ସନ୍ତାନ' କାରଣ ରୁଷିଆର ବୋଲ୍‌ସେଭିକ୍ ବିପ୍ଳବର ବାର ଦିନ ପରେ କନ୍ୟାଟି ଭୂମିଷ୍ଠ ହୋଇଥିଲା ।

ନିଜ ମା' ଇନ୍ଦିରାନୀଙ୍କ ନାମାନୁସାରେ ମୋତିଲାଲ ତାଙ୍କ ନାତୁଣୀର ନାମ ରଖିଲେ ଇନ୍ଦିରା ଏବଂ ଇନ୍ଦିରା ବଡ଼ ହେଲାପରେ ଯେଉଁ ଅପରାଜେୟତାର ନମୁନା ପ୍ରଦର୍ଶନ କରିଥିଲେ, ମୋତିଲାଲଙ୍କ ମା ତାଙ୍କ ସମୟରେ ଥିଲେ ସେଇଭଳି ଦାମ୍ଭିକା । ଇନ୍ଦିରା ସହିତ 'ପ୍ରିୟଦର୍ଶିନୀ', ଯାହାର ଅର୍ଥ ହେଉଛି ଦେଖିବାକୁ ସୁନ୍ଦର, ଯୋଡ଼ିଲେ ତାଙ୍କ ବାପା ଏବଂ ମା । ପ୍ରଥମ ଦିନରୁ ହିଁ ଇନ୍ଦିରା ସାରା ପରିବାରର ସ୍ନେହ ଦ୍ୱାରା ପୋତିହୋଇପଡ଼ିଥିଲେ, ବିଶେଷତଃ ମୋତିଲାଲଙ୍କ ଦ୍ୱାରା, ଯେ କି ଇନ୍ଦିରାଙ୍କୁ ସୀମାତୀତ ଭାବେ ଭଲପାଉଥିଲେ ଏବଂ ତାଙ୍କର ଇଚ୍ଛା ଏବଂ ଖିଆଲର ପୂର୍ତ୍ତିକରି ତାଙ୍କୁ ଏକ ରକମର ନଷ୍ଟ କରିଦେଇଥିଲେ । ସାରା ପରିବାର ଭିତରେ ସେ ହିଁ ଏକମାତ୍ର ସଦସ୍ୟ,ଯେ କି ମୁଖିଆଙ୍କ ଅଗ୍ନିସମ କୋପର ଶିକାର ହେଉନଥିଲେ । ଯେତେବେଳେ

ତାଙ୍କ ବାପା ତାଙ୍କୁ ଶୃଙ୍ଖଳିତ କରିବାକୁ ଚାହୁଁଥିଲେ, ସେତେବେଳେ ସେ ଜେଜେଙ୍କ ଶରଣ ନେଉଥିଲେ, ଏବଂ ତାଙ୍କ ବକ୍ତବ୍ୟ ଅନୁସାରେ, ଜେଜେ ତାଙ୍କୁ ଅକୁଣ୍ଠ ସମର୍ଥନ ଦେଉଥିଲେ ।

ତଥାପି, ଚୈତନ୍ୟ ଉଦୟ ହେବା ଦିନଠାରୁ ଇନ୍ଦିରା ଥିଲେ ଜଣେ ଆକ୍ରାନ୍ତ ଶିଶୁ । ତାଙ୍କ ମା' କମଳା, ନେହେରୁ ପରିବାରର ମହିଳାମାନଙ୍କଠାରୁ, ବିଶେଷକରି ନେହେରୁ ଭଉଣୀ ଭିତରେ ବଡ଼ ବିଜୟଲକ୍ଷ୍ମୀଙ୍କଠାରୁ, ଯେଉଁ ନିର୍ମମ ବ୍ୟବହାର ପାଉଥିଲେ, ତାହା ଥିଲା ଏହାର କାରଣ । ପରିବାରର ସଦସ୍ୟମାନଙ୍କ ଭିତରେ କଳହ ଏବଂ କଥା କଟାକଟି, ଆଜି ବି ଯେମିତି ଚାଲିଛି, ସେତେବେଳେ ବି ସେମିତି ଚାଲିଥିଲା ।

କିନ୍ତୁ, କମଳା ଏବଂ ତାଙ୍କ ନଣନ୍ଦଦ୍ୱୟଙ୍କ ଭିତରେ ସମସ୍ୟା ଥିଲା ବେଶ୍ ତୀବ୍ର ଏବଂ ଏହା ପଛରେ ଥିବା କାରଣଟି ଥିଲା ନିଆରା । କମଳାଙ୍କ ପରିବାର ବି କାଶ୍ମିରୀ ପଣ୍ଡିତ ଥିଲେ ଏବଂ ସମ୍ପତ୍ତି ତଥା ମର୍ଯ୍ୟାଦାରେ ନେହେରୁଙ୍କ ପରିବାରଠାରୁ କୌଣସିଭାବେ ଊଣା ନଥିଲେ । କିନ୍ତୁ, ସେମାନେ ଥିଲେ ସମ୍ପୂର୍ଣ୍ଣଭାବେ ରକ୍ଷଣଶୀଳ ତଥା ପାଶ୍ଚାତ୍ୟର ପ୍ରଭାବ ତାଙ୍କୁ କୌଣସି ପ୍ରକାରେ ସ୍ପର୍ଶ କରିନଥିଲା । ସାଂଘାତିକଭାବେ ଇଂଲିଶ୍‌ପ୍ରେମୀ ନେହେରୁଙ୍କ ପରିବାରରେ ଚଳିବାପାଇଁ ଏହା ଥିଲା କମଳାଙ୍କ ସବୁଠାରୁ ବଡ଼ ଅଯୋଗ୍ୟତା । କମଳାଙ୍କୁ ଇଂରାଜୀ ଶିଖାଇବା ପାଇଁ ମୋତିଲାଲ ନିଜ ଝିଅମାନଙ୍କ ତତ୍ତ୍ୱାବଧାୟିକାଙ୍କୁ କହିଥିଲେ । ମାତ୍ର, ତାହା କୌଣସି ପ୍ରକାରେ ଫଳ ଦେଲାନାହିଁ । କାରଣ ଇଂରାଜୀରେ ଭାଷାଗତ ସାବଲୀଳତା ହାସଲ କରିବା କମଳାଙ୍କ ପାଇଁ ହୁଏତ ଏକ ସମସ୍ୟା ନଥିଲା, ଅସଲ କଥାଟି ହେଉଛି କମଳାଙ୍କ ପାଖରେ ଥିଲା ତଥାକଥିତ ଆଭିଜାତ୍ୟର ଅଭାବ, ଯାହାକି ତାଙ୍କୁ ବିଜୟଲକ୍ଷ୍ମୀ ଏବଂ ଅନ୍ୟମାନଙ୍କ ନିକଟରେ କରିଥିଲା ଉପହାସର ପାତ୍ର । ପ୍ରିୟ ପୁତ୍ର ଜବାହରଙ୍କ ପାଇଁ ଯେ କମଳା ଯୋଗ୍ୟ ନୁହନ୍ତି, ଏଭଳିଏକ ଧାରଣାକୁ ତାଙ୍କ ମା' ମଧ୍ୟ ପ୍ରକାଶ୍ୟରେ ବ୍ୟକ୍ତ କରିବାରେ କାର୍ପଣ୍ୟ କରୁନଥିଲେ ।

ପତ୍ନୀଙ୍କ ମାନସିକ ଯାତନାର ଉପଶମ କରିବାରେ କୌଣସି ପ୍ରୟାସ ଜବାହର କରୁନଥିଲେ ଏବଂ ଏହି ଆଚରଣ ସେମାନଙ୍କ ଝିଅକୁ ମାନସିକ ସ୍ତରରେ ଅଧିକ ଆଘାତ ଦେଉଥିଲା । ଅନେକ ବର୍ଷପରେ, ଯେତେବେଳେ ସମୟ ଗଡ଼ିଯାଇଥିଲା, ସେ ବିମର୍ଷକର ଭାବେ ଅଥଚ ଖୋଲାଖୋଲି ସ୍ୱୀକାର କରିଥିଲେ ଯେ ସେ ତାଙ୍କ ପତ୍ନୀଙ୍କ ପ୍ରତି ଉଦାସୀନ ଥିଲେ ଏବଂ ତାଙ୍କ ବାହାଘର ସମ୍ପୂର୍ଣ୍ଣଭାବେ ସଫଳ ନଥିଲା ।

ନିଜ ମା'ଙ୍କ ସହ ଅସହାୟଭାବେ ଯନ୍ତ୍ରଣା ଜର୍ଜରିତ ହେବା ଛଡ଼ା କୁନି ଇନ୍ଦିରାଙ୍କ ପାଖରେ ଆଉ କୌଣସି ଚାରା ନଥିଲା ଏବଂ ପରେ ସ୍ୱିଜରଲାଣ୍ଡର ଏକ ଯକ୍ଷ୍ମାନିବାସରେ କମଳାଙ୍କ ମୃତ୍ୟୁ ହେଲା ବେଳକୁ ତାଙ୍କୁ ହୋଇଥିଲା ମାତ୍ର ସଇଁତିରିଶ ବର୍ଷ ଏବଂ ଇନ୍ଦିରାଙ୍କୁ ଉଣେଇଶ । କମଳା ନିଜକୁ ଏକ କୋଷା ଭିତରକୁ ଯେମିତି ସଙ୍କୁଚିତ କରିନେଇଥିଲେ ଏବଂ ଆଧ୍ୟାତ୍ମିକତା ଭିତରେ ଆଶ୍ରୟ ଲୋଡୁଥିଲେ । ସେ ନିଜକୁ ଏକ କୋଠରି ଭିତରେ ପୂରାଇ କବାଟ କିଳିଦେଉଥିଲେ ଏବଂ ଇନ୍ଦିରା ତାଙ୍କ ପାର୍ଶ୍ୱରେ ନିରବ ସହାନୁଭୂତିର ସହ ବସିରହୁଥିଲେ । ଏ

ସମ୍ପର୍କରେ ନିରବତା ଭାଙ୍ଗିବାକୁ ଇନ୍ଦିରା ଅପେକ୍ଷା କରିଥିଲେ ଦୀର୍ଘ ପାଞ୍ଚ ଦଶନ୍ଧି । ଏକ ଖବରକାଗଜକୁ ସାକ୍ଷାତକାର ଦେବା ଅବସରରେ ସେ ପ୍ରକାଶ କରିଥିଲେ ଯେ ମୁଁ ମୋ ମା'ଙ୍କୁ ଗଭୀର ଭାବେ ଭଲ ପାଉଥିଲି ଏବଂ ଯେତେବେଳେ ମୁଁ ଦେଖୁଥିଲି ଯେ ଅଯଥାରେ ତାଙ୍କୁ ଦୋଷାରୋପ କରାଯାଉଛି, ସେତେବେଳେ ମୁଁ ତାଙ୍କ ପାଇଁ ଲଢ଼େଇ କରୁଥିଲି ଏବଂ ସମସ୍ତଙ୍କ ସହିତ କଳି କରୁଥିଲି । ଏହି ଉକ୍ତି ପରେ ଅଧିକ ଆଉ କିଛି ଆଶା କରାଯାଇନପାରେ । ସେତେବେଳେ ସେ ଯାହା ପ୍ରକାଶ କରିନଥିଲେ କିନ୍ତୁ, ଯାହା ବେଶ୍ ସ୍ପଷ୍ଟଭାବେ ଦିଶିଯାଉଥିଲା, ତାହା ହେଉଛି, ମା'ଙ୍କ ଉପରେ ଅଜାଡ଼ି ହୋଇପଡୁଥିବା ଲାଂଛନା ଯୋଗୁ ସେ ପ୍ରତିଜ୍ଞାବଦ୍ଧ ହୋଇଥିଲେ ଯେ ସେ ତାଙ୍କ ଜୀବନରେ ଏଭଳି ଆଚରଣକୁ କସ୍ମିନ୍ କାଳେ ପ୍ରଶ୍ରୟ ଦେବେନାହିଁ । ଏହାଛଡ଼ା ଗୋଟିଏ ମାତ୍ର ସନ୍ତାନର ଏକାକୀତ୍ୱର ଦୁଃଖ ବୁଝିପାରି ସେ ତାଙ୍କ ଜୀବନରେ ଗୋଟିଏ ମାତ୍ର ସନ୍ତାନ ଦ୍ୱାରା ସନ୍ତୁଷ୍ଟ ରହିବାର ଭୁଲ୍ କରିନଥିଲେ ।

ତେବେ, ଏହା ସ୍ପଷ୍ଟ ଯେ ଇନ୍ଦିରା ତାଙ୍କ ବାପାଙ୍କ ଠାରୁ ଅନେକ କଥା ଶିଖିଥିଲେ - ବାପାଙ୍କ ଦ୍ୱାରା ପ୍ରେରିତ ପତ୍ରାବଳୀ ମାଧ୍ୟମରେ "ପୁରାତନ ମଣିଷଠାରୁ ଆରମ୍ଭକରି ଆଧୁନିକ ସଭ୍ୟତାର"ର ଇତିହାସ ସମ୍ପର୍କୀୟ ଶିକ୍ଷା ଯାହା କି ପିଢ଼ି ପରେ ପିଢ଼ି ଗ୍ଲିମ୍ପସେସ୍ ଅଫ୍ ୱର୍ଲଡ୍ ହିଷ୍ଟ୍ରି ନାମକ ଏକ ମହାର୍ଘ ପୁସ୍ତକଭାବେ ପଢ଼ିଛନ୍ତି ଏବଂ ଉପଭୋଗ କରିଛନ୍ତି - ହେଲେ, ତାଙ୍କ ଜୀବନକୁ ସବୁଠାରୁ ଅଧିକ ଆକ୍ରାନ୍ତ କରିଥିଲେ ଦୀର୍ଘ ଦିନ ଧରି ଯନ୍ତ୍ରଣା ସହିଥିବା ତାଙ୍କ ମା' ।

ସେହି ସମୟରେ ମୋତିଲାଲଙ୍କ ପରିବାରରେ ଚାଲିଥିବା ବ୍ୟକ୍ତିତ୍ୱର ବିବାଦ ବା କଳହ ଠାରୁ ଆହୁରି ଅଧିକ ପ୍ରଭାବଶାଳୀ ପରିସ୍ଥିତି ତାଙ୍କ ଜୀବନକୁ ଆକାର ଦେଉଥିଲା । ତାଙ୍କ ଶୈଶବ ବେଳକୁ ଭାରତର ସ୍ୱାଧୀନତା ସଂଗ୍ରାମ ଏକ ନୂଆ କ୍ରାନ୍ତିକାରୀ ଯୁଗରେ ପ୍ରବେଶ କରୁଥିଲା । ଜବାହରଲାଲ ଏବଂ ତାଙ୍କ ବାପାଙ୍କ ମଧ୍ୟରେ ହେଉଥିବା ଶାଣିତ ଏବଂ ସମୟେ ସମୟେ କ୍ରୁଦ୍ଧ ତର୍କର କାରଣ ସେ ବୁଝିପାରୁନଥିଲେ ।୧୯୧୨ ମସିହାରେ ଇଂଲଣ୍ଡରୁ ଫେରିବା ପରଠାରୁ ୧୮୮୫ରେ ଗଠିତ ଏବଂ ଉଦାରବାଦୀମାନଙ୍କ କବ୍‌ଜାରେ ଥିବା ଭାରତୀୟ ଜାତୀୟ କଂଗ୍ରେସକୁ ନେଇ ବିବ୍ରତ ହୋଇପଡୁଥିଲେ । ସେଇ ଉଦାରବାଦୀମାନଙ୍କ ଭିତରେ ଅନ୍ୟତମ ପ୍ରମୁଖ ଥିଲେ ମୋତିଲାଲ । ଜଣେ ପ୍ରତିଷ୍ଠିତ ଓକିଲ ଭାବେ ମୋତିଲାଲ ଚାହୁଁଥିଲେ ଏବଂ କହୁଥିଲେ ମନ୍ଥର ହେଉ ପଛେ ଏକ ସମ୍ବିଧାନ ସ୍ୱୀକୃତ ରାଜନୀତି ହିଁ ଯଥାର୍ଥ । କିନ୍ତୁ ଲଣ୍ଡନର ଫେବିଆନ୍ ସୋସିଓଲୋଜିଷ୍ଟମାନଙ୍କ ଦ୍ୱାରା ପ୍ରଭାବିତ ହୋଇଥିବା ଜବାହରଲାଲଙ୍କ ପାଇଁ ଏହି ଆଭିମୁଖ୍ୟ ଥିଲା ଅତ୍ୟଧିକ ଉଦାର । ଏହା ଥିଲା ସେଇ ସମୟର କଥା ଯେଉଁ ସମୟରେ କି ପ୍ରଥମ ବିଶ୍ୱଯୁଦ୍ଧ ଉପରାନ୍ତ ବ୍ରିଟେନ୍ ନିଜ ପ୍ରତିଶ୍ରୁତି ଭୁଲିଯାଇ ଭାରତକୁ ବ୍ରିଟିଶ୍ ସାମ୍ରାଜ୍ୟ ବା କମନ୍‌ୱେଲ୍‌ଥ୍ ମଧ୍ୟରେ ଏକ "ଡୋମିନିଅନ୍"ର ମର୍ଯ୍ୟାଦା ନଦେଇ ତା ବଦଳରେ ରାଉଲଟ ଆଇନର ପେସ୍‌କସ୍ କରିଥିଲା ।

ନିଜ ପିତାଙ୍କ ବିଶ୍ୱଦୃଷ୍ଟିକୁ ପରିବର୍ତ୍ତନ କରିବାରେ ଅଥବା ଭାରତର ରାଜନୈତିକ

ପରିସ୍ଥିତିରେ କିଛି ପ୍ରଗତି ଆଣିବାରେ ବିଫଳ ହେଉଥିବା ଯୋଗୁଁ ଜବାହରଲାଲ ରାଗି ଫୁଁ ଫାଁ ହେଉଥିଲେ । ପରିବାର, ବାପ-ପୁଅଙ୍କ ଭିତରେ ଲାଗିଥିବା ଟଣାଓଟରାକୁ ନିରୁପାୟଭାବେ ଦେଖୁଥିଲା ସିନା, କିଛି କରିପାରୁନଥିଲା ଏବଂ ଏହି ସମୟରେ ଏକ ଐଶ୍ୱରିକ ଶକ୍ତିନେଇ ଆବିର୍ଭୂତ ହେଲେ ମୋହନ ଦାସ କରମଚାନ୍ଦ ଗାନ୍ଧି ନାମକ ଜଣେ ଦୁର୍ବଳ ମଧ୍ୟବୟସ୍କ ବ୍ୟକ୍ତି, ଯେ କି ଏହି ବାପ-ପୁଅ ଦ୍ୱୟଙ୍କୁ ସେମାନଙ୍କ ମତଭେଦରୁ ମୁକ୍ତିର ମାର୍ଗ ଦେଖାଇଲେ । ସେ କେବଳ ନେହେରୁ ପରିବାରକୁ ଯେ ଦୋହଲାଇ ଦେଇଥିଲେ ତାହା ନୁହେଁ, ସୁପ୍ତ ପ୍ରାୟ ଏହି ବିଶାଳ ଉପମହାଦେଶଟିର ସମସ୍ତ ଘର ଏବଂ ଗ୍ରାମକୁ ମଧ୍ୟ ସେ ଝାଙ୍କି ଦେଇଥିଲେ ଏବଂ ଏହି ଝଟ୍‌କାର ତରଙ୍ଗ, ସୂର୍ଯ୍ୟ କେବେ ଅସ୍ତ ଯାଉନଥିବାର ଦାବି କରୁଥିବା ଶକ୍ତିଶାଳୀ ବ୍ରିଟିଶ୍ ସାମ୍ରାଜ୍ୟ ମଧ୍ୟ ଅନୁଭବ କରିଥିଲା । ବିଜୟଲକ୍ଷ୍ମୀ ପଣ୍ଡିତ ଏ ସମ୍ପର୍କରେ ଲେଖିଛନ୍ତି ଯେ ଗାନ୍ଧିଜୀଙ୍କ ଆବିର୍ଭାବ ପରେ ଆନନ୍ଦ ଭବନର ସବୁକିଛି ଅଲୌକିକ ଭାବେ ବଦଳି ଯାଇଥିଲା । "ସେ ଆସିଲେ, ଆମେ ଦେଖିଲୁ, ସେ ଆମକୁ ଅଧିକାର କରିନେଲେ ।"

ସେ ସମୟର ସବୁଠାରୁ ନିର୍ଣ୍ଣାୟକ ଘଟନା ଥିଲା ୧୯୧୯ ମସିହା, ଏପ୍ରିଲ ୧୩ ତାରିଖ ଦିନ ପବିତ୍ର ସହର ଅମୃତସରର ଜାଲିଓ୍ୱାନାବାଗଠାରେ ଘଟିଥିବା ନିରସ୍ତ୍ର ଜନତାଙ୍କ ଦାରୁଣ ଗଣହତ୍ୟା ; ବ୍ରିଟିଶ୍‌ରାଜ ଅମଳରେ ଘଟିଥିବା ସବୁଠାରୁ ଘୃଣ୍ୟ ଅତ୍ୟାଚାରର ନମୁନା । ଗାନ୍ଧି ନିଜର ସ୍ୱତନ୍ତ୍ର ଚିନ୍ତାଧାରା ଅନୁସାରେ କଂଗ୍ରେସର ପରବର୍ତ୍ତୀ ସମ୍ମିଳନୀ ୧୯୧୯ ମସିହାର ଶେଷଭାଗ ଆଡ଼କୁ ଅମୃତସରରେ ହିଁ କରିବାର ସ୍ଥିରକଲେ । ସେତେବେଳେ ମୋତିଲାଲ ଥିଲେ କଂଗ୍ରେସ ସଭାପତି କିନ୍ତୁ ଗାନ୍ଧିଜୀ ଥିଲେ ଏହି ସମ୍ମିଳନୀର ଆତ୍ମା । ଜବାହରଲାଲ ମଧ୍ୟ ଉପସ୍ଥିତ ଥିଲେ, କିନ୍ତୁ ଗୋଟିଏ ଗୌଣ ଏବଂ ମୁଖ୍ୟତଃ ନିରବ ଭୂମିକାରେ । ଜଣେ ସମ୍ବେଦନଶୀଳ ବ୍ରିଟିଶ ସାମ୍ବାଦିକଙ୍କ ଭାଷାରେ, ଏହା ଥିଲା ପିତା, ପୁତ୍ର ଏବଂ ପବିତ୍ର ଆତ୍ମାଙ୍କ ମିଳନରେ ଏକ ଜାତୀୟ ତ୍ରିମୂର୍ତ୍ତି ଉଦ୍‌ଭବ ହେବାର କାଳ ।

## ରାଜନୀତିର ଭଉଁରିରେ

ନେହେରୁ ପରିବାରର ଅନ୍ୟ ସଦସ୍ୟଙ୍କ ଭଳି ରାଜନୀତିର ଭଉଁରି ଭିତରକୁ ଶୋଷିହୋଇ ଆସିବା ବେଳକୁ ଇନ୍ଦିରା ଥିଲେ ଶିଶୁ । ମହାତ୍ମାଙ୍କ ଯାଦୁ କାମ କରିଥିଲା । ମୋତିଲାଲ, ତାଙ୍କ ପୁଅର ଦୃଷ୍ଟିକୋଣକୁ ପରିବର୍ତ୍ତିତ ହେଲେ ଏବଂ ମହାତ୍ମା ଗାନ୍ଧିଙ୍କ ସତ୍ୟାଗ୍ରହର ପରିକଳ୍ପନାକୁ ଗ୍ରହଣକଲେ, ଯାହାକୁ ସେ ପୂର୍ବରୁ "ଖରାଦିନିଆ ବାଚାଳତା" ବୋଲି କହି ନାକଚ କରିଦେଇଥିଲେ । ଏହାପରେ ଆନନ୍ଦ ଭବନ ଆଉ ଆନନ୍ଦର ଭବନ ହୋଇ ରହିଲାନାହିଁ, ଏହା ହୋଇଗଲା ଜାତୀୟତା ଆନ୍ଦୋଳନର ମୁଖ୍ୟ କାର୍ଯ୍ୟାଳୟ ଏବଂ ଏ ଯାଏଁ ଚାଲିଆସିଥିବା ବିଳାସମୟ ଜୀବନଯାତ୍ରାରେ ନିରାଡ଼ମ୍ବରତା ପଶିବାକୁ ଆରମ୍ଭ କଲା । କଂଗ୍ରେସ କାର୍ଯ୍ୟକାରୀ କମିଟିର ବୈଠକ ସେଇଠାରେ ଅନୁଷ୍ଠିତ ହେଲା ଏବଂ ଶିଶୁ ଇନ୍ଦିରା ଏଭଳି ବୈଠକ ଚାଲିଥିବାବେଳେ ତାରି

ଆଖପାଖରେ ଘୂରି ବୁଲିବାର ସୁଯୋଗ ପାଉଥିଲେ । ଏହାଛଡ଼ା ଗାନ୍ଧିଜୀ ସାମୟିକଭାବେ ଅବସ୍ଥାନ କରୁଥିବା ସେଇ ଭବନକୁ ଦେଶର ସବୁ ପ୍ରାନ୍ତର ଲୋକଙ୍କ ଯେପରି ଧାଡ଼ି ଲାଗୁଥିଲା । ଇନ୍ଦିରା ତାଙ୍କୁ ଦେଶର ଜଣେ ମହାନ୍ ନେତା ରୂପେ ନଦେଖି ପରିବାରର ଜଣେ ବୟୋଜ୍ୟେଷ୍ଠ ସଦସ୍ୟଭାବେ ଦେଖୁଥିଲେ । ସେ ନିଜର ସବୁ ସମସ୍ୟାକୁ ନେଇ ଗାନ୍ଧିଙ୍କ ପାଖକୁ ଯାଉଥିଲେ, ଯାହାକୁ ଗାନ୍ଧି ଅତି ଗମ୍ଭୀରତାର ସହ ନେଉଥିଲେ । ଏହାକୁ ପରବର୍ତ୍ତୀ ସମୟରେ ମନେପକାଇ ଇନ୍ଦିରା କହିଥିଲେ, ଏହାର କାରଣ ଥିଲା ମୁଁ ଥିଲି ଗୋଟିଏ ବଡ଼ ବଡ଼ ଦୁଇଟି ଆଖି ଥିବା ଭାବ ଗମ୍ଭୀର ପିଲା । ଗାନ୍ଧିଜୀଙ୍କ ସମ୍ପର୍କରେ ତାଙ୍କର ଆଦ୍ୟତମ ସ୍ମୃତି ଥିଲା ଏକ ରାଜନୈତିକ ଘଟନା । ଗାନ୍ଧିଜୀଙ୍କ ଆହ୍ୱାନରେ ଆନନ୍ଦଭବନର ଛାତରେ ଜଳିଥିଲା ଏକ ଧୂନି, ଯେଉଁଥିରେ କି ଆନନ୍ଦ ଭବନରେ ବ୍ୟବହାର କରାଯାଉଥିବା ବିଦେଶୀ ବସ୍ତ୍ରକୁ ଗଦାକରି ଅଗ୍ନି ସଂଯୋଗ କରିଦିଆଯାଇଥିଲା । ସୌଖୀନ୍ ଚିଜସବୁ ଅଗ୍ନିସାତ୍ ହେଉଥିବାର ଦୃଶ୍ୟ ଅବଶିଷ୍ଟ ଜୀବନତକ ଇନ୍ଦିରା ଗାନ୍ଧିଙ୍କ ସ୍ମୃତିରେ ବେଶ୍ ପ୍ରାଞ୍ଜଳଭାବେ ରହିଯାଇଥିଲା । ତାଙ୍କର ପରବର୍ତ୍ତୀ ରାଜନୈତିକ କାର୍ଯ୍ୟକଳାପ, ଟେବୁଲ ଉପରେ ଛିଡ଼ାହୋଇ କଣ୍ଢେଇମାନଙ୍କୁ ଭାଷଣଦେବା, ବାନରସେନା ନାମରେ ଛୋଟ ଛୋଟ ପିଲାଙ୍କ ଏକ ବାହିନୀ ସଂଗଠିତ କରି ପୁଲିସ୍ ଆଖିରେ ଧୂଳି ଦେଇ ବଡ଼ କଂଗ୍ରେସ ନେତାମାନଙ୍କ ବୋଇଦାକ କରିବା ବା ପୁଲିସ୍ ଲାଠିମାଡ଼ ଖାଇ ଆହତ ହେଉଥିବା ନେତାମାନଙ୍କୁ ସେବା ଶୁଶ୍ରୂଷା କରିବା ଇତ୍ୟାଦି ଇତ୍ୟାଦି ସର୍ବଜନବିଦିତ ଏବଂ ତାହା ଆଉ କୌଣସି ବର୍ଣ୍ଣନା ଆବଶ୍ୟକ କରେନାହିଁ ।

ତେବେ ଏସବୁ ଘଟନାର କାଳ ଅର୍ଥାତ୍ ୧୯୨୧ ମସିହାର ଅନେକ ବର୍ଷ ପୂର୍ବେ ଚାରି ବର୍ଷର ଇନ୍ଦିରା ଆହ୍ଲାବାଦ କୋର୍ଟ୍‌ର କାଠଗଡ଼ାରେ ଜେଜେଙ୍କ କୋଳରେ ବସି ବିଚାରର ଧାରାକୁ ବୁଝିବାକୁ ଚେଷ୍ଟା କରୁଥିଲେ, ଯେଉଁ ବିଚାରର ଶେଷରେ ତାଙ୍କ ବାପା ଏବଂ ଜେଜେବାପା ; ଉଭୟଙ୍କୁ ଛଅମାସର ସଜା ମିଳିଥିଲା । ଏହା ଜରିଆରେ ବ୍ରିଟିଶ୍ ରାଜ ସନ୍ଦେଶ ଦେଉଥିଲା : ସତ୍ୟାଗ୍ରହ ହିଁ ଜେଲ୍‌କୁ ବାଟ କଢ଼େଇନେବ । ଏହାପରେ ଜେଲ୍ ଯିବା ନିୟମିତ ହୋଇପଡ଼ିଲା ଏବଂ ଜେଲ୍ ଯିବାକୁ ତୀର୍ଥଯାତ୍ରାର ଆଖ୍ୟା ଦିଆଗଲା । ଏକ ବିଶେଷ ଘଟନାରେ ଥରେ ଇନ୍ଦିରା ଘରକୁ ଆସିଥିବା କିଛି ଅତିଥିମାନଙ୍କୁ ଏୟା କହି ସଙ୍କୋଳିଥିଲେ : ଘରେ ସମସ୍ତେ ଜେଲକୁ ଯାଇଛନ୍ତି ।" ଦେଶ ପାଇଁ ଜେଲ୍ ବରଣ କରିବା ଥିଲା ଗୌରବର ବିଷୟ କିନ୍ତୁ ଏହାର ବି ଗୋଟିଏ ବିଲକ୍ଷଣ ଥିଲା । ପରିବାରର ବୟୋଜ୍ୟେଷ୍ଠମାନଙ୍କ ବରାବର ଅନୁପସ୍ଥିତ ଥିଲା ଏହି ଏକୁଟିଆ ଏବଂ ଦୁଃଖୀ ପିଲାଟି ପାଇଁ ସାଂଘାତିକଭାବେ ଯନ୍ତ୍ରଣାଦାୟକ । ବାପା ଏବଂ ଜେଜେବାପା ଫେରିଆସିବା ପରେ ମଧ୍ୟ ତାଙ୍କ ମନରେ ଆଶଙ୍କା ଲାଗି ରହୁଥିଲା, କିଏ ଜାଣେ, କେତେବେଳେ ପୁଲିସ୍ ଆସି ସେମାନଙ୍କୁ ବାନ୍ଧି ନ ନେବ ।

ଏହିପରି ଏକ ଘଡ଼ିସନ୍ଧି ସମୟରେ, ତାଙ୍କ ଆଶଙ୍କା ଏବଂ ଦୁର୍ବଳତା ସତ୍ତ୍ୱେ, ତାଙ୍କ ଜୀବନରେ ଆସିଲା ଏକ ଉଜ୍ଜ୍ୱଳ ଆଲୋକ । ପ୍ରଥମେ କେବଳ ବାପା ଏବଂ ବଡ଼ବାପା ଜେଲକୁ

ଯାଉଥିଲେ । କିନ୍ତୁ, ତା ପରେ ତିରିଶ ଦଶନ୍ଧୀର ଆରମ୍ଭରେ ଯେତେବେଳେ ମହାତ୍ମା ଗାନ୍ଧି ଲୁଣମରା ଆନ୍ଦୋଳନ ଏବଂ ଦାଣ୍ଡିଯାତ୍ରା ଆରମ୍ଭକଲେ, ସେତିକିବେଳେ ପରିବାରର ମହିଳାମାନେ ମଧ ଏଥିରେ ଯୋଗ ଦେଲେ । ଏମାନଙ୍କ ଭିତରୁ କମଳା ନେହେରୁ ପ୍ରଥମେ ଜେଲ୍ ବରଣ କରିବାକୁ ଆଗେଇଗଲେ । ମା'ଙ୍କ ସାହସ ଦେଖି ଇନ୍ଦିରା ତ ଆନନ୍ଦ ଏବଂ ରୋମାଞ୍ଚରେ ଅଧୀର ହୋଇଗଲେ, କିନ୍ତୁ, ଯାହା ତାଙ୍କୁ ସବୁଠାରୁ ଅଧିକ ଆନନ୍ଦ ଦେଇଥିଲା ତାହା ହେଉଛି ଏଥିରେ ବିସ୍ମିତ ତାଙ୍କ ବାପା ଏଥର କମଳାଙ୍କୁ ଜଣେ ରାଜନୈତିକ ବନ୍ଧୁ ଏବଂ ସମର୍ଥକଭାବେ ଦେଖିବାକୁ ଆରମ୍ଭ କଲେ । କିନ୍ତୁ, ଏ ନେଇ ଇନ୍ଦିରାଙ୍କ ସୁଖ ଥିଲା କ୍ଷଣସ୍ଥାୟୀ । କାରଣ, କମଳାଙ୍କ ବ୍ୟାଧି କ୍ରମେ ଗୁରୁତର ହେଉଥିଲା ଏବଂ ଫେବୃଆରି ୧୯୩୬ରେ ତାଙ୍କ ମୃତ୍ୟୁ ଉଭୟ ବାପ ଝିଅଙ୍କୁ ବିଧ୍ୱସ୍ତ କରିଦେଲା ।

ଜବାହରଲାଲଙ୍କ ମୁହୁର୍ମୁହୁଃ ଜେଲ୍ ଯାତ୍ରା ଯା' ପରବର୍ତ୍ତୀ ପରିସ୍ଥିତିକୁ ଆହୁରି ଜଟିଳ କରିଦେଲା । ଗାନ୍ଧିଙ୍କ ପ୍ରଥମ ସତ୍ୟାଗ୍ରହଠାରୁ ଆରମ୍ଭକରି ଭାରତୀୟ ସ୍ୱାଧୀନତା ସଂଗ୍ରାମ ଯାଏ ପଚିଶ ବର୍ଷ ଭିତରେ ନେହେରୁ ଛଅଥର ଭିନ୍ନଭିନ୍ନ ଆରୋପରେ ନଅ ବର୍ଷ କାଳ ଜେଲ୍ ଭିତରେ କାଟିଥିଲେ । ଇନ୍ଦିରାଙ୍କ ବାଲ୍ୟକାଳ ଏବଂ କୈଶୋର ପାଇଁ ଏ ସମୟ ଥିଲା ନିହାତି କଠିନ କାରଣ ଏହି ସମୟରେ ହିଁ ସେ ଲୋଡୁଥିଲେ ତାଙ୍କ ପିତାଙ୍କ ସାନ୍ନିଧ୍ୟ । ତାଙ୍କ ଏକାକୀତ୍ୱ, ଅବ୍ୟବସ୍ଥିତ ଜୀବନଯାତ୍ରା, ସମୟେ ସମୟେ ନିର୍ଜନତା ଏବଂ ତାଙ୍କ ଠାରୁ ଆହୁରି ଅନେକ କିଛି ଆଶା କରାଯାଉଛି ବୋଲି ତାଙ୍କ ମନରେ ଉଠୁଥିବା ଭାବନା : ସବୁ ମିଶି ଯେମିତି ତାଙ୍କ ବ୍ୟକ୍ତିତ୍ୱ ବିକାଶକୁ ପ୍ରଭାବିତ କରୁଥିଲା । ମାତ୍ରାଧିକ ଲଜ୍ଜାଶୀଳତା ସତ୍ତ୍ୱେ ବି ଏଥିରୁ ସୃଷ୍ଟି ହୋଇଥିଲା, ଯାହା ସେ କରିବା କଥା, ସେଥିରେ କୃତିତ୍ୱ ପ୍ରଦର୍ଶନ କରିବାର ଦୃଢ଼ପ୍ରତିଜ୍ଞା ଏବଂ ନିଜକୁ ଏକ ଅଭେଦ୍ୟ ଗାମ୍ଭୀର୍ଯ୍ୟ ଭିତରେ ଘୋଡ଼ାଇ ରଖିବାର ପ୍ରବୃତ୍ତି । ଏଇ ଦୁଇ ଗୁଣ ତାଙ୍କ ସହ ଶେଷ ପର୍ଯ୍ୟନ୍ତ ରହିଥିଲା ଯାହା କି ସୃଷ୍ଟି କରିଥିଲା ନିତାନ୍ତ ଘରୋଇ ଜଣେ ବ୍ୟକ୍ତି ଦେଶର ସବୁଠାରୁ ଅଧିକ ଦୃଶ୍ୟମାନ ହେଉଥିବା ଆସନ ବା ପଦର ଅଧିକାରୀ ହେବାର ବିରଳ ବ୍ୟଞ୍ଜନା ।

ଏହି ପରିସ୍ଥିତିରେ ଇନ୍ଦିରାଙ୍କ ପାଠପଢ଼ା ଗଭୀରଭାବେ ବ୍ୟାହତ ହେବା ଥିଲା ସ୍ୱାଭାବିକ । ତାଙ୍କ ଜୀବନ ଥିଲା ଘଟନାବହୁଳ, ବନ୍ଧୁର ଏବଂ ଭ୍ରାମ୍ୟମାଣ । ପୁନାର ଏକ ପରୀକ୍ଷାମୂଳକ ବିଦ୍ୟାଳୟରେ କିଛି ଦିନ ପଢ଼ିଲାପରେ ବିଦ୍ୟାଳୟ ପରେ ବିଦ୍ୟାଳୟ, ସ୍ଥାନ ପରେ ସ୍ଥାନ ପରିବର୍ତ୍ତନ କରି ସେ ଶାନ୍ତିନିକେତନରେ ପହଞ୍ଚିଲେ । ମହାନ୍ କବି, ଦାର୍ଶନିକ, ନୋବେଲ ପୁରସ୍କାର ବିଜେତା ତଥା ଜବାହରଲାଲଙ୍କ ପ୍ରଶଂସକ ରବୀନ୍ଦ୍ରନାଥ ଟାଗୋରଙ୍କ ଦ୍ୱାରା ଏକ ମନୋରମ ପ୍ରାକୃତିକ ପରିବେଶ ଭିତରେ ପ୍ରତିଷ୍ଠିତ ପ୍ରସିଦ୍ଧ ଶିକ୍ଷାନୁଷ୍ଠାନ ଶାନ୍ତିନିକେତନ ।

ଟାଗୋରଙ୍କ "ଶାନ୍ତିର ନୀଳୟ"ରେ ପହଞ୍ଚିବାର ଚାରିବର୍ଷ ପୂର୍ବରୁ ବାର ବର୍ଷ ବୟସ୍କା ଇନ୍ଦିରା ଥିଲେ ଏକ ଐତିହାସିକ ପରିବର୍ତ୍ତନର ସାକ୍ଷୀ । ୧୯୨୮ ମସିହାରେ କଲିକତା (ଆଜିର କୋଲ୍‌କାତା)ଠାରେ ହୋଇଥିବା ବିତର୍କିତ କଂଗ୍ରେସ ଅଧିବେଶନରେ ମୋତିଲାଲ ଥିଲେ ଅଧ୍ୟକ୍ଷ

ଏବଂ ଭାରତ ପାଇଁ ମୋତିଲାଲ ସମର୍ଥନ କରୁଥିବା ଡ଼ୋମିନିଅନ୍ ଷ୍ଟାଟସ୍ ଏବଂ ଜବାହର ସମର୍ଥନ କରୁଥିବା ପୂର୍ଣ୍ଣ ସ୍ୱାଧୀନତା ଭିତରୁ କେଉଁଟି ଜରୁରୀ, ତାକୁ ନେଇ ବାପ ପୁଅଙ୍କ ଭିତରେ ହେଲା ତୁମୁଳ କଳହ । ସବୁଥର ପରି ଏଥର ବି ଗାନ୍ଧି ଏହାର ସମାଧାନ କରିବାକୁ ଆସିଲେ ଏବଂ ଠିକ୍ କରାଗଲା ଯେ ବର୍ଷକପରେ ଯାଇ ଏଥି ସମ୍ବନ୍ଧୀୟ କୌଣସି ନିଷ୍ପତ୍ତି ନିଆଯିବ । କିନ୍ତୁ ସେଇ ନିର୍ଦ୍ଧାରିତ ସମୟସୀମା ପୂରିବାର ଅନେକ ଆଗରୁ କଂଗ୍ରେସର ମତ କଠୋର ପନ୍ଥାଆଡ଼କୁ ଢ଼ଳିଯାଇଥିଲା । ୧୯୨୯ ଡ଼ିସେମ୍ବରରେ କଂଗ୍ରେସର ବାର୍ଷିକ ଅଧିବେଶନ ପଞ୍ଜାବର ତତ୍କାଳୀନ ରାଜଧାନୀ ଏବଂ ବର୍ତ୍ତମାନ ପାକିସ୍ତାନର ଏକ ପ୍ରମୁଖ ନଗରୀ ଲାହୋର ରେ ଅନୁଷ୍ଠିତ ହେବାର ସ୍ଥିର କରାଯାଇଥିଲା । ମୋତିଲାଲଙ୍କ ପରାମର୍ଶ ଏବଂ ଗାନ୍ଧିଜୀଙ୍କ ସମର୍ଥନ କ୍ରମେ ଲାହୋର କଂଗ୍ରେସର ଅଧ୍ୟକ୍ଷଭାବେ ଜବାହରଲାଲ ନିର୍ବାଚିତ ହେଲେ ଏବଂ ଏହା ଥିଲା ସେଇ ଉଚ୍ଚ ପଦବୀରେ ବାପର ସ୍ଥାନକୁ ପୁଅ ଉତ୍ତରାଧିକାର ସୂତ୍ରରେ ପାଇବାର ପ୍ରଥମ ଉଦାହରଣ । ୧୯୩୦ ମସିହା ଜାନୁଆରୀ ୨୬ ତାରିଖ ଦିନ ଲାହୋର ସହର ପାଖ ଦେଇ ବହିଯାଉଥିବା ରାବି ନଦୀକୂଳରେ ତାଙ୍କ ବାପାଙ୍କ ନେତୃତ୍ୱରେ ହଜାର ହଜାର ଲୋକ ଭାରତକୁ ସମ୍ପୂର୍ଣ୍ଣ ସ୍ୱାଧୀନତା ନମିଳିବା ଯାଏଁ ବିଶ୍ରାମ ନେବେନାହିଁ ବୋଲି ବଜ୍ର ଶପଥ ନେଉଥିବା ଦୃଶ୍ୟକୁ ଇନ୍ଦିରା ଦେଖୁଥିଲେ । ଏବେ ମୋତିଲାଲ ତାଙ୍କ ପୁଅଙ୍କ ପଛରେ ଛିଡ଼ା ହୋଇଥିଲେ, ସମ୍ମୁଖରେ ନୁହେଁ । ସେଇ ଉତ୍କଣ୍ଠାରେ ଭରା ଝିଅଟିର ମନରେ କ'ଣ ସେଦିନ ଘୁଣାକ୍ଷରରେ ବି ଥରେ ଆସିଥିବ ଯେ ସେଇ ଦିନ ତାର ରାଜନୈତିକ ଉତ୍ତରାଧିକାରର ମାର୍ଗ ଉନ୍ମୋଚିତ ହେଉଛି ?

ଇନ୍ଦିରା ଶାନ୍ତିନିକେତନକୁ ଗଭୀରଭାବେ ଭଲପାଇ ବସିଲେ ଏବଂ ଦୀର୍ଘଦିନ ସେଠାରେ କାଟିବେ ବୋଲି ଆଶା କରୁଥିଲେ । କିନ୍ତୁ, ନିୟତି ଚାହୁଁଥିଲା ଅନ୍ୟ ପ୍ରକାରେ । ତାଙ୍କ ମା'ଙ୍କ ସ୍ୱାସ୍ଥ୍ୟାବସ୍ଥାରେ ଘୋର ଅବନତି ଦେଖାଦେଇଥିଲା ଏବଂ କମଳାଙ୍କ ସହିତ ଇନ୍ଦିରାଙ୍କୁ ସ୍ୱିଜରଲାଣ୍ଡ୍ ଯିବାକୁ ପଡ଼ିଥିଲା, ଯାହା କି ଥିଲା କମଳାଙ୍କ ଶେଷ ଯାତ୍ରା । ଲୁସାନେଠାରେ ସେମାନଙ୍କ ଜୀବନର ସବୁଠାରୁ ବିମର୍ଷକର ଟ୍ରାଜେଡ଼ି ଘଟିଯିବା ପରେ ମଧ୍ୟ ଇନ୍ଦିରା ଏବଂ ତାଙ୍କ ବାପାଙ୍କ ନିକଟରେ ପରସ୍ପରକୁ ସାନ୍ତ୍ୱନା ଦେବାପାଇଁ ଯଥେଷ୍ଟ ସମୟ ନଥିଲା । କର୍ତ୍ତବ୍ୟର ଆହ୍ୱାନ ଯୋଗୁଁ ନେହେରୁ ସାଙ୍ଗେ ସାଙ୍ଗେ ଭାରତ ପ୍ରତ୍ୟାବର୍ତ୍ତନ କରିଥିଲେ । ଇନ୍ଦିରା ମଧ୍ୟ ତାଙ୍କ ଅବହେଳିତ ଏବଂ ବାରମ୍ବାର ବାଧାପ୍ରାପ୍ତ ଶିକ୍ଷାକୁ ପୁନର୍ବାହାଲ କରିବାର ଆବଶ୍ୟକତା ଅନୁଭବ କରୁଥିଲେ । ସେ ଆମେରିକା ଯାଇ ଶିକ୍ଷାଲାଭ କରନ୍ତୁ ବୋଲି ବାପା ଦେଇଥିବା ପରାମର୍ଶକୁ ଇନ୍ଦିରା ଅଗ୍ରାହ୍ୟକରି ତା ବଦଳରେ ଇଂଲଣ୍ଡ ଯାଇ ଶିକ୍ଷା ଲାଭ କରିବାକୁ ଜିଦି କଲେ । ଯୁକ୍ତି ଥିଲା, ତାଙ୍କ ବାପା ସ୍ୱୟଂ ଇଂଲଣ୍ଡରେ ପଢ଼ି ନଥିଲେ କି ? କିନ୍ତୁ, ଇଂଲଣ୍ଡ ଯାଇ ପଢ଼ିବା ପଛରେ ବଡ଼ କାରଣଟି ଥିଲା ଏୟା ଯେ ଫିରୋଜ ଶାହ ନାମକ ଆହ୍ଲାବାଦର ଜଣେ ଛାତ୍ର ଲଣ୍ଡନ ସ୍କୁଲ ଅଫ୍ ଇକନୋମିକ୍ସରେ ପଢୁଥିଲେ ଏବଂ ନେହେରୁ ପରିବାର ପାଇଁ ସେ ଅଚିହ୍ନା ନଥିଲେ । ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିବା ଜଣେ ତରୁଣ ହିସାବରେ ସେ ଥିଲେ ଆନନ୍ଦଭବନର ଜଣେ ନିୟମିତ

ଉପସ୍ଥିତି । ତାଙ୍କ ପରିବାରର ଅନ୍ୟ ସଦସ୍ୟମାନଙ୍କ ଅପେକ୍ଷା ଇନ୍ଦିରା ତାଙ୍କୁ ଅଧିକ ଭଲଭାବରେ ଜାଣିଥିଲେ, କାରଣ ଇନ୍ଦିରାଙ୍କ ରୋଗଗ୍ରସ୍ତ ମା'ଙ୍କ ଯତ୍ନ ନେବାରେ ସେ ତାଙ୍କୁ ସାହାଯ୍ୟ କରୁଥିଲେ ଏବଂ କମଳାଙ୍କ ଦୁରାରୋଗ୍ୟ ବ୍ୟାଧିର ସେଇ ନିହାତି କରୁଣମୟ କାଳରେ ଫିରୋଜ ଅତି ନିଷ୍ଠାର ସହ ଏଇ କାମଟି ସଂପାଦନ କରୁଥିଲେ । ଛଅ ବର୍ଷ ପରେ ଇନ୍ଦିରା ତାଙ୍କୁ ବିବାହ କଲେ ।

## ସମସ୍ତଙ୍କ ଇଚ୍ଛା ବିରୁଦ୍ଧରେ

ବ୍ରିଟେନ୍ ଦ୍ୱୀପପୁଞ୍ଜରେ, ଇନ୍ଦିରା ପ୍ରଥମେ ବ୍ରିଷ୍ଟଲ୍ ନିକଟସ୍ଥ ବ୍ୟାଡ୍‌ମିଣ୍ଟନ୍ ସ୍କୁଲ୍ ଓ ପରେ ଅକ୍ସଫୋର୍ଡ୍‌ର ସମରଭିଲେ କଲେଜରେ ଆଧୁନିକ ଇତିହାସରେ ଶିକ୍ଷାନେବା ଆରମ୍ଭ କଲେ । ଇନ୍ଦିରା କିନ୍ତୁ ଅନେକ ସମୟରେ ଲଣ୍ଡନ ଯାଉଥିଲେ, ଯେଉଁଠି ସେ ଫିରୋଜ ଏବଂ ତାଙ୍କର ଅନ୍ୟ କିଛି ବନ୍ଧୁ ନେହେରୁଙ୍କର ବିଚକ୍ଷଣ ଅଥଚ ଧୂର୍ତ୍ତ ସହଯୋଗୀ ଭି କ୍ରିଷ୍ଣାମେନନ୍‌ଙ୍କ ପ୍ରଭାବ ବଳୟରେ ଉଦ୍‌ବୁଦ୍ଧ ହେଉଥିଲେ । କ୍ରିଷ୍ଣାମେନନ୍ ପରେ ଇଣ୍ଡିଆ ଲିଗ୍ ନାମକ ଏକ ଦଳର ପ୍ରତିଷ୍ଠାତା ସଭାପତି ହୋଇଥିଲେ । ଲଣ୍ଡନରେ ସ୍ୱାଧୀନ ଭାରତର ପ୍ରଥମ ହାଇକମିଶନର ରୂପେ ସେ ନିଯୁକ୍ତ ହୋଇଥିଲେ ଏବଂ ପରବର୍ତ୍ତୀ କାଳରେ ସେ ହୋଇଥିଲେ ବିଦେଶ ବ୍ୟାପାରକୁ ନେଇ ନେହେରୁଙ୍କ ଏକାନ୍ତ ଅନ୍ତରଙ୍ଗ ପରାମର୍ଶଦାତା ଏବଂ ବିତର୍କିତ ପ୍ରତିରକ୍ଷା ମନ୍ତ୍ରୀ । ଅନେକଙ୍କ ପରି ଇନ୍ଦିରା ଏବଂ ଫିରୋଜ ସେଇ ଗୋଲାପୀ ତୃତୀୟ ଦଶାବ୍ଦୀର ବାମପନ୍ଥୀ ଚିନ୍ତାଧାରାକୁ ଅନ୍ତଃକରଣ କରିବା ଆରମ୍ଭ କରିଦେଇଥିଲେ । ଶକ୍ତିଶାଳୀ ଫାସିଷ୍ଟ ବିରୋଧୀ ଆନ୍ଦୋଳନ ଏବଂ "ଲେଫ୍‌ଟ୍ ବୁକ୍ କ୍ଲବ୍"ର ସମ୍ପର୍କ ଏହା ସହିତ ଥିଲା । ଶାନ୍ତିନିକେତନକୁ ଇନ୍ଦିରା ଯେମିତି ଭଲ ପାଉଥିଲେ, ସେମିତି ଭଲ ପାଉଥିଲେ ଅକସ୍‌ଫୋର୍ଡ୍‌କୁ, କିନ୍ତୁ ସେଇଠି ତାଙ୍କ ମନ ଲାଗୁନଥିଲା । ସେ ଚାହୁଁଥିଲେ ତାଙ୍କ ବାପାଙ୍କ ନିକଟରେ ରହିବାକୁ ; ସେତେବେଳକୁ ପତ୍ନୀ ବିରହୀ ବାପା ଆବଶ୍ୟକ କରୁଥିଲେ ଯତ୍ନ ଓ ଦେଖାଶୁଣା । ତା'ଛଡ଼ା, ସେଠାରେ ଇନ୍ଦିରାଙ୍କ ସ୍ୱାସ୍ଥ୍ୟ ବି ଭଲ ରହୁନଥିଲା । ଏସବୁ କାରଣରୁ ବୁଝିହୁଏ, କାହିଁକି ସମରଭିଲେର ଲାଟିନ୍ ପରୀକ୍ଷାରେ ସେ ଭଲ କଲେନାହିଁ । ତେବେ ଯାହା ବି ହେଉ, ସେ ଘରକୁ ଫେରିବାକୁ ସ୍ଥିର କରିସାରିଥିଲେ । କିନ୍ତୁ ସେତେବେଳକୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଚାଲିଥାଏ ଏବଂ ଭାରତକୁ ଆସିବା ସହଜ ନଥାଏ । କିନ୍ତୁ ଯେଉଁ ସମୟରେ ଇନ୍ଦିରା ତାଙ୍କ ଘରକୁ ଫେରିଆସିବାର ନିଷ୍ପତ୍ତିକୁ ପ୍ରକାଶ୍ୟ କଲେ, ସେଇ ସମୟରେ ଫିରୋଜ ଗାନ୍ଧି ମଧ ଘରକୁ ଫେରିବାର ନିଷ୍ପତ୍ତି ଘୋଷଣା କରିବାରେ ବିସ୍ମିତ ହେବାର କିଛି ନଥିଲା । ପରିଶେଷରେ ସେ ଦୁହେଁ ସିଟି ଅଫ୍ ପ୍ୟାରିସ୍ ନାମକ ଏକ ଜାହାଜରେ ଜାଗା ପାଇଲେ, ଯେଉଁ ଜାହାଜଟି ଭୂମଧ୍ୟସାଗରରେ ପଇଁତରା ମାରୁଥିବା ଜର୍ମାନୀ ୟୁ ବୋଟ୍‌ରୁ ନିସ୍ତାର ପାଇବା ପାଇଁ ଦକ୍ଷିଣ ଆଫ୍ରିକାର ଗୁଡ୍ ହୋପ୍ ଅନ୍ତରୀପ ବାଟେ ଭାରତକୁ ଯାତ୍ରା ଆରମ୍ଭ କଲା ।

ଡର୍ବାନରେ ଚାରିଦିନ ରହଣି କାଳରେ ସେଠାକାର ଭାରତୀୟ ଗୋଷ୍ଠୀ ନେହେରୁଙ୍କ କନ୍ୟାଙ୍କୁ ସମ୍ବର୍ଦ୍ଧନା ଦେବାକୁ ଇଚ୍ଛା କଲେ । ଇନ୍ଦିରା ବି ରାଜିହେଲେ କିନ୍ତୁ, ଗୋଟିଏ ସର୍ତ୍ତରେ ।

ତାହା ଥିଲା ତାଙ୍କୁ ଯେମିତି କିଛି କହିବାକୁ ବା ଭାଷଣ ଦେବାକୁ କୁହାନଯାଏ । ଲଣ୍ଡନର ଗୋଟିଏ ସଭାରେ ଭାଷଣ ଦେଉଥିବାବେଳେ ଶ୍ରୋତାମାନଙ୍କ ଭିତରେ ଥିବା ଜଣେ ମଦ୍ୟପ ତାଙ୍କୁ ଅପମାନିତ କରିଥିବାର ସ୍ମୃତିରୁ ସେ ମୁକ୍ତି ପାଉନଥିଲେ । ସେ ମଦ୍ୟପ ସେଦିନ କହିଥିଲା, ଇଏ କିଛି କହୁନାହିଁ, ଖାଲି ବୋବାଉଛି । କିନ୍ତୁ ବିସ୍ମୟକରଭାବେ ଡର୍ବାନ୍‌ର ସେଇ ସଭାରେ ଇନ୍ଦିରା ଜିଦି ଧରିଲେ ଯେ ସେ କିଛି କହିବାକୁ ଚାହାନ୍ତି । ଡର୍ବାନ୍ ସହରର ରାସ୍ତାରେ ଫିରୋଜଙ୍କ ସହ ଗାଡ଼ିରେ ବୁଲି ସହରଟିକୁ ଦେଖୁଥିବାବେଳେ ସେମାନେ ବର୍ଣ୍ଣବୈଷମ୍ୟର ଭୟାବହତା ଦେଖିଥିଲେ । ସେଦିନ ସଭାରେ ସେ ନିଜର ଅବରୁଦ୍ଧ କ୍ରୋଧକୁ ତାଙ୍କ ଭାଷଣ ମାଧ୍ୟମରେ ପୂରା ଅଜାଡ଼ି ଦେଇଥିଲେ । ସେ କେବଳ ଯେ ଦକ୍ଷିଣ ଆଫ୍ରିକାର ଶ୍ୱେତାଙ୍ଗ ଶାସକବର୍ଗଙ୍କୁ ଶୋଧିଥିଲେ (ନାଜୀମାନଙ୍କ ଠାରୁ କୌଣସି ଗୁଣରେ କମ୍ ନୁହନ୍ତି ବୋଲି କହି ନିର୍ଦ୍ଦୟଭାବେ ସମାଲୋଚନା କରିଥିଲେ) ତାହା ନୁହେଁ, ସେଠାରେ ଥିବା ଭାରତୀୟ ବ୍ୟବସାୟୀମାନଙ୍କୁ ମଧ୍ୟ ସେମାନଙ୍କ ଲୋଭ, ଶ୍ୱେତାଙ୍ଗମାନଙ୍କ ନିକଟରେ ସେମାନଙ୍କ ବଶମ୍ବଦତା ଏବଂ କୃଷ୍ଣକାୟମାନଙ୍କ ପ୍ରତି ସମ୍ବେଦନହୀନତା ପାଇଁ ମଧ୍ୟ କିଛି କମ୍ କଟୁ କଥା କହିନଥିଲେ । ସେଦିନ ଏ ଭାଷଣ ପରେ ସେ ସିନା ସେଠାକାର ଭାରତୀୟମାନଙ୍କ ନିକଟରେ ଅପ୍ରିୟ ହୋଇପଡ଼ିଥିଲେ, କିନ୍ତୁ ଲୋକମାନଙ୍କ ସମ୍ମୁଖରେ କହିବାର ପ୍ରତ୍ୟୟକୁ ଫେରିପାଇଥିଲେ ।

୧୯୪୧ ମାର୍ଚ୍ଚରେ ଇନ୍ଦିରା ଆହ୍ଲାବାଦରେ ପହଞ୍ଚିଲେ । ତାଙ୍କ ପାଇଁ କୌଣସି ମହାର୍ଘ ସ୍ୱାଗତ ଅପେକ୍ଷା କରିନଥିଲା । ତାଙ୍କ ବାପା ସେତେବେଳକୁ ଥିଲେ ଜେଲ୍‌ରେ ଏବଂ ଦେଶ କ୍ରୋଧ ଏବଂ ହତାଶା ମଧ୍ୟରେ ଦ୍ୱିଧା ବିଭକ୍ତ ହୋଇଯାଇଥିଲା । ସେପ୍‌ଟେମ୍ବର ୩, ୧୯୪୫ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେବା ଦିନ ଭାଇସ୍‌ରାୟ ଲର୍ଡ୍ ଲିନ୍‌ଲିଥ୍‌ଗୋ - ଯାହାଙ୍କୁ ନେହେରୁ "ଶରୀରରେ ସ୍ଥୁଳ ଏବଂ ମନରେ ମନ୍ଥର, ପଥର ଭଳି ନିଦା ଏବଂ ପ୍ରାୟ ପଥର ଭଳି ଚୈତନ୍ୟହୀନ" ବୋଲି ବର୍ଣ୍ଣନା କରିଥିଲେ - ଭାରତର କୌଣସି ପ୍ରତିନିଧିମୂଳକ ମତାମତ ନନେଇ ଆପଣାଛାଏଁ ଘୋଷଣା କରିଦେଇଥିଲେ ଯେ ଭାରତ ମଧ୍ୟ ଜର୍ମାନୀ ସହିତ ଯୁଦ୍ଧ କରିବାକୁ ପ୍ରସ୍ତୁତ । ଏହାର ପ୍ରତିବାଦରେ ଭାରତର ସାତଟି ଅଞ୍ଚଳ ବା ପ୍ରୋଭିନ୍‌ସ୍‌ରେ ଦୁଇ ବର୍ଷ ପୂର୍ବରୁ ନିର୍ବାଚନ ଜିତି ଆସିଥିବା କଂଗ୍ରେସ ସାମୂହିକଭାବେ ଇସ୍ତଫା ପ୍ରଦାନ କଲା । ଭାରତର ଅଢ଼େଇ ନିୟୁତ ଜନତା ଜଣେ ବିଦେଶୀ ରାଜା ପାଇଁ ଯୁଦ୍ଧକୁ ଯିବାକୁ ହୁଏତ ପ୍ରସ୍ତୁତ ହୋଇଥାନ୍ତେ, କିନ୍ତୁ ଭାରତକୁ ସ୍ୱାଧୀନତା ପ୍ରଦାନ କରିବା ଦିଗରେ ବ୍ରିଟିଶ୍‌ମାନଙ୍କ ଅନିଚ୍ଛା ଭାରତୀୟମାନଙ୍କ ମନରେ ତୀବ୍ର ଅସନ୍ତୋଷ ଖେଳାଇ ଦେଇଥିଲା । ଲିନ୍‌ଲିଥ୍‌ଗୋ ଏବଂ ଭାରତୀୟ ନେତାମାନଙ୍କ ଭିତରେ କଥାବାର୍ତ୍ତା ଥିଲା ନିଷ୍ଫଳ ଏବଂ ଅନିୟମିତ । ଗାନ୍ଧିଙ୍କ ସତ୍ୟାଗ୍ରହରେ ମାତି ହଜାର ହଜାର କଂଗ୍ରେସ ଲୋକ ଜେଲ୍ ବରଣ କରୁଥାଆନ୍ତି ।

ଇନ୍ଦିରା ଭାରତରେ ନଥିବାବେଳେ ଦୁଇଟି ଘଟନା ଗଭୀରଭାବେ ଏହି ଉପମହାଦେଶକୁ ପ୍ରଭାବିତ କରିଥିଲା । ପ୍ରଥମଟି ହେଉଛି ସେଇ ସମୟରେ କଂଗ୍ରେସରୁ ବିଭାଜିତ ହୋଇ କଡ଼ାମିଜାଜୀ

ଏବଂ ଅନାସକ୍ତ ମହମ୍ମଦ ଅଲ୍ଲୀ ଜିନ୍ନାଙ୍କ ନେତୃତ୍ୱରେ ମୁସ୍‌ଲିମ୍ ଲିଗ୍ ଆବିର୍ଭାବ ହେବାର ପ୍ରକ୍ରିୟା ସମ୍ପୂର୍ଣ୍ଣ ହୋଇଯାଇଥିଲା । ଗୋଟିଏ ସମୟରେ ହିନ୍ଦୁ – ମୁସ୍‌ଲିମ୍ ଏକତାର ଦୂତ ଥିବା ଜିନ୍ନା ୧୯୪୦ ବେଳକୁ ହୋଇଯାଇଥିଲେ "ଦ୍ୱୈତ ରାଷ୍ଟ୍ର ବାଦ"ର ପ୍ରବର୍ତ୍ତକ ଏବଂ ଏହି ଉପମହାଦେଶରେ ରହୁଥିବା ମୁସ୍‌ଲିମ୍‌ମାନଙ୍କ ପାଇଁ ଆପଣାର ଦେଶ ପାକିସ୍ତାନର ପରିକଳ୍ପନାର ମୁଖ୍ୟ ସୂତ୍ରଧର । ଦ୍ୱିତୀୟଟି ହେଉଛି ନାମକରା କଂଗ୍ରେସ ନେତା ଏବଂ ପୂର୍ବତନ କଂଗ୍ରେସ ସଭାପତି ସୁବାଷ ଚନ୍ଦ୍ର ବୋଷ, ଯେ କି ଥରେ ଗାନ୍ଧିଜୀଙ୍କୁ ସିଧାସଳଖ ଆହ୍ୱାନ ଦେଇଥିଲେ ଏବଂ ନେହେରୁଙ୍କଠାରୁ ମଧ୍ୟ ଅଧିକ କଠୋରପନ୍ଥୀ ଭାବେ ନିଜର ଭାବମୂର୍ତ୍ତି ତିଆରି କରିପାରିଥିଲେ, ସେ ସମୟରେ ଜେଲ୍‌ରକ୍ଷୀଙ୍କୁ ଭୁଆଁ ବୁଲେଇ ପ୍ରଥମେ ଜର୍ମାନୀ ଏବଂ ପରେ ବୁଡ଼ାଜାହାଜରେ ଜାପାନକୁ ପଳାୟନ କରିଥିଲେ । ପରେ ଘଟନାକ୍ରମେ ସେ ଜାପାନ ଅଧିକୃତ ସିଙ୍ଗାପୁରଠାରେ ଜାପାନର ସମର୍ଥନରେ ଜାପାନର ଯୁଦ୍ଧବନ୍ଦୀ ଥିବା ଭାରତୀୟ ସୈନିକ ଏବଂ ଅଫିସରମାନଙ୍କୁ ନେଇ ଗଢ଼ିଲେ ଇଣ୍ଡିଆନ୍ ନ୍ୟାସନାଲ୍ ଆର୍ମି । ଏହି ବାହିନୀକୁ ଧରି ଦିଲ୍ଲୀ ଆକ୍ରମଣକରି ଭାରତକୁ ବ୍ରିଟିଶ୍ କବଳରୁ ମୁକ୍ତ କରିବାପାଇଁ ସେ ନେଇଥିବା ବଜ୍ର ଶପଥ ତାଙ୍କପାଇଁ ଆଣିଦେଇଥିଲା ପ୍ରଚୁର ଖ୍ୟାତି ନେହେରୁଙ୍କ ବ୍ୟତୀତ ସେତେବେଳେ ଆଉ ବେଶୀ କେହି ଭାରତୀୟ ବୁଝିପାରିନଥିଲେ ଯେ ବ୍ରିଟିଶ୍‌ରାଜକୁ ହଟାଇବା ପାଇଁ ଜାପାନୀ ସାହାଯ୍ୟ ନେବାର ଅର୍ଥ ହେଉଛି ମହରଗରୁ ଆସି କାନ୍ତାରରେ ପଡ଼ିବା ।

ଏଇଭଳି ଏକ ଗଭୀରଭାବେ ହତାଶାଜନକ ଏବଂ ଗୋଳମାଳିଆ ପରିସ୍ଥିତି ସମୟରେ ଇନ୍ଦିରା ସେତେବେଳକୁ ଚବିଶ ବର୍ଷ ବୟସ୍କା, ତାଙ୍କ ବାପାଙ୍କୁ ଜଣାଇଲେ ଯେ ସେ ଫିରୋଜଙ୍କୁ ବିବାହ କରିବାକୁ ଇଚ୍ଛୁକ ; ଫିରୋଜ ଯେ କି ଜଣେ ପାର୍ସୀ ସୁତରାଂ ଅନ୍ୟ ଏକ ଧର୍ମର ସନ୍ତାନ । ଅନ୍ୟ କେହି ହୋଇଥିଲେ ଖୁବ୍ ସୁସଂସ୍କୃତ ଏବଂ ଉଦାରବାଦୀ ନେହେରୁଙ୍କ ପାଇଁ ଏହା ବିଶେଷ କିଛି ଗୁରୁତ୍ୱ ରଖିନଥାନ୍ତା, କିନ୍ତୁ ଇନ୍ଦିରା ଯେ ତାଙ୍କ ପ୍ରିୟତମା କନ୍ୟା ! ସେ ଇନ୍ଦିରାଙ୍କୁ ଉପଦେଶ ଦେଲେ ଯେ ପ୍ରଥମ ପ୍ରେମିକଙ୍କୁ ବିବାହ କରିବାର ନିଷ୍ପତ୍ତି ନେବା ପୂର୍ବରୁ ସେ ବରଂ ଅନ୍ୟାନ୍ୟ ଯୁବକଙ୍କୁ ଦେଖନ୍ତୁ ।

ସେ ଯାହା ବି ହେଉ ନିଜର ସମ୍ଭାବ୍ୟ ଜ୍ୱାଇଁଜଣଙ୍କ ଉପରେ ସେ ବେଶୀ ଗୁରୁତ୍ୱ ଦେଉ ନଥିଲେ । ଏହି ଘଟନା ଘଟିବାର କିଛି ଦିନ ପୂର୍ବେ ଥରେ ଫିରୋଜ ଗାନ୍ଧି, ଯେ କି ଥିଲେ ଜଣେ କୁଶଳୀ ଫଟୋଗ୍ରାଫର୍, ନିଜେ ଉଠାଇଥିବା ଇନ୍ଦିରାଙ୍କ କିଛି ଫଟୋ ନେହେରୁଙ୍କୁ ଦେଖାଇଥିଲେ ଏବଂ ନେହେରୁ ତାଙ୍କ ଚିରାଚରିତ ଢ଼ଙ୍ଗରେ କହିଥିଲେ, "ତୁମେ ଯଦି ଏ ଫଟୋସବୁ ଉଠାଇଛ, ଯୁବକ, ତେବେ ତୁମକୁ ଅଭିନନ୍ଦନ ଜଣାଉଛି ।" କିନ୍ତୁ, ଯାହା ନେହେରୁଙ୍କ ଚରିତ୍ରଗତ ନଥିଲା ତାହା ସେ କରୁଥିଲେ ଏବଂ ତାହା ଥିଲା ଫିରୋଜଙ୍କ ଅଲଗା ପୃଷ୍ଠଭୂମି ଉପରେ ମନ୍ତବ୍ୟ ଦେବା ଏବଂ ତାଙ୍କ ଦାରିଦ୍ର୍ୟ ଉପରେ ପରୋକ୍ଷ ଭାବେ କଟାକ୍ଷ ହାଣିବା । ଇନ୍ଦିରା କିନ୍ତୁ ତାଙ୍କ ବାପାଙ୍କ କୌଣସି ଯୁକ୍ତିକୁ ଗ୍ରହଣକରିବା ଅବସ୍ଥାରେ ନଥିଲେ । ସେ ତାଙ୍କ ବାପାଙ୍କୁ

ଜଣାଇଦେଲେ ଯେ ସେ ତାଙ୍କ ନିଷ୍ପତ୍ତି ଅଟଳ ଏବଂ ଯଦି ତାଙ୍କ ବାପା ଜିଦ୍ ଧରନ୍ତି ତେବେ ସେ "ତାଙ୍କ ସହିତ କଥାବାର୍ତ୍ତା ବନ୍ଦ କରିଦେବେ ।" ଏହି ଧମକକୁ ସେ କାର୍ଯ୍ୟକାରୀକରି ସେ ନେହେରୁଙ୍କୁ ଅସହାୟ କରିଦେଇଥିଲେ । ନେହେରୁ ତେଣୁ ରାଜି ହୋଇଗଲେ । ବାପ ଏବଂ ଝିଅଙ୍କ ମଧ୍ୟରେ ପ୍ରଥମ ଜିଦିର ଲଢ଼େଇରେ, ଅବଶ୍ୟ ଶେଷ ଲଢ଼େଇ ନୁହେଁ, ଇନ୍ଦିରା ସିଧାସଳଖ ଜିତିଲେ ।

କିନ୍ତୁ ନେହରୁ ରାଜି ହୋଇଛନ୍ତି କି ନାହିଁ, ଲାଗିଲା ଯେମିତି ଅନର୍ଥ ହୋଇଗଲା । ନେହେରୁଙ୍କ ପାରିବାରିକ ବ୍ୟାପାରକୁ ସମଗ୍ର ଦେଶର ବ୍ୟାପାରଭାବେ ଗଣାଯାଉଥିବାରୁ ଏଭଳି "ମିଶ୍ର ବିବାହ" ବିରୋଧରେ ଶୋଭାଯାତ୍ରାମାନ ବାହାରିଲା । ନେହେରୁ ବା ଫିରୋଜଙ୍କ ପରିବାରର ପକ୍ଷରୁ ବିରୋଧ ହେଉ ବା ନହେଉ, ହିନ୍ଦୁ ଏବଂ ପାର୍ସୀ ସଂପ୍ରଦାୟ ପକ୍ଷରୁ ଏହାର ବିରୋଧ କରାଗଲା । ଏ ବିବାହକୁ ନେଇ ଅନେକ କଡ଼ା ଚିଠି ପାଉଥିବା ମହାତ୍ମା ଗାନ୍ଧି ଯେ ପର୍ଯ୍ୟନ୍ତ ଏହି ଯୁବ ଦମ୍ପତିଙ୍କ ପକ୍ଷରୁ ଛିଡ଼ା ନହୋଇଛନ୍ତି ଏହି ବିରୋଧ ଥମିଲା ନାହିଁ । ଇନ୍ଦିରା ପରେ ଯେତେବେଳେ କହିଥିଲେ ଯେ ଫିରୋଜଙ୍କ ସହିତ ତାଙ୍କ ବିବାହକୁ "ସାରା ବିଶ୍ୱ ବିରୋଧ କରୁଥିଲା", ସେତେବେଳେ ସେଥିରେ କିଛି ଅତିଶୟୋକ୍ତି ନଥିଲା ।

୧୯୪୨ ମସିହା, ମାର୍ଚ୍ଚ ୨୬ ତାରିଖରେ ଦୁହେଁ ବାହା ହେଲେ । ମଧୁଚନ୍ଦ୍ରିକା ପାଇଁ କାଶ୍ମୀର ଥିଲା ସ୍ୱାଭାବିକ ପସନ୍ଦ । ଗୁଲମାର୍ଗର ପାର୍ବତ୍ୟ ରେସର୍ଟ୍‌ରୁ ଏହି ନବଦମ୍ପତି ନେହେରୁଙ୍କୁ ଟେଲିଗ୍ରାମ କଲେ, "ହାୟ, ଆପଣଙ୍କ ପାଇଁ ଆମେ ଏଠିକାର ଶୀତଳ ମଳୟ କିଛି ପଠାଇ ପାରନ୍ତୁ କି ?" ନେହେରୁ ସାଙ୍ଗେସାଙ୍ଗେ ପ୍ରତ୍ୟୁତ୍ତର ଦେଲେ, "ଧନ୍ୟବାଦ, କିନ୍ତୁ, ତୁମର ସେଠି ଆମ୍ବ ନାହିଁ ।"

ଆହ୍ଲାବାଦକୁ ଫେରିଲାପରେ ଫିରୋଜ ଆନନ୍ଦଭବନ ନିକଟରେ ଏକ ଛୋଟ ଘର ଭଡ଼ା ନେଲେ ଓ ଜଣେ ଇନ୍‌ସ୍ୟୁରାନ୍‌ସ୍ ଏଜେଣ୍ଟ୍ ଏବଂ ଫ୍ରିଲାନ୍‌ସ୍ ସାମ୍ବାଦିକ ଭାବେ ଆପଣା ଗୁଜୁରାଣ ମେଣ୍ଟାଇବାକୁ ବାହାରିଲେ । କିନ୍ତୁ ଯଦି ସେ ଏବଂ ତାଙ୍କ ନବ ବିବାହିତା ପତ୍ନୀ ଭାବୁଥିଲେ ଯେ ସେମାନେ ସୁଖୀ ଦାମ୍ପତ୍ୟ ଓ ଗୃହସ୍ଥ ଜୀବନ କାଟିବେ, ତେବେ ସେମାନେ ଭୁଲ୍ ଭାବୁଥିଲେ । ସେମାନଙ୍କ ଆଶା ଏବଂ ଯୋଜନା ଅନ୍ୟ ସମସ୍ତଙ୍କ ଭଳି ଏକ ବିରାଟ ସଂଘର୍ଷର ଜୁଆରରେ ପ୍ଲାବିତ ହୋଇଗଲା । ଏହି ସଂଘର୍ଷ ଥିଲା ଉପନିବେଶବାଦର ଦୃଢ଼ ସମର୍ଥକ ୱିନ୍‌ଷ୍ଟନ୍ ଚର୍ଚ୍ଚିଲଙ୍କ ବ୍ରିଟିଶ୍‌ରାଜ - ଯେ ଥରେ ଦମ୍ଭର ସହ କହିଥିଲେ ଯେ "ବ୍ରିଟିଶ୍ ସାମ୍ରାଜ୍ୟ ଭାରତରୁ ଅସ୍ତମିତ ହେବା ସମୟର ଉତ୍ସବରେ ପୌରହିତ୍ୟ କରିବାପାଇଁ ମହାରାଣୀଙ୍କ ପ୍ରଥମ ପ୍ରଧାନମନ୍ତ୍ରୀ ହେବାକୁ ସେ ଚାହାନ୍ତି ନାହିଁ" - ଏବଂ ତା' ବି ମହାତ୍ମା ଗାନ୍ଧିଙ୍କୁ ଶିଖରରେ ବସାଇ ଉତ୍ତାଳ ତରଙ୍ଗସହ ମାଡ଼ିଆସୁଥିବା ଭାରତୀୟ ଜାତୀୟ ଆନ୍ଦୋଳନ ମଧ୍ୟରେ ।

## ରାଜର ଶେଷ ଖେଳ

ଇନ୍ଦିରା ଫିରୋଜଙ୍କ ବିବାହ ବେଳକୁ ବ୍ରିଟିଶ୍ ସରକାର ତାଙ୍କ ଯୁଦ୍ଧ କ୍ୟାବିନେଟ୍‌ର ଜଣେ ମନ୍ତ୍ରୀ ସାର୍ ଷ୍ଟାଫୋର୍ଡ୍ କ୍ରିପ୍‌ସ୍‌ଙ୍କୁ ଭାରତ ପଠାଇଥିଲା । ଉଦ୍ଦେଶ୍ୟ ଥିଲା ସେ ଦେଖିବେ ଜାତୀୟତା ଦ୍ୱାରା ଉଦ୍‌ବୁଦ୍ଧ ଭାରତକୁ ମନେଇ ମିତ୍ରଶକ୍ତି ବିରୋଧରେ ବ୍ରିଟେନ୍‌କୁ ସାହାଯ୍ୟ କରିବାକୁ ରାଜି କରାଇବାର କିଛି ସମ୍ଭାବନା ଅଛି ନା ନାହିଁ । କିନ୍ତୁ ତା ପ୍ରତିବଦଳରେ ସେ ଯାହା ଯାଚୁଥିଲେ ତାହା ପ୍ରଥମ ବିଶ୍ୱଯୁଦ୍ଧ ପରେ ବ୍ରିଟେନ୍ ଦ୍ୱାରା ହୋଇଥିବା ପ୍ରତିଜ୍ଞାଭଙ୍ଗର ସ୍ମୃତିକୁ ଅଧିକ ଉଜାଗର କରୁଥିଲା । ସେଇ ପ୍ରସ୍ତାବକୁ ଗାନ୍ଧିଜୀ ଏକ 'ପୋଷ୍ଟ୍ ଡ଼େଟେଡ୍ ଚେକ୍' ବୋଲି ପ୍ରତ୍ୟାଖ୍ୟାନ କରିଦେଲେ । ମହାତ୍ମା କହିଲେ, ସ୍ୱାଧୀନ ଭାରତ "ବ୍ରିଟେନ୍ ସଙ୍ଗରେ ମିଶି ଜାପାନ ଏବଂ ଜର୍ମାନୀ ବିରୋଧରେ ଲଢ଼ିବ, କିନ୍ତୁ ପରାଧୀନ ଭାରତ ଲଢ଼ିବ ବ୍ରିଟେନ୍ ବିପକ୍ଷରେ ।" ତାଙ୍କର ଯୋଜନା ଥିଲା ବ୍ୟକ୍ତି ସତ୍ୟାଗ୍ରହକୁ ଦେଶ ବ୍ୟାପି ଆଇନ ଅମାନ୍ୟ ଆନ୍ଦୋଳନରେ ପରିବର୍ତ୍ତନ କରିବା । ସେ କହୁଥିଲେ ଦେଶ "ଈଶ୍ୱରଙ୍କ ପାଖକୁ ଯାଉ ବା ଅରାଜକତାକୁ ଯାଉ," ଯାଏ ଆସେ ନାହିଁ, କିନ୍ତୁ ବ୍ରିଟିଶ୍‌ମାନେ ଏ ଦେଶକୁ ଛାଡ଼ି ଚାଲିଯାଆନ୍ତୁ । ଫାସିବାଦ ପ୍ରତି ମନରେ ଘୃଣା ଏବଂ ମିତ୍ରଶକ୍ତିଙ୍କ ପ୍ରତି ସହାନୁଭୂତି ଥିବା ଯୋଗୁଁ ନେହେରୁ ପ୍ରଥମେ ଭାରତଛାଡ଼ ଆନ୍ଦୋଳନକୁ ସମର୍ଥନ ଦେବାରେ କୁଣ୍ଠା ପ୍ରକାଶ କରୁଥିଲେ । କିନ୍ତୁ, ପରିଶେଷରେ ଯାହା ହୁଏ, ତାହା ହେଲା । ସେ ଗାନ୍ଧିଙ୍କ ଇଚ୍ଛା ଆଗରେ ମୁଣ୍ଡ ନୁଆଁଇଲେ । ଆଉ ଜଣେ କଂଗ୍ରେସ ନେତା ଏହାର ବିରୋଧ କରୁଥିଲେ, ସେ ଥିଲେ ସି ରାଜଗୋପାଳଚାରୀ ବା ରାଜାଜୀ । କିନ୍ତୁ ତାଙ୍କୁ ନଜରଅନ୍ଦାଜ କରିଦିଆଗଲା ।

୧୯୪୨ ମସିହା ଅଗଷ୍ଟ ମାସ ୭ ତାରିଖରେ ବମ୍ବେ (ମୁମ୍ବାଇ)ଠାରେ ଆୟୋଜିତ ହୋଇଥିବା ଅଲ ଇଣ୍ଡିଆ କଂଗ୍ରେସ କମିଟିର ସାଧାରଣ ଅଧିବେଶନରେ ନେହେରୁ ଭାରତଛାଡ଼ ପ୍ରସ୍ତାବକୁ ଉପସ୍ଥାପନ କଲେ ଏବଂ ଏହାକୁ ପ୍ରବଳ ସମର୍ଥନ ସହ ଗୃହୀତ କରିନିଆଗଲା । 'କର ବା ମର' ବୋଲି ଏଇ ସ୍ଲୋଗାନ୍ ଗାନ୍ଧି ତାଙ୍କ ଅନୁଗାମୀମାନଙ୍କୁ ଦେଲେ । ଏଭଳି ସଣ୍ଢୁଆଣି ଆକ୍ରମଣରେ ଅସ୍ତବ୍ୟସ୍ତ ବ୍ରିଟିଶ୍‌ରାଜ ତ୍ରସ୍ତ ହୋଇ ବଳ ପ୍ରୟୋଗ ଏବଂ ନିର୍ଯାତନାର ପର୍ବ ଆରମ୍ଭକଲା । ୧୯୪୨, ଅଗଷ୍ଟ ୯ ତାରିଖରେ ଏକ ସତର୍କତାମୂଳକ ବ୍ୟବସ୍ଥା ସ୍ୱରୂପ ବ୍ରିଟିଶ୍ ସରକାର ଗାନ୍ଧି ଏବଂ ଅନ୍ୟାନ୍ୟ କଂଗ୍ରେସ ନେତାମାନଙ୍କୁ ଗିରଫ କରିନେଲା । ଗାନ୍ଧିଙ୍କୁ ପୁଣେସ୍ଥିତ ଆଗା ଖାନ୍ ପ୍ୟାଲେସ୍‌ରେ ବନ୍ଦୀଭାବେ ରଖାଗଲା; ତ ନେହେରୁ ଏବଂ କଂଗ୍ରେସର ଅନ୍ୟାନ୍ୟ ରଥୀମାନଙ୍କୁ ଶହେ ମାଇଲ୍ ଦକ୍ଷିଣକୁ ଥିବା ଅହମ୍ମଦନଗର ଦୁର୍ଗରେ ରଖାଗଲା । ଗାନ୍ଧିଙ୍କ ନେତୃତ୍ୱକୁ ଏଇଭଳିଭାବେ ଅଚଳ କରିଦେବାପରେ ବାମପନ୍ଥୀ ଦଳ ଏହାର ସୁଯୋଗ ନେଇ ଏକ କ୍ରାନ୍ତି ଆରମ୍ଭ କରିବାକୁ ଚେଷ୍ଟାକଲେ । "ଅଗଷ୍ଟ କ୍ରାନ୍ତି" ନାମରେ ଜଣାଶୁଣା ଏହି ବିପ୍ଳବକୁ ଯଦିଓ ପରିଶେଷରେ ଦମନ କରାଗଲା ତଥାପି ଏହା ହୋଇପଡ଼ିଥିଲା ୧୮୫୭ର ସିପାହି ବିଦ୍ରୋହ ପରବର୍ତ୍ତୀ କାଳର ଭାରତରେ ବ୍ରିଟିଶ ଶାସନ ପ୍ରତି ସବୁଠାରୁ ବଡ଼ ଚ୍ୟାଲେଞ୍ଜ୍ ।

କଂଗ୍ରେସର ସେଇ ଐତିହାସିକ ଅଧିବେଶନରେ ଉଭୟ ଫିରୋଜ ଏବଂ ଇନ୍ଦିରା

ଉପସ୍ଥିତ ଥିଲେ । ସେଠାରୁ ଫେରିଲାବେଳକୁ ଉଭୟଙ୍କ ଗନ୍ତବ୍ୟ ଭିନ୍ନ ହୋଇଯାଇଥିଲା । ଫିରୋଜ ଭୂମିଗତ ହୋଇଗଲେ ଏବଂ ଇନ୍ଦିରା ଆହ୍ଲାବାଦ ଟ୍ରେନ୍ ଧରିଲେ । ଯେଉଁଦିନ ସେ ସେଠାରେ ପହଞ୍ଚିଲେ ତାଙ୍କ ପିଇସୀ ବିଜୟଲକ୍ଷ୍ମୀ ସେଇଦିନ ଗିରଫ ହୋଇଗଲେ । ନିଜ ଘରକଥା ଭୁଲିଯାଇ ଇନ୍ଦିରା ଆନନ୍ଦଭବନର ଦାୟିତ୍ୱ ନେଲେ । କିନ୍ତୁ ଇନ୍ଦିରା ଯେତେବେଳେ ଜାଣିଲେ ଯେ ତାଙ୍କ ଗିରଫଦାରୀ ବି ଅବଶ୍ୟମ୍ଭାବୀ, ସେତେବେଳେ ସେ ଆଉ ପୁଲିସ୍‌କୁ ଅପେକ୍ଷା ନକରି ପୁଲିସ୍‌କୁ ନିଜେ ଯାଇ ଭେଟିବାର ଯୋଜନା କଲେ ଏବଂ କିଛିଲୋକ ଜମାହୋଇଥିବା ସ୍ଥାନରେ ପୁଲିସ୍‌କୁ ଭେଟିଲେ । ସାଧାରଣଭାବେ ପୁଲିସ୍ ଯେଉଁଭଳି ବ୍ୟବହାର ଦେଖାଇଥାନ୍ତା, ତାଠାରୁ ଅଧିକ ଆକ୍ରମଣାତ୍ମକ ହୋଇଗଲା । ଫିରୋଜ, ଯେ କି ଏକ ନିକଟବର୍ତ୍ତୀ କୋଠାରୁ ଏହି ଘଟଣା ଦେଖୁଥିଲେ, ସିଧା ତା ଭିତରକୁ ଧସେଇ ପଶିଲେ । ସେ ବି ତାଙ୍କ ପତ୍ନୀଙ୍କ ସହିତ ଗିରଫ ହେଲେ ଏବଂ ଉଭୟଙ୍କୁ ଅଲଗା ଅଲଗା ଜେଲ୍‌କୁ ନିଆଗଲା ।

୧୯୪୨ ମସିହା ସେପ୍‌ଟେମ୍ବର ମାସ ୧୧ ତାରିଖରେ ବିଜୟଲକ୍ଷ୍ମୀ ପଣ୍ଡିତ ତାଙ୍କ ଡ଼ାଇରିରେ ଲେଖିଲେ, 'ଲକ୍ ଅପ୍' ଭିତରେ ପଶିବାର ଅଧଘଣ୍ଟାଏ ହୋଇଛି କି ନାହିଁ, ବାହାର ଗେଟ୍‌କୁ କେହି ଜଣେ ପ୍ରବଳ ଜୋର୍‌ରେ ବାଡ଼ଉ ଥିବାର ଶବ୍ଦ ଶୁଣିବାକୁ ମିଳିଲା ଏବଂ ମାଟ୍ରନ୍ ଜଣକ ବେଶ୍ ଉତ୍ତେଜିତ ଗଳାରେ ଚିତ୍କାରକଲେ ଯେ ଇନ୍ଦିରା ଆସିଛନ୍ତି । ସେଇ ଜେଲ୍‌ରେ ଇନ୍ଦିରା ତାଙ୍କ ପଚିଶତମ ଜନ୍ମଦିନ ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତ ଏବଂ ତାଙ୍କ ଦୁଇ ଝିଅଙ୍କ ସହ ମନେଇଲେ ଏବଂ ଫିରୋଜଙ୍କୁ ସେଥିରେ ଯୋଗଦେବା ପାଇଁ ଅନୁମତି ମିଳିଲା । ସେଇ ଜେଲ୍‌ରୁ ସ୍ୱାମୀ ସ୍ତ୍ରୀ ମୁକ୍ତି ପାଇବାର ଏକ ବର୍ଷ ପରେ ଅର୍ଥାତ୍ ୧୯୪୪, ଅଗଷ୍ଟ ମାସ ୨୦ ତାରିଖରେ ରାଜୀବ ଗାନ୍ଧି ଜନ୍ମ ହେଲେ । ସେତେବେଳକୁ ନେହେରୁ ଜେଲ୍‌ରେ ଥାଆନ୍ତି । ଇଉରୋପରେ ଯୁଦ୍ଧ ସରିବା ଉତ୍ତାରେ ଯେତେବେଳେ ଅହମ୍ମଦନଗର ଦୁର୍ଗ ଜେଲ୍‌ର ଦ୍ୱାର ଖୋଲିଲା ଏବଂ କଂଗ୍ରେସ ନେତାମାନେ ବାହାରକୁ ବାହାରିଲେ, ସେତେବେଳେ ଯାଇ ନେହେରୁ ତାଙ୍କ ନାତିକୁ କାଖରେ ଧରିବାର ସୁଯୋଗ ପାଇଲେ । ଜେଲ୍‌ରେ ଥିବାବେଳେ ପତ୍ନୀ କସ୍ତୁରବାଙ୍କ ମୃତ୍ୟୁ ଯୋଗୁ ମହାତ୍ମାଙ୍କୁ ଆଗରୁ ମୁକ୍ତି ଦିଆଯାଇଥିଲା ।

ଏହା ସଙ୍ଗେ ସଙ୍ଗେ କ୍ଷମତା ବଦଳ ବା ପରିବର୍ତ୍ତନ ପାଇଁ ଜୋରଦାର ଆଲୋଚନା ଆରମ୍ଭ ହୋଇଗଲା । ଏହିସବୁ ଆଲୋଚନା ଥିଲା ଦୀର୍ଘ, ଯନ୍ତ୍ରଣାଦାୟକ, ହତାଶାଜନକ ଏବଂ ବିରକ୍ତିକର । ଯେ କୌଣସି ପ୍ରକାରେ ବି ସେମାନଙ୍କ ମୁକୁଟର ସବୁଠାରୁ ଉଜ୍ଜ୍ୱଳ ମଣିଟିକୁ ଆଉ ଧରି ରଖିବାକୁ ବ୍ରିଟିଶମାନେ ଅସମର୍ଥ ଥିଲେ । ହଠାତ୍ ଏହା ମଧ୍ୟ ଜଣାପଡ଼ିଗଲା ଯେ ବ୍ରିଟିଶମାନଙ୍କ 'ଭାଗ କର ଏବଂ ଭୋଗ କର' ନୀତିଟି ବଦଳିଯାଇ ହୋଇଯାଇଛି, 'ଭାଗ କର ଏବଂ ପଳାଅ' । ଘଟଣାକ୍ରମେ ଅନେକ ମୂଳଚାଲ ଏବଂ ୧୯୪୬ ଅଗଷ୍ଟ ମାସରେ ଜିନ୍ନାଙ୍କ ଦ୍ୱାରା "ଡାଇରେକ୍ଟ୍ ଆକ୍‌ସନ୍"ର ଡ଼ାକରା ପରର ଭୟାବହ ରକ୍ତପାତ ପରେ ୧୯୪୭ ଜୁନ୍ ମାସ ୩ ତାରିଖରେ ନିଷ୍ପତ୍ତି ନିଆଗଲା ଯେ ଦେଶକୁ ଭାରତ ଓ ପାକିସ୍ତାନ ; ଏଇଭଳି ଦୁଇ ଭାଗରେ

ବିଭକ୍ତ କରିଦିଆଯିବ । ତେବେ ଏହା ହେବାର ଅନେକ ଆଗରୁ ନେହେରୁଙ୍କୁ ମଧ୍ୟବର୍ତ୍ତୀକାଳୀନ ସରକାରର ନେତୃତ୍ୱ ନେବାକୁ ହେଲା ଏବଂ ୧୯୪୬ ମସିହା ସେପ୍‌ଟେମ୍ବର ୨ ତାରିଖରୁ ସେ ଭାଇସ୍‌ରାୟଙ୍କ ଏକ୍‌ଜ୍ୟୁକୁଟିଭ୍ କାଉନ୍‌ସିଲ୍‌ର ଭାଇସ୍ ଚେୟାର୍‌ମ୍ୟାନ୍ ହେଲେ ।

ଲକ୍ଷ୍ନୌର ନିଜ ଘର, ଯେଉଁଠି କି ଫିରୋଜ, ନେହେରୁ ପରିବାର ଦ୍ୱାରା ପ୍ରକାଶିତ ଖବର କାଗଜ 'ନ୍ୟାସନାଲ୍ ହେରାଲ୍‌ଡ୍'ର ପରିଚାଳନା ନିର୍ଦ୍ଦେଶକ ଥିଲେ ଏବଂ ନେହେରୁଙ୍କ ସରକାରୀ ବାସଭବନ ଯେଉଁଠି ଦଶ ବର୍ଷରୁ ଅଧିକ କାଳ ପତ୍ନୀହରା ନେହେରୁ ବ୍ୟକ୍ତିଗତ ଯତ୍ନ ଆବଶ୍ୟକ କରୁଥିଲେ ; ଏଇ ଦୁଇ ସ୍ଥାନ ଭିତରେ ଇନ୍ଦିରାଙ୍କୁ ଏପଟ ସେପଟ ହେବାକୁ ପଡୁଥିଲା । ଏଥିରେ ଫିରୋଜ ସ୍ୱାଭାବିକଭାବେ ବିରକ୍ତ ହେଉଥିଲେ, କିନ୍ତୁ ଇନ୍ଦିରାଙ୍କ ଆଉ ଗତ୍ୟନ୍ତର ନଥିଲା । ସେ ଯାହା ବି ହେଉ, ଯେତେବେଳେ ଭାରତ ଉପମହାଦେଶରେ ବାସ କରୁଥିବା ସାରା ପୃଥିବୀର ସମଗ୍ର ଜନସଂଖ୍ୟାର ଏକ ପଞ୍ଚମାଂଶଙ୍କ ଭାଗ୍ୟ ଏବଂ ଭବିଷ୍ୟତ ଏଠାରେ ହେଉଥିବା ବିରାଟ ପରିବର୍ତ୍ତନ ଦ୍ୱାରା ପ୍ରଭାବିତ ହେବାକୁ ବସିଥିଲା, ସେତିକିବେଳେ ଗୋଟିଏ ଛୋଟ ପରିବାରର କଥା ବା ବୁଝୁଛି କିଏ ?

## ୨



# ତାଙ୍କ ବାପାଙ୍କ ପାଖରେ

ଭାଇସ୍‌ରାୟଙ୍କ ଏକ୍‌ଜ୍ୟୁକୁଟିଭ୍ କାଉନ୍‌ସିଲ୍‌ର ନେତୃତ୍ୱ ନେଲାପରେ ନେହେରୁ ବର୍ତ୍ତମାନର ମୋତିଲାଲ ନେହେରୁ ମାର୍ଗ ଏବଂ ତତ୍କାଳୀନ ୧୭, ୟର୍କ ରୋଡ୍‌ସ୍ଥିତ ଏକ ଛୋଟ ବଙ୍ଗଳାକୁ ଚାଲିଯାଇଥିଲେ । ପ୍ରଥମେ ପ୍ରଥମେ ମୁସଲିମ୍ ଲିଗ୍ ମଧ୍ୟବର୍ତ୍ତୀକାଳୀନ ସରକାର ଗଠନକୁ ବିରୋଧ କରୁଥିଲା । କିନ୍ତୁ ପରେ ଏହାକୁ "ଭିତରୁ ଭିତରୁ ସମ୍ପୂର୍ଣ୍ଣଭାବେ ଭାଙ୍ଗିଦେବାକୁ" ମନସ୍ଥକରି ସେଥିରେ ସାମିଲ ହେଲା ଏବଂ ଖୁବ୍ ଶୀଘ୍ର ତାକୁ ଭାଙ୍ଗିଦେବାକୁ ସମର୍ଥ ହେଲା । ଭୟାବହ ହିଂସା ଓ ରକ୍ତପାତ - ଜିନ୍ନାଙ୍କ "ଡାଇରେକ୍ଟ ଆକ୍‌ସନ୍" ଡ଼ାକରା ପରେ ଆରମ୍ଭ ହୋଇଥିବା କଲିକତାର ବିରାଟ ବଧ ଭୂମି - ଦେଶର ଅନ୍ୟାନ୍ୟ ସ୍ଥାନକୁ ନିଆଁଭଳି ବ୍ୟାପିଯାଉଥିଲା । ସବୁ ଚିନ୍ତାଶୀଳ ବ୍ୟକ୍ତିବିଶେଷ ଏହାକୁ ନେଇ ଗଭୀରଭାବେ ଚିନ୍ତିତ ହୋଇପଡ଼ିଥିଲେ ଏବଂ ସମସ୍ତେ ଉପଲବ୍‌ଧି କରିପାରୁଥିଲେ ଯେ ଯଦି ଉପମହାଦେଶର ଭାଗ୍ୟକୁ ନେଇ ଖୁବ୍ ଶୀଘ୍ର କିଛି ବୁଝାମଣା କରାନଯାଏ, ତେବେ ପରିସ୍ଥିତି ଅଣାୟତ ହୋଇଯିବ ।

ଏକ "ହଲୋକଷ୍ଟ" ବା ଧ୍ୱଂସର ତାଣ୍ଡବ ଚାଲିଥିବା ମଝିରେ ନେହେରୁ ତାଙ୍କ ବିଶାଳ ଦାୟିତ୍ୱ ମୁଣ୍ଡେଇଲେ ଏବଂ ଆହୁରି ବ୍ୟସ୍ତହୋଇ ଇନ୍ଦିରାଙ୍କୁ ଖୋଜିବାକୁ ଲାଗିଲେ । କେବଳ ଘର ସମ୍ଭାଳିବା ପାଇଁ ନୁହେଁ, ପ୍ରଧାନମନ୍ତ୍ରୀଙ୍କ ସରକାରୀ ଆପ୍ୟାୟିକାଭାବେ ତଥା ତାଙ୍କ ବ୍ୟକ୍ତିଗତ ତତ୍ତ୍ୱାବଧାୟିକାଭାବେ ନେହେରୁ ଇନ୍ଦିରାଙ୍କୁ ଲୋଡୁଥିଲେ । ସେଇଥିପାଇଁ ସେ ନିଜର ଦୁଇବର୍ଷର ପୁଅ ରାଜୀବଙ୍କୁ ଧରି ନୂଆଦିଲ୍ଲୀକୁ ଚାଲିଗଲେ । ଫିରୋଜ ଲକ୍ଷ୍ନୌରେ ରହିଗଲେ ଏବଂ ଏହା ଦୁହିଁଙ୍କ ବିବାହ ଭିତରେ ଏକ ଚାପ ସୃଷ୍ଟିକଲା । ୧୯୫୦ରେ ଫିରୋଜ ଜଣେ ପାର୍ଲିଆମେଣ୍ଟ ସଦସ୍ୟଭାବେ ଦିଲ୍ଲୀ ଗଲାପରେ ବି ଏଇ ପରିସ୍ଥିତିରେ ଉନ୍ନତି ଆସିଲା ନାହିଁ । ସେତେବେଳକୁ ବିଭିନ୍ନ ସରକାରୀ ଏବଂ ବେସରକାରୀ ସ୍ତରରେ ଚାଲିଥିବା ଦୁର୍ନୀତିକୁ ପଦାରେ ପକାଇ ଫିରୋଜ ବେଶ୍ ଖ୍ୟାତି ଅର୍ଜନ କରିଥିଲେ । ସେଠାରେ ସେ ପ୍ରଧାନମନ୍ତ୍ରୀଙ୍କ ନିବାସ "ତିନି ମୂର୍ତ୍ତି ଭବନ" ଏବଂ ନିଜ ଏମ୍‌ପି କ୍ୱାର୍ଟର୍ ମଧ୍ୟରେ ନିଜ ସମୟ ବାଣ୍ଟିବାକୁ ଲାଗିଲେ । କିନ୍ତୁ କିଛି ବର୍ଷ ଭିତରେ "ତିନି ମୂର୍ତ୍ତି ଭବନ"କୁ ତାଙ୍କ ଆସିବା ଆଖି ଦୃଶିଆଭାବେ କମିଗଲା । ଛାଡ଼ପତ୍ର ସିନା ଦିଆଗଲା ନାହିଁ, କିନ୍ତୁ କ୍ରମେ ବିଭାଘରଟି ଭାଙ୍ଗିଯିବାକୁ ବସିଲା । ୟର୍କ ରୋଡ୍‌ରେ

ପହଞ୍ଚିବାର ତିନି ସପ୍ତାହ ପରେ ଅର୍ଥାତ୍ ୧୯୪୬, ଡ଼ିସେମ୍ବର ୧୪ ତାରିଖରେ ଇନ୍ଦିରା ତାଙ୍କ ଦ୍ୱିତୀୟ ସନ୍ତାନ ସଞ୍ଜୟଙ୍କୁ ଜନ୍ମଦେଲେ । ଏଥରର ସନ୍ତାନ ଜନ୍ମର ଅନୁଭୂତି କିନ୍ତୁ ରାଜୀବଙ୍କ ସମୟ ଭଳି ନଥିଲା । ଏହା ଥିଲା "ଯନ୍ତ୍ରଣାଦାୟକ ଏବଂ କଷ୍ଟପ୍ରଦ ।" ଇନ୍ଦିରାଙ୍କ ଜୀବନର ଶେଷ ଦଶ ବର୍ଷ କେଉଁ ଭଳି କଟିବ, ଏହା କ'ଣ ତାର ଏକ ସଙ୍କେତ ଥିଲା ?

ଯେଉଁ ସ୍ୱାଧୀନତା ପାଇଁ କୋଟି କୋଟି ଜନତା ସଂଗ୍ରାମ କରିଥିଲେ ଏବଂ ତ୍ୟାଗ ସ୍ୱୀକାର କରିଥିଲେ, ଅବଶେଷରେ ସେଇ ସ୍ୱାଧୀନତାର ସମୟ ୧୯୪୭ ମସିହା, ଅଗଷ୍ଟ ୧୫ ତାରିଖ ଦିନ, ପାକିସ୍ତାନ ସୃଷ୍ଟିହେବା ସହିତ ଆସି ଉପନୀତ ହେଲା । ବିଭାଜନ ରେଖାର ଉଭୟ ପଟେ ନିର୍ମମ ଗଣହତ୍ୟା, ରକ୍ତପାତ ଏବଂ ଇତିହାସର ସବୁଠାରୁ ବଡ଼ ବିସ୍ଥାପନକୁ ସାଙ୍ଗରେ ନେଇ ବିମର୍ଷକର ଭାବେ ଆସିଥିଲା ଏହି ସ୍ୱାଧୀନତା । କିନ୍ତୁ ସାମଗ୍ରିକ ଭାବେ ସ୍ୱାଧୀନତାର ଆନନ୍ଦ ଏବଂ ଉତ୍କଣ୍ଠାକୁ ବିରସ କରିଦେବାପାଇଁ କୌଣସି ବି ଘଟନା ଯଥେଷ୍ଟ ନଥିଲା । ସେଇ କୁହୁକମୟ ନିଶାର୍ଦ୍ଧ ଘଡ଼ିରେ ଯେତେବେଳେ ନେହେରୁ ପ୍ରଧାନମନ୍ତ୍ରୀଭାବେ ବିଂଶ ଶତାବ୍ଦୀର ଅନ୍ୟତମ ସବୁଠାରୁ ସ୍ମରଣୀୟ ବକ୍ତୃତା 'ଭାଗ୍ୟ ସହ ସାକ୍ଷାତର ସମୟ', ପ୍ରଦାନ କଲେ, ସେତେବେଳେ ଇନ୍ଦିରା ତାଙ୍କ ପାଖରେ ଥିଲେ ଏବଂ ତାଙ୍କ ପାଖରେ ଏମିତି ଆହୁରି ସତର ବର୍ଷକାଳ ରହିବା ଥିଲା ଅବଧାରିତ । ସେ କହିବା ମୁତାବକ ଏହାର କାରଣ କେବଳ ଥିଲା "କର୍ତ୍ତବ୍ୟବୋଧର ଆହ୍ୱାନ", ଆଉ କିଛି ନୁହେଁ । ସେ ଜାଣିଥିଲେ ଯେ ତାଙ୍କ ବାପା ସତରେ ତାଙ୍କ ସାହଚର୍ଯ୍ୟ ଦରକାର କରୁଥିଲେ । "ପାପୁ" କେବଳ ସରକାରୀ ଚାକିରିଆ ଏବଂ ଚାକରମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଗୋଟିଏ ନିଃସଙ୍ଗ ଜୀବନ କାଟିବେ, ଏଭଳି ଏକ ପରିସ୍ଥିତି ତାଙ୍କୁ ଅସହ୍ୟ ବୋଧ ହେଉଥିଲା ।

ଭାରତର କୋମଳ କାନ୍ଧ ପାଇଁ ସ୍ୱାଧୀନତାର ବୋଝ ଥିଲା ବେଶ୍ ଭାରି । ଅଳ୍ପ କିଛି ଦିନ ପରେ ନେହେରୁ ଏକ ଭବ୍ୟ ପ୍ରାସାଦକୁ ଉଠିଗଲେ, ଯାହାକି ପୂର୍ବରୁ ଭାରତରେ ରହୁଥିବା ବ୍ରିଟିଶ କମାଣ୍ଡର ଇନ୍ ଚିଫ୍‌ଙ୍କ ଦ୍ୱାରା ବ୍ୟବହୃତ ହେଉଥିଲା ଏବଂ ଯାହା ଏବେ ନେହେରୁ ସ୍ମାରକୀ ପାଠାଗାର ଏବଂ ସଂଗ୍ରହାଳୟ ହୋଇଛି । ଏହି ପ୍ରକାଣ୍ଡ ପ୍ରାସାଦକୁ ସଜାଇବା ଏବଂ ବାଗେଇବା ଥିଲା ଏକ ଦୁରୂହ ବ୍ୟାପାର ଏବଂ ଯେହେତୁ ପ୍ରଧାନମନ୍ତ୍ରୀଙ୍କୁ ଭେଟିବା ପାଇଁ ଲୋକଙ୍କ ସୁଅ ଛୁଟୁଥିଲା, ସେ ହେତୁ ଏହି କାମ ଆହୁରି ଜଟିଳ ଏବଂ କଷ୍ଟସାଧ ହୋଇପଡ଼ିଥିଲା । ଏହା ବାଦେ ସେଠାକୁ ଧାଇଁ ଆସୁଥିଲେ "ଶରୀର ଏବଂ ମନରେ ଦାରୁଣ ଆଘାତ ପାଇଥିବା ଶରଣାର୍ଥୀ ଯେଉଁମାନେ କି ନେହେରୁଙ୍କ ଠାରୁ ରିଲିଫ୍ ଓ ସାନ୍ତ୍ୱନାର ଆଶା ରଖୁଥିଲେ । ୟର୍କ ରୋଡ୍‌ରେ ଏଭଳି ଶରଣାର୍ଥୀମାନଙ୍କୁ ଆଶ୍ରୟ ଦେବାପାଇଁ ଦୁଇଟି ପ୍ରକୋଷ୍ଠକୁ ଅଲଗାଭାବେ ରଖାଯାଇଥିଲା । ବଡ଼ ପ୍ରାସାଦରେ ସେମାନଙ୍କ ପାଇଁ ରହିଥିଲା ଏକ ସ୍ୱତନ୍ତ ବଡ଼ ସ୍ଥାନ ।

ସ୍ୱାଧୀନତାର ପ୍ରାରମ୍ଭିକ ବର୍ଷମାନଙ୍କରେ ସାଂପ୍ରଦାୟିକ ଦଙ୍ଗାର ପାଗଳାମି ସେମିତି ଚାଲିଥିଲା । ଭୀତତ୍ରସ୍ତ ମୁସଲ୍‌ମାନ୍‌ମାନେ ସେମାନଙ୍କ 'ଘେଟୋ' (ବସ୍ତି) ବା ଶରଣାର୍ଥୀ ଶିବିରରେ

ରହି ଯେତେବେଳେ ଆଶଙ୍କାରେ ଥରହର ହେଉଥିଲେ ଏବଂ ସେମାନଙ୍କ ପାଖକୁ ଆସୁଥିବା ଆଗନ୍ତୁକମାନଙ୍କୁ ସନ୍ଦେହାସ୍ପଦ ନଜରରେ ଦେଖୁଥିଲେ, ସେଇ ସମୟରେ ସେମାନଙ୍କୁ ସାନ୍ତ୍ୱନା ଦେବାପାଇଁ ଗାନ୍ଧିଜୀ, ଇନ୍ଦିରାଙ୍କ ସାହାଯ୍ୟ ଲୋଡ଼ିଲେ । ସୁତରାଂ, କଂଗ୍ରେସର କିଛି ସଦସ୍ୟାଙ୍କୁ ସାଥିରେ ନେଇ ଇନ୍ଦିରା ଏହି ଦାୟିତ୍ୱକୁ ନିର୍ବାହ କଲେ । ଏହାପରେ ସେ ଗାନ୍ଧିଜୀଙ୍କ ସହ ଘନିଷ୍ଠ ହୋଇଉଠିଲେ ଏବଂ ତାଙ୍କୁ ଭେଟିବାପାଇଁ ଅନେକ ସମୟରେ ସେ କଂଗ୍ରେସ ସମର୍ଥକ ଶିଳ୍ପପତି ଜିଡ଼ି ବିରଲାଙ୍କ ପ୍ରାସାଦକୁ ଯାଉଥିଲେ । ବିରଲାଂଙ୍କ ସେଇ ଘରେ ଗାନ୍ଧିଜୀ ରହୁଥିଲେ । ୧୯୪୮ 'ସିହା ଜାନୁଆରି ୨୯ ତାରିଖ ଦିନ, ଈଶ୍ୱର ପ୍ରେରିତଭାବେ ଇନ୍ଦିରା ମହାତ୍ମାଙ୍କୁ ଭେଟିବାକୁ ଯାଇଥିଲେ । ଗାନ୍ଧିଜୀ ମୁଣ୍ଡରେ ନଡ଼ା ଟୋପିଟିଏ ପିନ୍ଧି ବେଶ୍ ଆରାମରେ ବାହାରେ ଖରା ପୋଉଁଥିଲେ । ଏହାର ଚବିଶଘଣ୍ଟା ପରେ ମହାତ୍ମା ଗାନ୍ଧି, ଆମ ଜାତିର ପିତା ଏବଂ ଅହିଂସାର ଦୂତ, ଜଣେ ହିନ୍ଦୁ ମୌଳବାଦୀର ଗୁଳିରେ ଟଳିପଡ଼ିଲେ, ଯାହାର ଅଭିଯୋଗ ଥିଲା ଏୟା ଯେ ଗାନ୍ଧି "ମୁସଲ୍‌ମାନ୍‌ମାନଙ୍କୁ ଖୋସାମତ" କରୁଛନ୍ତି ଏବଂ ପାକିସ୍ତାନ ଗଠନକୁ ନେଇ ସେମାନଙ୍କ ସହିତ "ସଲା" କରିଛନ୍ତି । ଏହି ଖବର ଶୁଣି ସୁଦୂର ବ୍ରିଟେନ୍‌ରେ ନାଟ୍ୟକାର ଜର୍ଜ ବର୍ଣ୍ଣାଡ୍ ଶ କହିଲେ, "ଅତି ଭଲ ହେବାର ଫଳ ଏୟା ।" ଏହି ଘଟଣାଜନିତ ଦାରୁଣ ଧକ୍‌କା ଏବଂ ଶୋକରେ ଜର୍ଜରିତ ନେହେରୁ ବିରଳା ହାଉସ୍‌ର ଉଚ ଫାଟକ ଉପରକୁ ଉଠିଯାଇ ସ୍ତବ୍ଧ ଦେଶ ଉଦ୍ଦେଶ୍ୟରେ କହିଲେ, "ଆମ ଜୀବନର ଆଲୋକ ନିର୍ବାପିତ ହୋଇଯାଇଛି, ଏବଂ ଏବେ ଚତୁର୍ଦ୍ଦିଗ ଅନ୍ଧକାରାଚ୍ଛନ୍ନ । ଆପଣମାନଙ୍କୁ ମୁଁ କ'ଣ କହିବି ବା କିପରି କହିବି ବୁଝିପାରୁନାହିଁ ।"

"ପାକୁଆ ପାଟିର ହସ" ଉଭେଇ ଯିବାପରେ ଇନ୍ଦିରା ମଧ୍ୟ ଶୋକ ଜର୍ଜରିତ ହୋଇପଡ଼ିଥିଲେ ଏବଂ ମହାତ୍ମାଙ୍କ ହତ୍ୟାଜନିତ ଆଘାତ ତାଙ୍କ ପିତାଙ୍କ ଉପରେ କିଭଳି ପ୍ରଭାବ ପକାଇଥିବ ସେ ନେଇ ସେ ବେଶ୍ ଚିନ୍ତିତ ଥିଲେ । ସେ ଏ କଥା ମଧ୍ୟ "ବାରି ପାରୁଥିଲେ" ଯେ ଗାନ୍ଧିଙ୍କ ଯିବାପରେ ତାଙ୍କ ବାପାଙ୍କର ତାଙ୍କ ପ୍ରତି ନିର୍ଭରଶୀଳତା ଆହୁରି ବଢ଼ିଯାଇଛି ।

ତାଙ୍କ ବାପାଙ୍କ ଘରେ ସେ ତୁଲାଉଥିବା ଜଣେ କର୍ତ୍ତ୍ରୀ ଏବଂ ଆପ୍ୟାୟିକାର ଦାୟିତ୍ୱ ସମ୍ପର୍କରେ ଲେଖିବାକୁ ଯାଇ ଇନ୍ଦିରା ଭାରତୀୟମାନଙ୍କ ଖାଦ୍ୟ ଖାଇବାର ନିଆରା ଶୈଳୀ ଓ ଅଭ୍ୟାସ ଉପରେ ବେଶ୍ କିଛି ମଜାକଥା ଲେଖିଛନ୍ତି ।

ଏ ନେଇ କିଛି "ନିହାତି ଅସୁବିଧାଜନକ ପରିସ୍ଥିତିରୁ ଉଦ୍ଧାର ପାଇବାର ବର୍ଣ୍ଣନା" ବେଶ୍ ହାସ୍ୟଉଦ୍ରେକକାରୀ । ଉଦାହରଣସ୍ୱରୂପ ଥରେ ଦଲାଇ ଲାମାଙ୍କ ସମ୍ମାନାର୍ଥେ ପ୍ରସ୍ତୁତ ନିରାମିଷ ଭୋଜନକୁ ସ୍ୱତନ୍ତ୍ରଭାବେ ପ୍ରସ୍ତୁତ କଲାପରେ ସେଇ ବୌଦ୍ଧ ଧର୍ମଗୁରୁ ଆମିଷ ଖାଇବେ ବୋଲି କହନ୍ତେ, ଇନ୍ଦିରାଙ୍କୁ ସେଇ ନିରାମିଷ ଭୋଜନକୁ ସମ୍ପୂର୍ଣ୍ଣଭାବେ ବଦଳାଇବାକୁ ପଡ଼ିଥିଲା ।

ତେବେ ସେ ଯାହାହେଉ, ଇନ୍ଦିରା କେବଳ କର୍ତ୍ତ୍ରୀ ବା ତତ୍ତ୍ୱାବଧାୟିକା ନଥିଲେ, ଦିଲ୍ଲୀ ରହଣି ପରଠାରୁ ସେ ଅନେକ କିଛି କାର୍ଯ୍ୟକଳାପରେ ଆଗ୍ରହ ପ୍ରକାଶ କରିଥିଲେ, ବିଶେଷତଃ, ପିଲାମାନଙ୍କ ମଙ୍ଗଳ ପାଇଁ ଯେ କୌଣସି କାର୍ଯ୍ୟକ୍ରମରେ ଭାଗ ନେବାକୁ ସେ ଆଗ୍ରହୀ ଥିଲେ ।

ସେ "ବାଳ ସହଯୋଗ" ନାମକ ଏକ ସ୍ୱେଚ୍ଛାସେବୀ ସଂସ୍ଥା ଗଢ଼ିଥିଲେ ଯାହା କି ପରେ "ବାଳ ଭବନ" ନେଟ୍‌ୱାର୍କ୍‌ରେ ପରିଣତ ହୋଇଥିଲା ଏବଂ ପିଲାମାନଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ହୋଇଥିଲା । ଆମେରିକାରେ ବକ୍ତୃତା ଦେବାପାଇଁ ଏକ ଗସ୍ତରେ ଥିବା ସମୟରେ ସେ ମସ୍ତିଷ୍କ ପକ୍ଷାଘାତ ରୋଗପାଇଁ ଏକ ଚିକିତ୍ସା କେନ୍ଦ୍ର ପରିଦର୍ଶନ କରିଥିଲେ ଏବଂ ସେଭଳି ଏକ କେନ୍ଦ୍ର କିଭଳି ଭାରତରେ ଆରମ୍ଭ କରିହେବ ସେ ନେଇ ଯତ୍ନଶୀଳ ହୋଇଥିଲେ । ଯୋଜନା କମିଶନଙ୍କୁ ପ୍ରରୋଚିତ କରି ଦେଶବ୍ୟାପୀ କାର୍ଯ୍ୟକରୁଥିବା ସମାଜ ମଙ୍ଗଳ ସଂସ୍ଥାଗୁଡ଼ିକ ଭିତରେ କିଭଳି ସମନ୍ୱୟ ଅଣାଯାଇପାରିବ, ସେଇ ଉଦ୍ଦେଶ୍ୟରେ ସେ କେନ୍ଦ୍ର ସମାଜ ମଙ୍ଗଳ ବୋର୍ଡ଼ ସ୍ଥାପନ କରିବା ଦିଗରେ ଚେଷ୍ଟା କରିଥିଲେ । ପ୍ରତି ସମୟରେ ତାଙ୍କ ଭୂମିକା ବଢ଼ିବଢ଼ି ଚାଲିଥିଲା - ମନ୍ଥରଭାବେ ଯଦିଓ, କିନ୍ତୁ ଯଥାର୍ଥ ଭାବେ ଏବଂ ପିତାଙ୍କ ଜଣେ ବିଶ୍ୱସ୍ତ ଅନୁଚର ହେବାଠାରୁ ଆରମ୍ଭ କରି ତାଙ୍କ ପରାମର୍ଶଦାତା ବନି ନଯିବା ପର୍ଯ୍ୟନ୍ତ ପ୍ରତିଟି କ୍ଷେତ୍ରରେ ବାରି ନହେଲା ଭଳି ଅତି ସୂକ୍ଷ୍ମଭାବରେ ତାଙ୍କ ଭୂମିକା ବଢ଼ିଚାଲିଥିଲା । ଏଥର ନେହେରୁଙ୍କ ପ୍ରତି ବିଦେଶ ଗସ୍ତ ବେଳେ ଇନ୍ଦିରା ତାଙ୍କ ସହିତ ଗଲେ, ସେ ଦେଶମାନଙ୍କରେ ସମ୍ମାନର ସହ ଆତିଥ୍ୟ ଲାଭକଲେ ଏବଂ ବାପା ଏବଂ ସେ ଦେଶର ରାଷ୍ଟ୍ରମୁଖ୍ୟମାନଙ୍କ ଆଲୋଚନାକୁ ମଧ୍ୟ ଆମନ୍ତ୍ରିତ ହେଲେ । ଏହି ଅନୁଭୂତି ତାଙ୍କୁ କୂଟନୀତି ବିଷୟରେ ମୂଲ୍ୟବାନ ପ୍ରଶିକ୍ଷଣ ଦେଲା ଏବଂ ବିଶ୍ୱସ୍ତରୀୟ ନେତାମାନଙ୍କ ସହ ପରିଚିତ କରାଇଲା । ପରେ ଯେତେବେଳେ ଏହି ନେତାମାନଙ୍କ ସହ ସିଧାସଳଖ ସମ୍ପର୍କ ସ୍ଥାପନ କରିବାର ସମୟ ଆସିଲା, ସେତିକିବେଳେ ଏହି ପରିଚୟ କାମରେ ଆସିଲା । ପରବର୍ତ୍ତୀ ସମୟ ଦେଖାଇଦେଲା ଯେ ତାଙ୍କ ବାପାଙ୍କୁ କାମକରିବାର ଦେଖି ଦେଖି ରାଷ୍ଟ୍ର ପରିଚାଳନାର ବାଗ ବେଶ୍ ସାବଲୀଳ ଭାବେ ସେ ହାସଲ କରିନେଇଛନ୍ତି ।

ନେହେରୁ ନିଜର ଦୈନିକ ଷୋହଳ ଘଣ୍ଟା କାର୍ଯ୍ୟନିର୍ଘଣ୍ଟ ଭିତରୁ ଯେତିକି ବି ନିହାତି ଅନ୍ତରଙ୍ଗ ଏବଂ ବ୍ୟକ୍ତିଗତ ମୁହୂର୍ତ୍ତ ନିଜ ପାଇଁ କାଢ଼ି ପାରୁଥିଲେ, ସେଇ ସମୟତକ ଯେମିତି ସୁରକ୍ଷିତ ରହେ ତାହା ଦେଖିବା ଥିଲା ଇନ୍ଦିରାଙ୍କ ପ୍ରଧାନ ଦାୟିତ୍ୱ । ତେଣୁ ନେହେରୁଙ୍କ ନିକଟରେ ନିଜ ମନକଥା ଖୋଲିକହିବାପାଇଁ ବ୍ୟାକୁଳ ଥିବା ଦଳୀୟ କର୍ମକର୍ତ୍ତାମାନେ ନେହେରୁଙ୍କ ବଦଳରେ ଇନ୍ଦିରାଙ୍କ ପାଖେ ନିଜ ଦୁଃଖସୁଖ କହି ବିଦାୟ ନେଉଥିଲେ । ଅବଶ୍ୟ ପରେ ପ୍ରଧାନମନ୍ତ୍ରୀ ବି ତାଙ୍କ ଦଳର ସଦସ୍ୟମାନଙ୍କୁ ସବୁ କିଛି 'ଇନ୍ଦୁ'ଙ୍କୁ କହିବାକୁ ପରାମର୍ଶ ଦେଲେ । ପରିବାରସ୍ୱଜନ ଏବଂ ଦଳର ସଦସ୍ୟମାନେ ଇନ୍ଦିରାଙ୍କୁ ସ୍ନେହରେ ଡ଼ାକୁଥିଲେ ଇନ୍ଦୁ । କ୍ରମେ ସେ ତାଙ୍କ ବାପା ଏବଂ କଂଗ୍ରେସ ଦଳ ମଧ୍ୟରେ ମୁଖ୍ୟ ଯୋଗସୂତ୍ର ହୋଇପଡ଼ିଲେ । ପଞ୍ଚ ଦଶନ୍ଧିର ମଝାମଝି ବେଳକୁ ଦଳର ଉଚ୍ଚତର ପରିଷଦରେ ତାଙ୍କୁ ବସାଇବାର ପ୍ରସ୍ତୁତି ପର୍ବ ଆରମ୍ଭ ହୋଇଯାଇଥିଲା । କିଭଳି ଭାବେ ଏହି ପରିସ୍ଥିତିର ମାର୍ଗ ସୁଗମ ହେଲା, ତାକୁ ଯତ୍ନରସହ ବୁଝିବା ଦରକାର । କାରଣ ପରବର୍ତ୍ତୀ ବର୍ଷମାନଙ୍କରେ ଏହାକୁ ନେଇ ଅନ୍ୟାୟଭାବେ କୁହାଗଲା ଯେ "ଖୁବ୍ ଯତ୍ନ"ର ସହିତ ନେହେରୁ ତାଙ୍କ ଉତ୍ତରାଧିକାରୀଙ୍କୁ ବାଗଉଥିଲେ ।

ସତ କଥାଟି ହେଉଛି ଏହିପରି : ୧୯୫୧ ମସିହା ଶରତ କାଳ । ତତ୍କାଳୀନ କଂଗ୍ରେସ ସଭାପତି ପୁରୁଷୋତ୍ତମ ଦାସ ଟଣ୍ଡନ୍‌ଙ୍କୁ ବହିଷ୍କାର କରିବାଲାଗି ନେହେରୁ ଅଣ୍ଟା ଭିଡ଼ିଲେ । ନେହରୁ ଟଣ୍ଡନ୍ ମହାଶୟଙ୍କୁ ଗଭୀରଭାବେ ଭକ୍ତି କରୁଥିଲେ କିନ୍ତୁ ତାଙ୍କର ନିହାତି ମରହଟ୍ଟୀ ଦୃଷ୍ଟିକୋଣ ଏବଂ ସାଂପ୍ରଦାୟିକ ମନୋବୃତ୍ତିକୁ ସେ ଆଦୌ ପସନ୍ଦ କରୁନଥିଲେ । ଏପରିକି ନେହେରୁ ଟଣ୍ଡନ୍ ମହାଶୟଙ୍କୁ ସଭାପତି ପଦ ପାଇଁ ପ୍ରାର୍ଥୀ ନହେବାକୁ ପ୍ରବର୍ତ୍ତାଇଥିଲେ । କିନ୍ତୁ ଟଣ୍ଡନ୍‌ଜୀ ତାଙ୍କ କଥା ନଶୁଣି ନିର୍ବାଚନରେ ଅବତୀର୍ଣ ହେଲେ ଏବଂ ଗୋଟିଏ ତୀବ୍ର ପ୍ରତିଦ୍ୱନ୍ଦ୍ୱିତାମୂଳକ ନିର୍ବାଚନରେ ବିଜୟୀ ମଧ ହେଲେ । ପୁରୁଷୋତ୍ତମ ଟଣ୍ଡନ୍ ଯେ କଂଗ୍ରେସ ଭିତରେ ନିହାତି ଲୋକପ୍ରିୟ ଥିଲେ ତାହା ନୁହେଁ, କିନ୍ତୁ ଦଳ ଭିତରେ ଯେତେଜଣ ଦକ୍ଷିଣପନ୍ଥୀ ଥିଲେ, ସମସ୍ତେ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ୍‌ଙ୍କ ନେତୃତ୍ୱରେ ଏକହୋଇ ତାଙ୍କୁ ସମର୍ଥନ କରୁଥିଲେ । ଉଲ୍ଲେଖଯୋଗ୍ୟ ଯେ ସେତେବେଳେ ନେହେରୁଙ୍କ ପ୍ରାୟ ସମକକ୍ଷ କଂଗ୍ରେସ ନେତା ଯଦିବା କିଏ ଥିଲେ, ତେବେ ସେ ହେଉଛନ୍ତି ଉପ ପ୍ରଧାନମନ୍ତ୍ରୀ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ୍ । ଏହି ଦୁଇ ମହାରଥୀଙ୍କ ଭିତରେ ଥିବା ସମ୍ପର୍କ ଥିଲା ସତରେ ଅନନ୍ୟ । ଯେତେବେଳେ ରାଷ୍ଟ୍ରର ସ୍ୱାର୍ଥ କଥା ଉଠୁଥିଲା, ସେତେବେଳେ ସେମାନେ ଏକତ୍ୱ ବଜାୟ ରଖୁଥିଲେ, କିନ୍ତୁ ଅନ୍ୟ କେତେକ ବିଷୟରେ, ମୁଖ୍ୟତଃ ଦଳର ପ୍ରଶାସନକୁ ନେଇ ଉଭୟଙ୍କ ଭିତରେ ପ୍ରାୟ ପ୍ରତ୍ୟହ କଳହ ଚାଲୁଥିଲା । ପଟେଲ୍, ଯାହାଙ୍କ ଦୃଷ୍ଟିକୋଣ ଟଣ୍ଡନ୍‌ଙ୍କ ଦୃଷ୍ଟିକୋଣ ସହ ମେଳ ଖାଉଥିଲା, କିଛି ମାସ ପରେ ମୃତ୍ୟୁବରଣ କଲେ । ଯେତେବେଳେ ଏହି ଘଟଣା ପରେ ବି ଟଣ୍ଡନ୍‌ଙ୍କ ମତ ନରମିଲା ନାହିଁ ଏବଂ ସେ ବାରମ୍ବାର ନେହେରୁଙ୍କୁ ଟିକିଏ ଟିକିଏ କଥାରେ ବିରୋଧ କରିବାକୁ ଲାଗିଲେ, ସେତେବେଳେ ନେହରୁ "ଟଣ୍ଡନ୍‌ଙ୍କ ଚିନ୍ତାଧାରାକୁ ଦଳରୁ ବାହାର କରିଦେବାକୁ" ସ୍ଥିରକଲେ । ନୂଆଦିଲ୍ଲୀର ଏକ ସମାବେଶରେ ଅଖିଳ ଭାରତୀୟ କଂଗ୍ରେସ କମିଟି ଟଣ୍ଡନ୍‌ଙ୍କ ଇସ୍ତଫା ଗ୍ରହଣକରି ନେହେରୁଙ୍କୁ ସେଇ ଦାୟିତ୍ୱ ଗ୍ରହଣ କରିବାକୁ ଅନୁରୋଧ କଲେ । ସେ ପର୍ଯ୍ୟନ୍ତ "ଗୋଟିଏ ବ୍ୟକ୍ତି ଗୋଟିଏ ପଦବୀ" ଭଳି ଏକ ଉତ୍ତମ ଆଦର୍ଶର ଅନୁପନ୍ଥୀ ହୋଇଥିବା ନେହେରୁ ତାଙ୍କ ଆଦର୍ଶରୁ ବିଚ୍ୟୁତହୋଇ ଏକା ସାଙ୍ଗରେ ଦୁଇଟି ପଦବୀରେ ଆସୀନ ହେଲେ ।

୧୯୫୪ ବେଳକୁ କଂଗ୍ରେସର ସଭାପତି ଦାୟିତ୍ୱ ଆଉ କେହି ଜଣେ ନେବା ନିହାତି ଆବଶ୍ୟକ ବୋଲି ନେହେରୁ ଚିନ୍ତାକରିବାକୁ ଆରମ୍ଭ କରିଦେଇଥିଲେ । ପରିଶେଷରେ ଏଇ ସମ୍ମାନଟି ଗଲା ୟୁ.ଏନ୍. ଧେବର୍‌ଙ୍କ ପାଖକୁ । ଧେବର ଥିଲେ ଜଣେ ସମ୍ମାନସ୍ପଦ ଅଥଚ ପ୍ରଭାବଶୂନ୍ୟ ନେତା ଏବଂ ପଶ୍ଚିମ ଭାରତର କିଛି ରାଜଶାସିତ ଅଞ୍ଚଳକୁ ନେଇ ଗଠିତ ହୋଇଥିବା ସୌରାଷ୍ଟ୍ରର ସେ ଥିଲେ ମୁଖ୍ୟମନ୍ତ୍ରୀ । ପରେ ଏହିସବୁ ଅଞ୍ଚଳ ଗୁଜରାଟ ସହିତ ମିଶିଯାଇଥିଲା ।

ଧେବର ହିଁ ହେଉଛନ୍ତି ସେହି ବ୍ୟକ୍ତି ଯିଏ କି ଇନ୍ଦିରାଙ୍କୁ ପ୍ରଥମ ଥର ପାଇଁ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟ ହେବାପାଇଁ ଆମନ୍ତ୍ରଣ କଲେ । ଇନ୍ଦିରା ରାଜି ହେଲେ କିନ୍ତୁ ଜିଦି କଲେ ଯେ ତାଙ୍କୁ ସେଥିପାଇଁ ଦଳର ସଭାପତିଙ୍କ ଦ୍ୱାରା ମନୋନୀତ କରାଯାଉ । ଦୁଇବର୍ଷ ପରେ

ସେ ହେଲେ କଂଗ୍ରେସର ଶିଖର ଅନୁଷ୍ଠାନ କଂଗ୍ରେସ ପାର୍ଲିଆମେଣ୍ଟାରି ବୋର୍ଡ଼ର ସଦସ୍ୟ । ଏହାପରେ ଆହୁରି ଅନେକ କିଛି ହେବାର ଥିଲା । ୧୯୫୯ ମସିହାରେ ଅର୍ଥାତ୍ ଚାରିବର୍ଷ କାଳ ଦଳର ସଭାପତି ପଦରେ ବସିଲାପରେ ଧେବର ତାଙ୍କ ଗାଦି ଛାଡ଼ିଲେ । ସେତିକିବେଳେ ତାଙ୍କ ପରାମର୍ଶ ଏବଂ ତତ୍କାଳୀନ ଗୃହମନ୍ତ୍ରୀ ଗୋବିନ୍ଦ ବଲ୍ଲଭ ପନ୍ତଙ୍କ ସକ୍ରିୟ ସମର୍ଥନ କ୍ରମେ ଇନ୍ଦିରା ନିର୍ବିରୋଧରେ କଂଗ୍ରେସ ସଭାପତି ପଦ ଅଳଙ୍କୃତ କଲେ । ଏହା ଥିଲା ତାଙ୍କ ରାଜନୈତିକ ଜୀବନର ଗୋଟିଏ ମାଇଲ ଖୁଣ୍ଟ ଏବଂ ଗୋଟିଏପଟୁ ବିଚାରକଲେ ଏହା ଥିଲା ଆଧୁନିକ ଭାରତ ଇତିହାସର ଗୋଟିଏ ମୁଖ୍ୟ ଘଟଣା । ଏହାଛଡ଼ା ଏହି ଘଟଣା ଏକ ନିହାତି ବିତର୍କିତ ଅଧ୍ୟାୟ ରଚନା କରିବା ଥିଲା ବିଧିସମ୍ମତ । କାରଣ ଏହାର କିଛି ବର୍ଷ ପରେ ମୋରାରଜୀ ଦେଶାଇ, ଯେ କି ନିଜକୁ ନେହେରୁଙ୍କ ସ୍ୱାଭାବିକ ଉତ୍ତରାଧିକାରୀ ବୋଲି ଭାବୁଥିଲେ, ସର୍ବ ସମକ୍ଷରେ ନିଜ ବ୍ୟକ୍ତିଗତ ଅସନ୍ତୋଷକୁ ବ୍ୟକ୍ତକରି କହିଥିଲେ ଯେ ଇନ୍ଦିରାଙ୍କୁ ଦଳର ସଭାପତି ଆସନକୁ ଉଠାଇବା ଥିଲା ନେହେରୁଙ୍କ ପ୍ରଥମ "ମାକିଆଭେଲୀୟ ପଦକ୍ଷେପ"କାରଣ ନେହେରୁ ହିଁ ଚାହୁଁଥିଲେ ଯେ ତାଙ୍କ ଝିଅ ହିଁ ତାଙ୍କର ଉତ୍ତରାଧିକାରୀ ହେଉ । ଅନେକ କଂଗ୍ରେସୀ ଏହି ଧାରଣା ପୋଷଣ କରୁଥିଲେ ସୁଦ୍ଧା ମୋରାରଜୀ ଭଳି ଖୋଲାଖୋଲି ଭାବେ ଏ କଥା କହୁନଥିଲେ । କିନ୍ତୁ ଯେତେ ଲୋକ ଯେତେ ଗଭୀର ଭାବରେ ଏ ଧାରଣା ପୋଷଣ କଲେ ବି ଏହା ଥିଲା ମୂଳତଃ ଭୁଲ୍ ।

ନେହେରୁଙ୍କ ଝିଅ ହୋଇନଥିଲେ ଇନ୍ଦିରା ୧୯୬୬ରେ ଭାରତର ପ୍ରଧାନମନ୍ତ୍ରୀ ହୋଇ ପାରିନଥାନ୍ତେ ବୋଲି କିଛି ଲୋକ ପୋଷଣ କରୁଥିବା ମତ ନିଶ୍ଚିତ ଭାବେ ଯୁକ୍ତିସାପେକ୍ଷ । ଏହା ମଧ୍ୟ ନିଶ୍ଚିତ ଥିଲା ଯେ ନିଜ ଝିଅକୁ ନେଇ ନେହେରୁ ଯାହା ଭାବୁଥାନ୍ତୁ ନା କାହିଁକି ଅଥବା ତାଙ୍କୁ ନେଇ ଯେଉଁ ଉଚ୍ଚାଭିଳାଷ ପୋଷଣ କରିଥାନ୍ତୁ ନା କାହିଁକି, ସେ ଏଭଳି କିଛି ପଦକ୍ଷେପ ନେଇ ନଥିଲେ ଯାହା ଦ୍ୱାରା କି ତାଙ୍କ ଝିଅ ଦଳର କୌଣସି ଏକ ପଦବୀରେ ବସିବା ସମ୍ଭବ ହୋଇଥାନ୍ତା ; ତେଣିକି ଦଳର ସଭାପତି ପଦ ଅଥବା ପ୍ରଧାନମନ୍ତ୍ରୀ ପଦ ତ ଦୂରର କଥା । ଅପରପକ୍ଷରେ ଇନ୍ଦିରା ଦଳର ସଭାପତି ହେବାପରେ ନେହେରୁ ଗୋଟିଏ ସାମ୍ବାଦିକ ସମ୍ମିଳନୀ ଡ଼ାକି କହିଥିଲେ, "ସାଧାରଣ ଭାବେ ଦେଖିବାକୁ ଗଲେ ମୁଁ ପ୍ରଧାନମନ୍ତ୍ରୀ ଥିଲାବେଳେ ମୋ ଝିଅ ଦଳର ସଭାପତି ହେବା ଠିକ୍ କଥା ନୁହେଁ । ତେବେ ସେ ଯାହାହେଉ, ଧେବରଙ୍କ କୌଣସି ପଦକ୍ଷେପକୁ ସେ ବିରୋଧ କରିନଥିଲେ । ଏହା ମଧ୍ୟ ଉଲ୍ଲେଖଯୋଗ୍ୟ ଯେ ନେହେରୁଙ୍କ ମୃତ୍ୟୁ ପୂର୍ବରୁ ତାଙ୍କ ଉତ୍ତରାଧିକାରୀଭାବେ ଲାଲ୍ ବାହାଦୁର ଶାସ୍ତ୍ରୀଙ୍କୁ ସ୍ଥିର କରାଯାଇଥିଲା । ଏ ସମ୍ପର୍କରେ ମୁଁ ଆହୁରି ବିସ୍ତୃତଭାବେ ପରବର୍ତ୍ତୀ ବର୍ଣ୍ଣନାରେ ଯଥାର୍ଥ ସ୍ଥାନରେ କହିବି ଯଦିଓ ମୁଁ ଏହାଦ୍ୱାରା ମୋ ପୂର୍ବବର୍ତ୍ତୀ ପୁସ୍ତକ ହାର୍ପର୍ କଲିନ୍ସ୍ ଦ୍ୱାରା ୨୦୦୩ରେ ପ୍ରକାଶିତ ଡ଼ାଇନାଷ୍ଟିଜ୍ ଅଫ୍ ଇଣ୍ଡିଆ ଏଣ୍ଡ୍ ବିଅଣ୍ଡ୍ (ଭାରତର ବଂଶବାଦ ଏବଂ ତା ପରେ)ରେ ମୁଁ ନେହେରୁଙ୍କ ବିପକ୍ଷରେ ଲେଖିଥିବା ଅନେକ ତର୍କକୁ କାଟିବାକୁ ବାଧ୍ୟ ହେବି ।

ତିରିଶ ବର୍ଷ ପୂର୍ବେ ନେହେରୁ ଯେତେବେଳେ ପ୍ରଥମେ କଂଗ୍ରେସ ଦଳର ସଭାପତି

ହୋଇଥିଲେ, ସେତେବେଳେ ସେ ଯେତିକି ବୟସର ଥିଲେ, ଏକଚାଳିଶ ବର୍ଷ ବୟସ୍କା ଇନ୍ଦିରା ପ୍ରଥମକରି ସଭାପତି ହେଲା ବେଳକୁ ଥିଲେ ତାଙ୍କ ଠାରୁ ଏକ ବର୍ଷ ବଡ଼ । ଯଦିଓ ଦୁଇ ବର୍ଷ ପାଇଁ ସେ ନିର୍ବାଚିତ ହୋଇଥିଲେ, ତଥାପି ମାତ୍ର ଏକ ବର୍ଷ ପାଇଁ ସେ ଦାୟିତ୍ୱ ନେଲେ । ଏହା ପଛରେ ଗୋଟିଏ କାରଣ ଥିଲା ତାଙ୍କ ଶରୀରର ଅସୁସ୍ଥତା ଏବଂ ଦ୍ୱିତୀୟ କାରଣଟି ଥିଲା କେତେକ ରାଜ୍ୟରେ କଂଗ୍ରେସ କର୍ମକର୍ତ୍ତାଙ୍କ କାର୍ଯ୍ୟକଳାପ ତାଙ୍କୁ ଅସନ୍ତୁଷ୍ଟ କରୁଥିଲା । କିନ୍ତୁ ଏହି କମ୍ ସମୟ ଭିତରେ ବି ସେ ଯେଉଁ କେତେକ କାର୍ଯ୍ୟ ସଂପାଦନ କରିଥିଲେ ସେଥିରେ ତାଙ୍କ ଅଫୁରନ୍ତ ପ୍ରାଣଶକ୍ତି, ଦୃଢ଼ତା ଏବଂ କୁଶଳତା ସ୍ପଷ୍ଟଭାବେ ବାରିହୋଇ ପଡୁଥିଲା ।

ଇନ୍ଦିରାଙ୍କ ଜଣେ ପୂର୍ବବର୍ତ୍ତୀ ଜୀବନୀକାର ଉମା ବାସୁଦେବଙ୍କ ଅନୁସାରେ ସେ କଂଗ୍ରେସର ମହିଳା ବିଭାଗକୁ ଦେଶର ମହିଳାମାନଙ୍କ ଉନ୍ନତିକଳ୍ପେ ନିୟୋଜିତକରି ଦେଶର ଲୋକସଂଖ୍ୟାର ଏହି ଅର୍ଦ୍ଧେକ ଭାଗ ମଧ୍ୟରେ ଏକ ବିଶାଳ ସମର୍ଥନର ଭୂମି ପ୍ରସ୍ତୁତ କରିପାରିଥିଲେ । କିନ୍ତୁ, ଇନ୍ଦିରା ତାଙ୍କ କାର୍ଯ୍ୟକାଳ ଭିତରେ ଏଭଳି ଦୁଇଟି ରାଜନୈତିକ ପଦକ୍ଷେପ ନେଇଥିଲେ, ଯଦ୍ୱାରା କି ସାଧାରଣଲୋକେ ତାଙ୍କର ଏହି ଉପରବର୍ଣ୍ଣିତ ଅବଦାନ ଆଡ଼କୁ ନଜର ଦେଇପାରିଲେ ନାହିଁ । ଏହି ଦୁଇଟି ନିଷ୍ପତ୍ତି ଭିତରୁ ଗୋଟିଏ ଥିଲା ବେଶ୍ ପ୍ରଶଂସାର ପାତ୍ର, ମାତ୍ର ଦ୍ୱିତୀୟଟି ଥିଲା ସାଂଘାତିକଭାବେ ବିବାଦୀୟ ଏବଂ ଏହି ଦ୍ୱିତୀୟ ପଦକ୍ଷେପଟି ହିଁ ଫିରୋଜ ଏବଂ ତାଙ୍କ ଭିତରେ ସୃଷ୍ଟି ହୋଇଥିବା ବିଭେଦକୁ ଆହୁରି ଘନୀଭୂତ କରିଦେଇଥିଲା ।

ତାଙ୍କର ଲୋକପ୍ରିୟ ନିଷ୍ପତ୍ତିଟି କଂଗ୍ରେସର ଗାନ୍ଧିଜୀଙ୍କ ସମୟର ମୂଲ୍ୟବୋଧ ପ୍ରତି ଥିବା ଅଙ୍ଗୀକାରବଦ୍ଧତାରୁ ହିଁ ସୃଷ୍ଟି ହୋଇଥିଲା ଏବଂ ତାହା ଥିଲା ଭାଷା - ଭିତ୍ତିରେ ଭାରତର ମାନଚିତ୍ରକୁ ପୁଣିଥରେ ତିଆରି କରିବା । ଚଉଦଟି ମୁଖ୍ୟ ଭାଷା ଏବଂ ଅଗଣିତ ଉପଭାଷା ସମ୍ବଳିତ ଦେଶ ଭାରତରେ କେବଳ ମାତୃଭାଷା ଜରିଆରେ ସ୍ଥାନୀୟ ଲୋକଙ୍କ ସମସ୍ୟା ସବୁଠାରୁ ଭଲଭାବେ ସମାଧାନ କରାଯାଇପାରିବ ବୋଲି ଗାନ୍ଧିଜୀ ଭାବୁଥିଲେ । କିନ୍ତୁ ସ୍ୱାଧୀନତା ଏବଂ ତାର ପରବର୍ତ୍ତୀ ସମୟରେ ଯେଉଁଭଳି ଘଟଣାମାନ ଘଟିବାକୁ ଲାଗିଲା, ସେଥିରେ ନେହେରୁ ଆଉ ଭାଷାଗତ "ପାଣ୍ଡୋରା ବାକ୍ସ"କୁ ଖୋଲିବାକୁ ଚାହୁଁନଥିଲେ । କିନ୍ତୁ, ଜନସାଧାରଣଙ୍କ ଆବେଗର ଜୁଆରକୁ ରୋକିବା ସମ୍ଭବ ନଥିଲା । ୧୯୫୩ରେ ତେଲୁଗୁ ଭାଷୀ ଆନ୍ଧ୍ରପ୍ରଦେଶ ମାଡ୍ରାସ ରାଜ୍ୟ (ବର୍ତ୍ତମାନର ତାମିଲନାଡୁ)ରୁ ବିଚ୍ଛିନ୍ନ ହେଲାପରେ ଅନ୍ୟ ସ୍ଥାନମାନଙ୍କରେ ଏଭଳି ଆନ୍ଦୋଳନକୁ ରୋକିବା ଆଉ ସମ୍ଭବପର ନଥିଲା । ରାଜ୍ୟ ସୀମା ନିର୍ଦ୍ଧାରଣ କମିଶନ୍‌ଙ୍କ ସୁପାରିଶ ଅନୁସାରେ ଅଧିକାଂଶ ରାଜ୍ୟର ସୀମାରେଖା ଭାଷା ଭିତ୍ତିରେ ପୁଣି ସଜଡ଼ାଗଲା । କିନ୍ତୁ, ଏଥିରେ ଦୁଇଟି ବ୍ୟତିକ୍ରମ ଥିଲା, ଯାହା କି ସଂଘର୍ଷ ଏବଂ ରକ୍ତପାତର କାରଣ ମଧ୍ୟ ହୋଇଥିଲା । ତା ଭିତରୁ ଗୋଟିଏ ଥିଲା ସଂଖ୍ୟାଲଘୁ ଶିଖ ସଂପ୍ରଦାୟର କେବଳ ପଞ୍ଜାବୀ ଭାଷାଭାଷୀ ଲୋକଙ୍କୁ ନେଇ ଏକ ରାଜ୍ୟ ଗଢ଼ିବାର ଦାବିକୁ ନେହେରୁ ସରକାର ଅଗ୍ରାହ୍ୟ କରିବା । ଏହା ଯଦି ସମ୍ଭବ ହୋଇଥାଆନ୍ତା ତେବେ ଏକ ଶିଖ ରାଜ୍ୟ ଗଠିତ ହୋଇପାରିଥାନ୍ତା । କିନ୍ତୁ, ଭାରତ ବିଭାଜନର ତୁରନ୍ତ ବାଦେ

ପୁଣି ଭାରତ - ପାକିସ୍ତାନ ସୀମାରେଖାର ଏତେ ସମୀପରେ ଧର୍ମଗତ କାରଣକୁ ଭିତ୍ତିକରି ଏକ ରାଜ୍ୟ ଗଢ଼ାଯିବାକୁ ଅନୁମତି ଦେବାରେ ନେହେରୁ ସାହସ କୁଳାଇପାରୁ ନଥିଲେ ।

ଅନ୍ୟଟି ହେଉଛି ବମ୍ବେରେ ରହୁଥିବା ମରାଠୀ ଭାଷୀ ଏବଂ ଗୁଜରାଟୀ ଭାଷୀଙ୍କ ଇଚ୍ଛା ବିରୁଦ୍ଧରେ ଯାଇ ବମ୍ବେକୁ ଏକ ଦ୍ୱିଭାଷୀ ଅଞ୍ଚଳ ରୂପେ କାଏମ ରଖିବା । ଜବରଦସ୍ତଭାବେ ଏଇ ଦୁଇ ଭାଷାର ଲୋକଙ୍କୁ ଯୋଡ଼ି ରଖିବାର ଏଭଳି ପ୍ରୟାସର କାରଣ ଥିଲା ତତ୍କାଳୀନ ଭାରତର ଅର୍ଥନୈତିକ ତଥା ବ୍ୟବସାୟିକ କେନ୍ଦ୍ର ତଥା ପ୍ରସିଦ୍ଧ ମେଟ୍ରୋ ନଗରୀକୁ ନେଇ ଚାଲିଥିବା ବିବାଦ ଯଦିଓ ଏହି ମହାନ ନଗରୀ ଭୌଗୋଳିକ ଭାବେ ଥିଲା ମହାରାଷ୍ଟ୍ରର ଗୋଟିଏ ଅଂଶ ତଥାପି ଏହା ପ୍ରକୃତରେ ଥିଲା ଏକ ବିଶ୍ୱନଗରୀ ଏବଂ କେବଳ ଗୁଜରାଟୀ ଶିଳ୍ପପତି ନୁହେଁ, ଦେଶର ବିଭିନ୍ନ ପ୍ରାନ୍ତରୁ ଆସିଥିବା ବ୍ୟବସାୟୀ ଗୋଷ୍ଠୀଙ୍କ ଯୋଗେ ଏହା ସମୃଦ୍ଧ ହୋଇଥିଲା । ସେମାନେ ଚାହୁଁନଥିଲେ କି ଏହି ନଗରୀର ଚରିତ୍ରରେ କୌଣସି ପରିବର୍ତ୍ତନ ଅଣାଯାଉ । ଅପର ପକ୍ଷରେ ମୁମ୍ବାଇକୁ ଏକ ନଗର ରାଜ୍ୟରେ ପରିଣତ କରିବାର ପ୍ରଚେଷ୍ଟା ଏଭଳି ବିରୋଧ ସୃଷ୍ଟି କରିଥିଲା ଯେ ତଜ୍ଜନିତ ପୁଲିସ ଗୁଳିକାଣ୍ଡରେ ଶତାଧିକ ପ୍ରତିବାଦକାରୀ ନିହତ ହୋଇଥିଲେ ।

ଏହାର ତିନି ବର୍ଷ ପରେ, କଂଗ୍ରେସର ସଭାପତି ହେଲାପରେ ଇନ୍ଦିରା ଦେଖିଲେ ଯେ ମୁମ୍ବାଇକୁ ଏକ ଦ୍ୱିଭାଷୀ ଅଞ୍ଚଳଭାବେ ଗଢ଼ିବାର ପରୀକ୍ଷାଟି କାମ କରୁନାହିଁ । ସେ ବୁଝିସାରିଥିଲେ ଯେ ଏହା ସଫଳ ହେବାର କୌଣସି ସମ୍ଭାବନା ହିଁ ନାହିଁ । ସେ ତେଣୁ ଆଦେଶ ଦେଲେ ଯେ ପୂର୍ବର ନିଷ୍ପତ୍ତିକୁ ପୁଣି ବଦଳାଯାଉ । ଏହାଛଡ଼ା, ମୁମ୍ବାଇକୁ ମହାରାଷ୍ଟ୍ରରେ ମିଶାଇବା ବିରୋଧରେ ଗୁଜରାଟୀ ପ୍ରତିବାଦ ସ୍ୱରକୁ ସେ ଅତି କୁଶଳତାର ସହ ଚାପି ଦେବାକୁ ସମର୍ଥ ହୋଇଥିଲେ । ୧୯୬୦ ମସିହା ମେ ମାସ ୧ ତାରିଖରେ ଯେତେବେଳେ ଅତ୍ୟନ୍ତ ଆନନ୍ଦ ଉଲ୍ଲାସର ସହିତ ଅଲଗା ମହାରାଷ୍ଟ୍ର ଏବଂ ଗୁଜରାଟ ରାଜ୍ୟ ଗଠନ କରାଗଲା, ସେତିକିବେଳେ ଇନ୍ଦିରା କଂଗ୍ରେସ ଦଳର ସଭାପତି ନଥିଲେ ସୁଦ୍ଧା ସେ ହିଁ ହୋଇଥିଲେ ସମସ୍ତଙ୍କର ପ୍ରଶଂସାର ପାତ୍ରୀ । ଇନ୍ଦିରାଙ୍କ ନେତୃତ୍ୱରେ ହୋଇଥିବା ଦ୍ୱିତୀୟ ଘଟଣା - ଯାହାଥିଲା ମହାରାଷ୍ଟ୍ର ଏବଂ ଗୁଜରାଟର ବିଭାଜନଠାରୁ ଅଧିକ ସମ୍ବେଦନଶୀଳ - କିନ୍ତୁ, ଭୀଷଣଭାବେ ବିବାଦୀୟ ହୋଇପଡ଼ିଥିଲା । ଏଥି ଯୋଗୁ ଇନ୍ଦିରା ଯେତିକି ପ୍ରଶଂସା ପାଇଥିଲେ ସେତିକି ନିନ୍ଦା ବା ଅପବାଦ ସହିଥିଲେ ।

ଭାରତୀୟ ଉପମହାଦେଶର ଦକ୍ଷିଣତମ ବିନ୍ଦୁରେ ଅବସ୍ଥିତ ଉପକୂଳ ରାଜ୍ୟ କେରଳ ଥିଲା ଏହି ଦୀର୍ଘ ତଥା ଯନ୍ତ୍ରଣାଦାୟକ ନାଟକର ଅଭିନୟ କ୍ଷେତ୍ର । ଆଜି ଭଳି ସେତେବେଳେ ବି ଏହି ରାଜ୍ୟର ସାକ୍ଷରତା ହାର ଥିଲା ଦେଶର ସର୍ବାଧିକ । ଏହି ରାଜ୍ୟର ଅନ୍ୟାନ୍ୟ ବିଶେଷତ୍ୱ ମଧ୍ୟରେ ଥିଲା ଏହାର ଅସନ୍ତୁଳ ରାଜନୈତିକ ପରିସ୍ଥିତି, ଖ୍ରୀଷ୍ଟିଆନ୍, ମୁସଲ୍‌ମାନ ଏବଂ ହିନ୍ଦୁମାନଙ୍କ ପ୍ରାୟ ସମାନୁପାତିକ ଉପସ୍ଥିତି, ଯାହା ଯୋଗୁଁ କ୍ଷମତାଶାଳୀ ଖ୍ରୀଷ୍ଟିଆନ୍ ଚର୍ଚ୍ଚ, ମୁସଲିମ୍ ଲିଗ୍, ହିନ୍ଦୁମାନଙ୍କ ଭିତରୁ ଦଳିତ ଏବଂ ପଛୁଆ ବର୍ଗଙ୍କୁ ନେଇ ଗଠିତ ସାମାଜିକ ବା ଧର୍ମୀୟ ଅନୁଷ୍ଠାନର

ମାତ୍ରାଧିକ ପ୍ରଭାବ ଏବଂ କମ୍ୟୁନିଷ୍ଟ୍ ଦଳ ପ୍ରତି ଆନୁଗତ୍ୟ । ୧୯୫୭ ମସିହାରେ କେରଳକୁ କମ୍ୟୁନିଷ୍ଟ୍ ସରକାର ଆସିଲା ଏବଂ ଏକ ମୁକ୍ତ ଏବଂ ଅବାଧ ଗଣତନ୍ତ୍ରରେ ନିର୍ବାଚନ ଜିତି କମ୍ୟୁନିଷ୍ଟ ଦଳ କ୍ଷମତାକୁ ଆସି ବିଶ୍ୱର ପ୍ରଥମ ଦୃଷ୍ଟାନ୍ତଭାବେ ଗିନିଜ୍ ବୁକ୍ ଅଫ୍ ୱାର୍ଲଡ୍ ରେକର୍ଡ୍ସରେ ନାମ ଦରଜ କଲା ।

ଏହା ଥିଲା ଏକ ସତର୍କ ଘଣ୍ଟିଭଳି ; ପୁଣି ଆମ ଦେଶ ଅପେକ୍ଷା ବିଦେଶରେ ଅଧିକ । ଏହାପରେ ଏକ ସାମ୍ବାଦିକ ସମ୍ମିଳନୀରେ ନେହେରୁଙ୍କୁ କିଛି ବିଦେଶୀ ସାମ୍ବାଦିକ ପଚାରିଥିଲେ, "ଯଦି କେରଳ ଭଳି ସାରା ଭାରତରେ କମ୍ୟୁନିଷ୍ଟମାନେ କ୍ଷମତାକୁ ଆସିବେ, ତେବେ ପରିସ୍ଥିତି କ'ଣ ହେବ ?" ନେହେରୁ ଉତ୍ତର ଦେଇଥିଲେ, "ସେଭଳି ଦୁର୍ଭାଗ୍ୟର ଚଡ଼କ ଯଦି ଆମ ଉପରେ ପଡ଼ିବ, ତେବେ ଆମକୁ ତା ସହିତ ଖାପ ଖୁଆଇ ଚଳିବାକୁ ପଡ଼ିବ ।" ଅନେକ ଏହାପରେ ଏଭଳି କହି ବାହୁନା ଆରମ୍ଭ କରିଦେଇଥିଲେ ଯେ କେରଳ ହେଉଛି ଭାରତର ୟେନାନ୍ ; ୟେନାନ୍ ହେଉଛି ଚୀନ୍‌ର ସେଇ ଅଞ୍ଚଳ ଯେଉଁଠାରୁ କମ୍ୟୁନିଷ୍ଟ ଆନ୍ଦୋଳନ ଆରମ୍ଭ ହୋଇ ସମଗ୍ର ଚୀନ୍ ଭୂଖଣ୍ଡକୁ ବ୍ୟାପି ଯାଇଥିଲା । ଏହି ତୁଳନା ଅବଶ୍ୟ ଥିଲା ଉଦ୍ଭଟ ଯଦିଓ, ତ୍ରିଭାନ୍ଦ୍ରମରେ ଯେଉଁମାନେ ମନ୍ତ୍ରୀ ପଦରେ ଆସୀନ ଥିଲେ ସେମାନଙ୍କ ଅଭୀଷ୍ଟ ଉପରେ ସନ୍ଦେହ ରହୁନଥିଲା ବୋଲି ମନା କରିହେବ ନାହିଁ । ଏହି କାରଣରୁ କେରଳ ସରକାରଙ୍କ ଦ୍ୱାରା ଅଣାଯାଇଥିବା ଦୁଇଟି କାନୁନକୁ ନେଇ ଖୁବ୍ ପାଟିଗୋଳ ହୋଇଥିଲା । ସେଇ କାନୁନଗୁଡ଼ିକ ଭାଗଚାଷୀମାନଙ୍କ ଅଧିକାରର ସୁରକ୍ଷାଦେବା ଏବଂ ସେତେବେଳେ ଯାବତୀୟ ଗଣ୍ଡଗୋଳ ଉପୁଜାଉଥିବା ଘରୋଇ ଶିକ୍ଷାନୁଷ୍ଠାନଗୁଡ଼ିକୁ ନିୟନ୍ତ୍ରଣ କରିବା ଦିଗରେ ଅଭିପ୍ରେତ ଥିଲା । ଏହି କାନୁନ ବା ବିଧେୟ ଲାଗୁହେବା ପରେ ଖ୍ରୀଷ୍ଟିଆନ୍ ଚର୍ଚ୍ଚ, ମୁସ୍‌ଲିମ୍ ଲିଗ୍ ଏବଂ ହିନ୍ଦୁ ନାୟାର ସମାଜ ; ଯେଉଁମାନେ କି ଏଭଳି ଅନେକ ସ୍କୁଲ୍ ପରିଚାଳନା କରୁଥିଲେ, ଉତ୍‌କ୍ଷିପ୍ତ ହୋଇ କମ୍ୟୁନିଷ୍ଟ୍ ସରକାରକୁ ତୁରନ୍ତ ବହିଷ୍କାର କରିବାପାଇଁ ଏକ ଜନଆନ୍ଦୋଳନର ସୂତ୍ରପାତ କଲେ । ତା ଭିତରକୁ ଡେଇଁପଡ଼ିବା ଲାଗି କଂଗ୍ରେସ ମୁହୂର୍ତ୍ତଟିଏ ବି ସମୟ ନଷ୍ଟ କଲାନାହିଁ ।

କଂଗ୍ରେସର ଉଚ୍ଚ କର୍ମକର୍ତ୍ତାମାନଙ୍କ ଭିତରେ ଦଳର ଏଇ ଆଚରଣକୁ ନେଇ ମତାନୈକ୍ୟ ଥିଲା । ନେହେରୁ ଗାଣତନ୍ତ୍ରିକ ଆଦର୍ଶକୁ ପ୍ରାଣପଣେ ଜାବୁଡ଼ି ଧରିବାକୁ ଚାହୁଁଥିଲେ । ତେଣୁ କେନ୍ଦ୍ର ତାର ଅସାଧାରଣ କ୍ଷମତାର ଉପଯୋଗ କରି କୌଣସି ରାଜ୍ୟର ନିର୍ବାଚିତ ସରକାରକୁ ବହିଷ୍କାର କରିବା ପ୍ରକ୍ରିୟାର ଘୋର ବିରୋଧୀ ଥିଲେ । ସେ କେରଳ ମୁଖ୍ୟମନ୍ତ୍ରୀ ଇଏମ୍‌ଏସ୍ ନମ୍ବୁଦିରିପଦଙ୍କୁ ଦିଲ୍ଲୀ ଡ଼କାଇ ତାଙ୍କୁ ଏଭଳି ଆହ୍ୱାନକୁ ଗ୍ରହଣ କରିନେଇ ଏହି ଦୁଇଟି ବିଧେୟର ଗ୍ରହଣୀୟତାକୁ ପ୍ରମାଣ କରିବାକୁ ଜନମତ ଲୋଡ଼ିବାକୁ କହିଲେ । ନମ୍ବୁଦିରିପଦ ମନାକଲେ । ଏହି ଘଟଣା ପରେ ଇନ୍ଦିରା ଏବଂ ତାଙ୍କ ଅନୁଗତ ରକ୍ଷଣଶୀଳ କଂଗ୍ରେସ ସଭ୍ୟମାନେ ନେହେରୁଙ୍କୁ ଏହା କହି ଚେତେଇ ଦେବାକୁ ସୁଯୋଗ ପାଇଲେ ଯେ କେରଳ ମୁଖ୍ୟମନ୍ତ୍ରୀଙ୍କ ସହିତ କଥାବାର୍ତ୍ତା କେବଳ ସମୟ ଅପଚୟ ହିଁ ଥିଲା । ତେଣୁ ସେ ନିଜ ଆଭିମୁଖ୍ୟକୁ ସାମନାରେ ରଖି କେରଳ ସରକାରଙ୍କୁ

ସିଧାସଳଖ ବରଖାସ୍ତ କରିବାକୁ ନେହେରୁଙ୍କ ପାଖରେ ଦାବିକଲେ, ଯଦିଓ ନେହେରୁଙ୍କ ଏ ବାବଦରେ ଘୋର ଅନିଚ୍ଛା ଥିଲା । ଏହାପରେ ଇନ୍ଦିରା ଏକ ମେଣ୍ଟଗଢ଼ି କମ୍ୟୁନିଷ୍ଟ୍ ପାର୍ଟିକୁ ପରବର୍ତ୍ତୀ ନିର୍ବାଚନରେ ହରାଇବାର ସବୁପ୍ରକାର ଯୋଜନା କଲେ ଯଦିଓ ତାଙ୍କର ଏହି ପଦକ୍ଷେପ ପାଇଁ କଂଗ୍ରେସକୁ ଅନେକ ଅପମାନ ଏବଂ ଅସ୍ୱସ୍ତି ସହିବାକୁ ପଡ଼ିଥିଲା । ଅସ୍ୱସ୍ତିର ଗୋଟିଏ କାରଣ ଥିଲା ଏୟା ଯେ ମୁସ୍‌ଲିମ୍ ଲିଗ୍ ଏହି ମେଣ୍ଟରେ ସାମିଲ ହୋଇନଥିଲା ।

୧୯୫୦ରୁ ୧୯୮୪ ମସିହା ମଧ୍ୟରେ ଇନ୍ଦିରା, ବୟସରେ ତାଙ୍କ ଠାରୁ ବାରବର୍ଷ ବଡ଼ ଆମେରିକୀୟ ବନ୍ଧୁ, ଡ଼ରୋଥି ନର୍ମାନ୍‌ଙ୍କ ସହ ନିହାତି ଅନ୍ତରଙ୍ଗ ପତ୍ରାଳାପ ସମ୍ପର୍କରେ ବାନ୍ଧିହୋଇ ପଡ଼ିଥିଲେ । ଇନ୍ଦିରା ତାଙ୍କୁ ଅତି ଗଭୀରଭାବେ ବିଶ୍ୱାସ କରୁଥିଲେ ଏବଂ ତାଙ୍କର ଏକ ଆଦ୍ୟତମ ପତ୍ରରେ ସେ ଲେଖିଥିଲେ, "ମୁଁ ତୁମକୁ ଯାହା କହୁଛି, ତାହା ଅନ୍ୟ କାହାକୁ କହିବାକୁ ମୁଁ ସ୍ୱପ୍ନରେ ସୁଦ୍ଧା ଭାବିପାରିବି ନାହିଁ ।" କେରଳ ସଙ୍କଟ ସମୟରେ ସେ ଡ଼ରୋଥିଙ୍କ ପାଖକୁ ଲେଖିଥିବା ଏକ ଚିଠି, ଫିରୋଜ ଏବଂ ତାଙ୍କ ମଧ୍ୟରେ ଗଢ଼ିଉଠିଥିବା ତିକ୍ତ ତଥା ଜଟିଳ ସମ୍ପର୍କ ଉପରେ ଆଲୋକପାତ କରେ । କାରଣ ସେଇ ଚିଠିରେ ତାଙ୍କୁ ଘେରି ରହିଥିବା ସମସ୍ୟାର ସମୁଦ୍ର ସମ୍ପର୍କରେ ବର୍ଣ୍ଣନା କରିବାପରେ ଇନ୍ଦିରା ଲେଖିଥିଲେ, "ପାରିବାରିକ ପରିସ୍ଥିତି ଉପରେ କହିବାକୁ ଯାଇ କହୁଛି ଯେ ଫିରୋଜ ସବୁବେଳେ ମୋର ଉପସ୍ଥିତିକୁ ହିଁ ଘୃଣା କରିଆସିଛନ୍ତି । ଏବଂ ଏବେ ମୁଁ କଂଗ୍ରେସର ସଭାନେତ୍ରୀ ହୋଇଗଲାପରେ ତାଙ୍କ ଅସୂୟା ଏମିତି ବଢ଼ିଯାଇଛି ଯେ ଲାଗୁଛି ଆମ ଚାରିପଟର ଆବହାଓ୍ୱା କ୍ରମେ ବିଷାକ୍ତ ହୋଇପଡୁଛି । ଦୁର୍ଭାଗ୍ୟବଶତଃ ସେ ଏବଂ ତାଙ୍କର କିଛି ବନ୍ଧୁ ଆମର କିଛି ମନ୍ତ୍ରୀମାନଙ୍କ ପରିଚିତ ଏବଂ ସେଇ କାରଣରୁ ଅସମ୍ଭବ ପରିସ୍ଥିତି ଉପୁଜୁଛି....." । ଏହା ହିଁ ଥିଲା ଇନ୍ଦିରାଙ୍କ ଫିରୋଜଙ୍କ ପ୍ରତି କ୍ରୋଧର କାରଣ । ତାଙ୍କ ପିତା ମଧ୍ୟ କେରଳ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣକରିବା ସପକ୍ଷରେ ନଥିଲେ । କିନ୍ତୁ, ଦୁହେଁ ସେମାନଙ୍କ ମତାନୈକ୍ୟକୁ ନିଭୃତରେ ଏବଂ ବ୍ୟକ୍ତିଗତ ସ୍ତରରେ କଥାବାର୍ତ୍ତା କରିଆରେ ସମାଧାନ କରିବାକୁ ଚେଷ୍ଟା କରୁଥିଲେ । କିନ୍ତୁ, କେରଳ ଆଭିମୁଖ୍ୟକୁ ନେଇ ଇନ୍ଦିରା ଏବଂ ଫିରୋଜଙ୍କ ଭିତରେ କଳହ ରାସ୍ତାକୁ ଓହ୍ଲାଇସାରିଥିଲା । ଫିରୋଜ, କାଳିସି ଲାଗିଲା ପରି, ଏକ ମନହୋଇ କଂଗ୍ରେସ ମନ୍ତ୍ରୀ ଏବଂ ସାଂସଦମାନଙ୍କ ମଧ୍ୟରେ "ଇବି" କରୁଥିଲେ ।

କିନ୍ତୁ, କେରଳର ବିସ୍ଫୋରକ ପରିସ୍ଥିତିର ତେରମାସ ପରେ ଫିରୋଜଙ୍କ ବିୟୋଗ ହେଲା ଏବଂ ସମଗ୍ର ଜୀବନକାଳ ଭିତରେ ସେ ଯାହା କରିବାକୁ ସମର୍ଥ ହୋଇନଥିଲେ, ମୃତ୍ୟୁପରେ ସେ ତାହା ହାସଲ କଲେ । ସେ ପରିଶେଷରେ ଇନ୍ଦିରାଙ୍କ ପ୍ରିୟଭାଜନ ହେଲେ, ଯାହାଙ୍କ ବିୟୋଗକୁ ଇନ୍ଦିରା "ଏକ ହୃଦୟ ବିଦାରକ ଦୁଃଖ"ଭାବେ ବର୍ଣ୍ଣନା କଲେ । ଏକାଧିକ ବାର ଡ଼ରୋଥିଙ୍କୁ ଲେଖିଥିବା ଚିଠିରେ ସେ ଫିରୋଜଙ୍କ ଅନ୍ତେ ଭୋଗିଥିବା ବିଷାଦ କଥା କହିଥିଲେ ଏବଂ ସବୁ ସତ୍ତ୍ୱେ ବି ତାଙ୍କର କଷ୍ଟପ୍ରଦ ସମୟରେ ଫିରୋଜ ସବୁବେଳେ ତାଙ୍କ ସହିତ ରହିଥିବା କଥା ହୃଦୟଙ୍ଗମ କରିପାରିଛନ୍ତି ବୋଲି ସ୍ୱୀକାର କରିଥିଲେ । ଏହାର କୋଡ଼ିଏ

ବର୍ଷପରେ, ନିଜର ଦ୍ୱିତୀୟ ପୁତ୍ରର ଆକସ୍ମିକ ମୃତ୍ୟୁର ଗୋଟିଏ ବର୍ଷ ପୂର୍ବରୁ ସେ ଲେଖକ ଡ଼ୋମ୍ ମୋରାସ୍‌ଙ୍କୁ କହିଥିଲେ, "ମୋ ଜୀବନର ସବୁଠାରୁ ଦୁଃଖପୂର୍ଣ୍ଣ ମୃତ୍ୟୁ ହେଉଛି ମୋ ସ୍ୱାମୀଙ୍କ ମୃତ୍ୟୁ ।" ଯେଉଁମାନେ ଇନ୍ଦିରାଙ୍କୁ ଜାଣିଥିଲେ ସେମାନେ ଏୟା ମଧ୍ୟ ଜାଣିଥିଲେ ଯେ ଦୁଇପୁଅଙ୍କ ପ୍ରତି ଫିରୋଜଙ୍କ ସ୍ନେହାସକ୍ତି ସମ୍ପର୍କରେ ଇନ୍ଦିରା ସଚେତନ ଥିଲେ ଏବଂ ଏବେ ଫିରୋଜଙ୍କ ମୃତ୍ୟୁପରେ ତାଙ୍କ ଦୁଇପୁଅ ବାପାଙ୍କୁ ଝୁରୁଥିଲେ ।

ଏହାଛଡ଼ା, ଇନ୍ଦିରାଙ୍କ ସହ ତାଙ୍କ ବାପାଙ୍କ ସମ୍ପର୍କରେ ମଧ୍ୟ କିଛିଟା ଜଟିଳତା ରହିଥିଲା । ଅବଶ୍ୟ, ସେମାନେ ଦୁହେଁ ପରସ୍ପରକୁ ଗଭୀର ଭାବେ ଭଲ ପାଉଥିଲେ । କିନ୍ତୁ ଅନେକ ସମୟରେ, ବିଶେଷତଃ ଯେତେବେଳେ ଇନ୍ଦିରା ଭାବୁଥିଲେ ଯେ ନେହେରୁ ଭୁଲ୍ କାମ କରୁଛନ୍ତି ଅଥବା ଅନ୍ୟମାନଙ୍କୁ ତାଙ୍କଠାରୁ ଫାଇଦା ନେବାପାଇଁ ଅନୁମତି ଦେଉଛନ୍ତି, ସେତିକିବେଳେ ଦୁହିଁଙ୍କ ଭିତରେ ଘମାଘୋଟ ଯୁକ୍ତି ଲାଗୁଥିଲା । ଏହା ପ୍ରକାଶ୍ୟକୁ ଆସିଲା ୧୯୯୦ରେ, ଯେତେବେଳେ ବଡ଼ବୋହୂ ସୋନିଆ ଗାନ୍ଧି ବାପା ଏବଂ ଝିଅଙ୍କ ଭିତରେ ବିନିମୟ ହୋଇଥିବା ଅସଂଖ୍ୟ ଚିଠିକୁ ଦୁଇଭାଗ ବିଶିଷ୍ଟ ପୁସ୍ତକ (ଫ୍ରିଡ଼ମ୍‌ସ୍ ଡ଼ଟର୍ ଏଣ୍ଡ୍ ଟୁ ଏଲୋନ୍ ଏଣ୍ଡ୍ ଟୁ ଟୁଗେଦର୍, ହୋଡ଼ର୍ ଏଣ୍ଡ୍ ଷ୍ଟୋଗ୍‌ଟନ୍, ୧୯୯୦)ଆକାରରେ ପ୍ରକାଶ କଲେ । ଏହା ସର୍ବଜନବିଦିତ ଯେ ଇନ୍ଦିରା ଥିଲେ ଜଣେ କ୍ଳାନ୍ତିହୀନ ପତ୍ର ଲେଖିକା । ପ୍ରଧାନମନ୍ତ୍ରୀ ହେଲାପରେ, ସମୟର ଘୋର ଅଭାବ ସତ୍ତ୍ୱେ, ସେ ବ୍ୟକ୍ତିଗତ ଭାବେ ଅନେକ ପତ୍ର ଲେଖୁଥିଲେ, ଅନେକ ସମୟରେ ସମ୍ପୂର୍ଣ୍ଣଭାବେ ଅପରିଚିତମାନଙ୍କୁ ମଧ୍ୟ । ଏହାଛଡ଼ା ପ୍ରତି ଚିଠିରେ ସେ ନିଜେ ହିଁ ଦସ୍ତଖତ ଦେଉଥିଲେ ଏବଂ ଆମେରିକାର ରାଷ୍ଟ୍ରପତିଙ୍କ ପରି ଛପା ଦସ୍ତଖତ ବ୍ୟବହାର କରିବାକୁ ତାଙ୍କ ଅଫିସ୍ କର୍ମଚାରୀମାନେ ଦେଇଥିବା ପରାମର୍ଶକୁ ମଧ୍ୟ ଅଗ୍ରାହ୍ୟ କରିଦେଇଥିଲେ । ବହୁତ ଦିନପରେ ଏହା ଅବଶ୍ୟ ଜଣାପଡ଼ିଲା ଯେ କେବଳ ନେହେରୁ ଦୂରରେ ଥିଲାବେଳେ ଯେ ଇନ୍ଦିରା ତାଙ୍କ ପାଖକୁ ଚିଠି ଲେଖୁଥିଲେ ତାହା ନୁହେଁ, ଦୁହେଁ ଗୋଟିଏ ଜାଗାରେ ଗୋଟିଏ ଛାତତଳେ ଥିଲାବେଳେବି ଇନ୍ଦିରା ନେହେରୁଙ୍କ ପାଖକୁ ଚିଠି ଲେଖୁଥିଲେ । ଯେତେବେଳେ ସେ ବାପାଙ୍କ ସହ ମୁହାଁମୁହିଁ ଏକ ତର୍କରେ ପଶିବାକୁ ଚାହୁଁନଥିଲେ ସେତେବେଳେ ସେ ମୁଖ୍ୟତଃ ଚିଠିର ସାହାରା ନେଉଥିଲେ ।

ଉଦାହରଣସ୍ୱରୂପ, ୧୯୫୮ ମସିହା ମେ ମାସରେ ଯେତେବେଳେ ନେହେରୁ ଇସ୍ତଫା ଦେବାକୁ ଚାହୁଁଥିଲେ ଏବଂ ତାଙ୍କ ଦଳ ତାଙ୍କୁ ସେଥିରୁ ବାରଣ କରୁଥିଲା ସେତିକିବେଳେ ନେହରୁଙ୍କ ଟେବୁଲ୍ ଉପରେ ସେ ଏକ ଚିଠି ରଖିଦେଇଥିଲେ ଏବଂ ସେଥିରେ ସେ ଘୋଷଣା କରିଥିଲେ, "ମୁଁ ଆପଣଙ୍କୁ ଉପଦେଶ ଦେବା ସମୀଚୀନ ନୁହେଁ ; ଏବଂ ତା ପରେ ଟିକିଏ ଆଗକୁ ଯାଇ ତାଙ୍କୁ ରୋକଠୋକଭାବେ ପଚାରିଥିଲେ, "ଥରେ ପ୍ରଧାନମନ୍ତ୍ରୀ ପଦ ଛାଡ଼ିଦେବି ବୋଲି ଇସାରା ଦେଇ ପୂର୍ବବତ ସେଇ ପଦବୀରେ ରହିବା କ'ଣ ବୁଦ୍ଧିମାନର କାମ ?" କେରଳର କମ୍ୟୁନିଷ୍ଟ ମନ୍ତ୍ରୀମଣ୍ଡଳକୁ ବରଖାସ୍ତ କରିବାର ଯୌକ୍ତିକତାକୁ ନେଇ ବାପା ଏବଂ

ଝିଅଙ୍କ ଭିତରେ ଯେଉଁ ତୀବ୍ର ମତାନୈକ୍ୟ ଦେଖା ଦେଇଥିଲା ସେଇ ଜନିତ ତୀକ୍ଷ୍ଣ ସ୍ୱର ସେ ସମୟର ଚିଠିରେ ଶୁଣିବାକୁ ମିଳୁଥିଲା । ସେ ଲେଖିଥିଲେ : ଏହି ଆନ୍ଦୋଳନ (କମ୍ୟୁନିଷ୍ଟମାନଙ୍କ ବିରୋଧରେ)କୁ ସାଂପ୍ରଦାୟିକ ବୋଲି ଆଖ୍ୟା ଦେବାର କୌଣସି କାରଣ ନାହିଁ । ହଁ, ଏହା ସାଂପ୍ରଦାୟିକ, ଯେମିତି କେରଳର ସବୁ କିଛି ସାଂପ୍ରଦାୟିକ, ଏପରି କି କମ୍ୟୁନିଷ୍ଟମାନେ ମଧ୍ୟ ।

କୌତୂହଳପ୍ରଦଭାବେ ଉଷା ଭଗତ, ଯେ କି ଇନ୍ଦିରା ଗାନ୍ଧିଙ୍କ ପାଇଁ ୧୯୫୩ ମସିହାରୁ ଏକତିରିଶ ବର୍ଷ ପାଇଁ କାମ କରିଥିଲେ, ଅବଶ୍ୟ ଇନ୍ଦିରାଙ୍କ "ମିଜାସ" ଯୋଗୁଁ ମଝିରେ ମଝିରେ ସେଥିରେ ବାଧା ପଡ଼ିଥିଲା - ମନେପକାନ୍ତି ଯେ ଅନ୍ତତଃ ଗୋଟିଏ ଥର ସେ ଏବଂ ତାଙ୍କ ଅନ୍ୟାନ୍ୟ କର୍ମଚାରୀମାନେ ଇନ୍ଦିରା, ତାଙ୍କ ବାପାଙ୍କୁ ବିରକ୍ତ ହେଉଥିବାର ଶୁଣିଥିଲେ । ଏଥିରେ ନେହେରୁ ରାଗିବା ତ ଦୂରେଥାଉ, ଏ ଘଟନା ପରେ ସେ, ପ୍ରଧାନମନ୍ତ୍ରୀ ନିବାସରେ ସେତେବେଳେ ରହିଥିବା ପଶ୍ଚିମବଙ୍ଗର ରାଜ୍ୟପାଳ ପଦ୍ମଜା ନାଇଡୁଙ୍କୁ ଭେଟିବାକୁ ହସି ହସି ବାହାରିଯାଇଥିଲେ ଏବଂ କ'ଣ ସବୁ ଘଟିଲା, ସେ ସମ୍ପର୍କରେ ତାଙ୍କୁ ବେଶ୍ ଆମୋଦିତଭାବେ ସବୁ କିଛି ବୟାନ କରିଥିଲେ । ଭଗତ କିନ୍ତୁ ତାଙ୍କ ପୁସ୍ତକ ଇନ୍ଦିରାଜୀ (ପେଙ୍ଗୁଇନ୍ ଦ୍ୱାରା ୨୦୦୫ରେ ପ୍ରକାଶିତ)ରେ ସେଇ ବିରକ୍ତି ପଛରେ ଥିବା କାରଣକୁ ପ୍ରକାଶ କରିନାହାନ୍ତି ।

## ଉଚ୍ଚ ହିମାଳୟରେ ଯୁଦ୍ଧ

ଯେତେବେଳେ ଇନ୍ଦିରା କେରଳରେ ତାଙ୍କ ସଂଘର୍ଷରେ ଜିତୁଥାନ୍ତି, ସେତେବେଳେ ଆମ ଦେଶର ଅନ୍ୟ ସୀମାନ୍ତରେ ଆଉ ଏକ ବିରାଟ ସଂଘର୍ଷର ମଞ୍ଜି ହିମାଳୟର ବିମର୍ଷକର ଉଚ୍ଚତାରେ ବୁଣା ଚାଲିଥାଏ । ଏସିଆର ଦୁଇ ବିଶାଳ ଦେଶ ଭିତରେ ସମ୍ପର୍କର ସୁବର୍ଣ୍ଣ ଅଧ୍ୟାୟରେ, ହିନ୍ଦି ଚୀନି ଭାଇ ଭାଇ (ଭାରତ ଏବଂ ଚୀନ ଦୁଇଭାଇ) ସମୟରେ, ମଧ୍ୟ ଏକ ଅସ୍ୱସ୍ତିକର ଭାବର ଅନ୍ତଃସ୍ରୋତଟିଏ ବହୁଥିଲା । ପରେ କିନ୍ତୁ ଅନେକଗୁଡ଼ିଏ କାରଣ ଯୋଗୁଁ ଦୁଇ ଦେଶ ଭିତରେ ସମ୍ପର୍କରେ ଦ୍ରୁତ ଅବନତି ଦେଖାଦେଲା । ୧୯୫୯ ମସିହାରେ ତିବ୍ବତରେ ଦେଖାଦେଇଥିବା ବିଦ୍ରୋହ ଏବଂ ପଳାତକ ଦଲାଇ ଲାମାଙ୍କୁ ସଙ୍ଗେସଙ୍ଗେ ଭାରତ ଦେଇଥିବା ଆଶ୍ରୟ ଏହି କାରଣ ଭିତରୁ ଅନ୍ୟତମ । ଏହାଠାରୁ ଆହୁରି ଅଧିକ ଗୁରୁତ୍ୱପୂର୍ଣ୍ଣ କାରଣ ଥିଲା ଚୀନ ଏବଂ ସୋଭିଏତ୍ ୟୁନିଅନ୍ ଭିତରେ ବିଦ୍ୱେଷ ଏବଂ ପରବର୍ତ୍ତୀ ପର୍ଯ୍ୟାୟରେ ସୋଭିଏତ୍ ୟୁନିଅନ୍‌ର ଭାରତକୁ ସମର୍ଥନ କରିବାର ଆଭିମୁଖ୍ୟ । ହେଲେ, ଚୀନ୍ ପ୍ରଥମେ ଏହି ସମସ୍ୟାକୁ ନଉଠାଇ ଭାରତ ସୀମା ଅନ୍ତର୍ଗତ ଏକ ବିରାଟ ଅଞ୍ଚଳକୁ ନିଜର ବୋଲି କହି ଦାବି କଲା ଏବଂ ଏହା ହିଁ ଥିଲା ଚୀନ୍‌ର ତତ୍କାଳୀନ ନେତା ମାଓସେତୁଂଙ୍କ ପାଇଁ ଭାରତ ଆକ୍ରମଣ କରିବାର ମୁଖ୍ୟ କାରଣ, ଯାହାକୁ ହାର୍ଭାର୍ଡ୍ ପ୍ରଫେସର୍ ତଥା ଚୀନ୍ ବିଶାରଦ ରଡ୍ରିକ୍ ମାକ୍‌ଫାର୍‌କାର ଖୁବ୍ ଯଥାର୍ଥଭାବେ କହିଥିଲେ, "ମାଓଙ୍କ ଭାରତ ଯୁଦ୍ଧ" ।

ହିମାଳୟର ଉଚ୍ଚତାରେ ଏହି କ୍ରୂର ସୀମାନ୍ତ ଯୁଦ୍ଧ ଚାଲିଥିଲା ଜମାରୁ ଗୋଟିଏ ମାସ ।

ପଛକୁ ଚାହିଁ ବିଚାରକଲେ ଏହାକୁ ଏକ ଛୋଟିଆ ବା କମ୍ ଗୁରୁତ୍ୱପୂର୍ଣ୍ଣ ଲଢ଼େଇ କହିଲେ ଭୁଲ୍ ହେବନାହିଁ, କାରଣ ଏଇ ଯୁଦ୍ଧରେ ଦୁଇ ପକ୍ଷର ଅତି କମ୍ ସଂଖ୍ୟକ ସୈନିକ ଭାଗ ନେଇଥିଲେ । କିନ୍ତୁ, ସେତେବେଳେ ଏଇ ଯୁଦ୍ଧରେ ଭାରତର ପରାଜୟକୁ ଭାରତ ପାଇଁ ନିହାତି ଅପମାନଜନକ ସାମରିକ ତଥା ରାଜନୈତିକ ପରାଜୟ ବୋଲି କୁହାଗଲା । ଚୀନର ବିଶ୍ୱାସଘାତକ ଆଚରଣ ଭାରତ ପାଇଁ ଥିଲା ଅପ୍ରତ୍ୟାଶିତ । ନେହେରୁ ଭାବିଥିଲେ ଛୋଟଛୋଟ ଝଗଡ଼ା ବା ସୀମାନ୍ତରେ ପହରା ଦେଲାବେଳକୁ ଛୋଟକାଟିଆ ଗୁଳି ବିନିମୟ ଛଡ଼ା ଚୀନ୍ ଆଉ ବେଶି କିଛି କରିବନାହିଁ । ତାଙ୍କର ସାମରିକ ତଥା ସାଧାରଣ ଉପଦେଷ୍ଟାମାନେ ମଧ୍ୟ ଏଥିରେ ଏକମତ ଥିଲେ । ଫଳରେ ଘଟନାକ୍ରମରେ ଯେତେବେଳେ ଭାରତୀୟସେନା ତରବରିଆଭାବେ ନିହାତି ପ୍ରତିକୂଳ ଉଚ୍ଚତାକୁ ଦୌଡ଼ିଲେ, ସେତେବେଳକୁ ପାହାଡ଼ ତଳକୁ ଗଡୁଥିବା ସୁସଜ୍ଜିତ, ସୁପ୍ରଶିକ୍ଷିତ ଏବଂ ସେଇ ସ୍ଥାନ ଏବଂ ବାତାବରଣ ସହ ପରିଚିତ ଚୀନା ସୈନ୍ୟଙ୍କ ଲହଡ଼ିର ମୁକାବିଲା କରିବାପାଇଁ ସେମାନେ ସମର୍ଥ ନଥିଲେ । ସୁତରାଂ ପଛକୁ ଫେରି ପଳାୟନ କରିବାବେଳେ ସେମାନେ ଶୋଚନୀୟଭାବେ ମୂଳୋତ୍ପାଟିତ ହେଲେ । ଗୋଟିଏ ରାତି ଭିତରେ ସମଗ୍ର ଦେଶର ଦମ୍ଭ ଭାଙ୍ଗିଗଲା । ନେହେରୁଙ୍କ ଜୀବନୀ ଲେଖକ ଏସ୍ ଗୋପାଲ୍‌ଙ୍କ ବକ୍ତବ୍ୟ ଅନୁସାରେ "ସେତେବେଳେ ପରିସ୍ଥିତି ଏପରି ଖରାପ ଥିଲା, ଘଟନାଟି ଯଦି ସତରେ ଘଟିନଥାନ୍ତା, ତେବେ ଏହାକୁ କେହି ବିଶ୍ୱାସ କରିନଥାନ୍ତେ ।" ରାଷ୍ଟ୍ରପତି ଏସ୍ ରାଧାକୃଷ୍ଣନ୍ ଏଥିପାଇଁ ସରକାରଙ୍କ "ଅବହେଳା ଏବଂ ନିର୍ବୋଧତା"କୁ ଦାୟୀ କଲେ । ନେହେରୁ ମଧ୍ୟ ସ୍ୱୀକାର କଲେ, "ସତରେ ଆମେ ନିଜ ଦ୍ୱାରା ତିଆରି ଏକ ସ୍ୱପ୍ନର ପୃଥିବୀରେ ବାସ କରୁଛୁ ।" ଏତିକିବେଳକୁ କିନ୍ତୁ ଚୀନାମାନେ ନିଜର ସୁଚିନ୍ତିତ ଯୋଜନା ଅନୁସାରେ ଏକତରଫା ଯୁଦ୍ଧବିରତି ଘୋଷଣାକରି ସେମାନେ ଦାବୀ କରୁଥିବା ବିବାଦୀୟ ସୀମାରେଖାର ଉତ୍ତର ଦିଗଆଡ଼କୁ ହଟିବାକୁ ଲାଗିଲେ ।

ଗଭୀରଭାବେ ବିମର୍ଷକର ଏହି ପରିବେଶରେ ଇନ୍ଦିରା ତାଙ୍କ ଦୃଢ଼ ଦାୟିତ୍ୱକତା ଏବଂ ବିଚକ୍ଷଣ ନେତୃତ୍ୱର ପରାକାଷ୍ଠା ଦେଖାଇଥିଲେ, ଯାହାକୁ ସେ ସମୟରେ କେହି ଏତେ ଗୁରୁତ୍ୱ ଦେଇନଥିଲେ । ବାପାଙ୍କ ଅନୁମତିକୁ ଅପେକ୍ଷା ନକରି ସେ ସଙ୍ଗେ ସଙ୍ଗେ ଉତ୍ତର - ପୂର୍ବରେ ଅବସ୍ଥିତ ତେଜପୁରରେ ପହଞ୍ଚି ସେଠାକାର ତ୍ରସ୍ତ ଜନସାଧାରଣ ତଥା ଆହତ ସେନ୍ୟମାନଙ୍କୁ ସାନ୍ତ୍ୱନା ଏବଂ ସମର୍ଥନ ଜଣାଇଥିଲେ ଏବଂ ସେ ଅଞ୍ଚଳ ପାଇଁ ରିଲିଫ୍‌ର ବ୍ୟବସ୍ଥା କରିଥିଲେ । ଏପରି ସମୟରେ ଥରେ ସେ ଗୋଟିଏ ରେଡ଼ିଓ ପ୍ରୋଗ୍ରାମ୍‌ରେ ଭାଗ ନେବାପାଇଁ ମାତ୍ର ଆଠଘଣ୍ଟା ପାଇଁ ସେଠାରୁ ଦିଲ୍ଲୀ ଉଡ଼ିଆସିଥିଲେ ଏବଂ କାର୍ଯ୍ୟକ୍ରମ ସରିବାପରେ ପୁଣି ସେଠାକୁ ଫେରିଯାଇଥିଲେ । ଯୁଦ୍ଧୋତ୍ତର ପରିସ୍ଥିତିରେ ସରକାରଙ୍କୁ ସାହାଯ୍ୟ କରିବାପାଇଁ ଯେଉଁ ନାଗରିକ ପରିଷଦ ଗଢ଼ାଯାଇଥିଲା, ଇନ୍ଦିରା ତାର ଉପ - ସଭାନେତ୍ରୀ ହୋଇଥିଲେ ।

ଚୀନ ସହିତ ଏହି ସୀମାନ୍ତ ଯୁଦ୍ଧ ଯେ ଭାରତର ସମ୍ମାନକୁ ଧୂଳିସାତ କରିଦେଲା ତାହା ନୁହେଁ, ନେହେରୁଙ୍କ ସ୍ୱାସ୍ଥ୍ୟକୁ ମଧ୍ୟ ଏହା ଗଭୀରଭାବେ ଆକ୍ରାନ୍ତ କଲା । ନେହେରୁ ବାସ୍ତବିକଭାବେ

ଏହି ଦାରୁଣ ଧକ୍‌କାରୁ କେବେ ବି ମୁକ୍ତ ହୋଇପାରି ନଥିଲେ, ୧୯୬୩ରେ ତାଙ୍କ ଦଳ ତିନିଟି ଗୁରୁତ୍ୱପୂର୍ଣ୍ଣ ସଂସଦୀୟ ଉପନିର୍ବାଚନରେ ପରାଜିତ ହେଲାପରେ ଯେତେବେଳେ ତାଙ୍କର କିଛି ସହକର୍ମୀ ତାଙ୍କ ଇସ୍ତଫା ଦାବିକରିବା ଆରମ୍ଭ କରିଥିଲେ - ସେ ସମାଲୋଚକମାନଙ୍କୁ ଏଭଳି ତୀବ୍ର ଜବାବ ଦେଇଥିଲେ ଯେ ସେମାନଙ୍କ ମଧ୍ୟରୁ ଜଣେ ପ୍ରତିକ୍ରିୟା ସ୍ୱରୂପ କହିଥିଲେ, ଲାଗୁଛି (ଯୁଦ୍ଧରେ) ପରାଜୟ ହେବା ଘଟନା ତାଙ୍କ ମୁଣ୍ଡକୁ ଚଢ଼ିଯାଇଛି । ସେ ଯାହାହେଲେ ବି ଏହା ମାନିବାକୁ ହେବ ଯେ ୧୯୬୨ର ଯୁଦ୍ଧ ପରଠାରୁ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଦୁଇ ବର୍ଷ ଥିଲା ତାଙ୍କ ଜୀବନର ଏକ ଦାରୁଣ ସୂର୍ଯ୍ୟାସ୍ତର ସମୟ ।

୧୯୬୪ରେ ଓଡ଼ିଶାର ଭୁବନେଶ୍ୱରଠାରେ କଂଗ୍ରେସର ବାର୍ଷିକ ଅଧିବେଶନରେ ଯୋଗ ଦେଉଥିବାବେଳେ ନେହେରୁଙ୍କ ଏକ ହୃଦ୍‌ଘାତ ହୋଇଗଲା । ସେଠାରୁ ସେ ଏକ ହ୍ୱିଲ୍ ଚେୟାରରେ ବସି ଦିଲ୍ଲୀକୁ ଫେରିଲେ ସିନା, ହେଲେ ସରକାରର ନେତୃତ୍ୱ ଛାଡ଼ି ନଥିଲେ । ଏବେକାର ପରିସ୍ଥିତିରେ ଦାୟିତ୍ୱ ତୁଲାଇବା ପାଇଁ ସେ ଦରକାର କରୁଥିଲେ ଅଧିକ ସାହାଯ୍ୟ, ଯାହା ଇନ୍ଦିରା ଓ ମୁଷ୍ଟିମେୟ ମନ୍ତ୍ରୀ ତାଙ୍କୁ ଯୋଗାଇଲେ । ଏଇ ସମୟରୁ ଇନ୍ଦିରାଙ୍କ ପ୍ରଭାବର ବିସ୍ତାରର ଧାରଣା କରିହେଉଥିଲା ।

ନେହେରୁଙ୍କ ଶେଷଦିନ ପହଞ୍ଚିଲା ମେ ୨୭, ୧୯୬୪ରେ । ଏହା ଥିଲା ଏକ ଗରମ ଏବଂ ଧୂଳିଭରା ଦିନ । ଏହା ମଧ୍ୟ ଥିଲା ଗୌତମ ବୁଦ୍ଧଙ୍କ ଜନ୍ମ, ବୁଦ୍ଧତ୍ୱ ପ୍ରାପ୍ତି ଏବଂ ମହାନିର୍ବାଣର ୨,୫୦୮ତମ ସମ୍ୱତ୍ସର ଏବଂ ଜଣେ ଆଜୀବନ ବୁଦ୍ଧ ଭକ୍ତଙ୍କ ମହାପ୍ରସ୍ଥାନ ପାଇଁ ଏକ ଉପଯୁକ୍ତ ଦିନ । କେବଳ ଇନ୍ଦିରା ପିତୃହରା ହୋଇନଥିଲେ, ସେଇ ମୁହୂର୍ତ୍ତରେ ଷାଠିଏ କୋଟି ଭାରତୀୟ ନିଜକୁ ପିତୃହରା ବୋଲି ମନେକରିଥିଲେ । ଯଦିଓ ଏହି ଦାରୁଣ ଆଘାତ ଦ୍ୱାରା ଇନ୍ଦିରା ସମ୍ପୂର୍ଣ୍ଣଭାବେ ବିଧ୍ୱସ୍ତ ହୋଇଯାଇଥିଲେ, ତଥାପି ସେ ନିଜ ଭାବାବେଗକୁ ନିୟନ୍ତ୍ରଣରେ ରଖି ଶୁଷ୍କ ଚକ୍ଷୁରେ ନିଜ କାମ ସଂପାଦନ କରୁଥିଲେ । ନେହେରୁଙ୍କ ଶେଷଦର୍ଶନ ପାଇଁ ସାରା ବିଶ୍ୱର ବିଭିନ୍ନ ମହାନ ଜନନାୟକ ଏବଂ ରାଷ୍ଟ୍ରନେତାମାନେ ଭାରତକୁ ଛୁଟୁଥିବାରୁ ତାଙ୍କ ଶେଷକୃତ୍ୟକୁ ଗୋଟିଏ ଦିନ ଘୁଞ୍ଚାଇ ଦିଆଯାଇଥିଲା । ଏହି ସମସ୍ତ ସମୟ ଇନ୍ଦିରା ହିଁ ବାପାଙ୍କ ଶରୀର ପାଖରେ ରହିଥିଲେ । ଶେଷକୃତ୍ୟ ହେବା ଦିନ ସକାଳେ ସେ ବିନା ଖିଅର ହୋଇ ଏବଂ ନ ଗାଧୋଇ ବସି ରହିଥିବା ନେହେରୁଙ୍କ ବ୍ୟକ୍ତିଗତ ପରିଚାରକ ଏବଂ ସହକର୍ମୀମାନଙ୍କୁ ଘରକୁ ଯାଇ ଭଲ ଖିଅରବାର ହୋଇ ସଫା ପୋଷାକ ପିନ୍ଧି ଆସିବାକୁ କହିଥିଲେ । "ମୋ ବାପା", ସେ ମୃଦୁଭାବେ କହିଥିଲେ, "ସବୁବେଳେ ପରିଷ୍କାର ପରିଚ୍ଛନ୍ନତାକୁ ଭଲ ପାଉଥିଲେ, ଏଣୁ ଆଜି ତାଙ୍କ ଚତୁଃପାର୍ଶ୍ୱରେ ଅପରିଚ୍ଛନ୍ନତା ରହିବନାହିଁ ।"

── ୩ ──



# ଶାସ୍ତ୍ରୀ ମଧ୍ୟାନ୍ତର

ନେହେରୁ ଇତିହାସକୁ ଚାଲିଯିବାର ଅନେକ ପୂର୍ବରୁ, ଭାରତ ଏପରିକି ଭାରତ ବାହାରେ ପୃଥିବୀର ସମସ୍ତେ ଗୋଟିଏ ପ୍ରଶ୍ନ ଦ୍ୱାରା ଆନ୍ଦୋଳିତ ହେଉଥିଲେ, "ନେହେରୁଙ୍କ ପରେ କିଏ ?" କେତେକ ଏହାକୁ ପରିବର୍ତ୍ତନ କରି ପଚାରୁଥିଲେ" ନେହେରୁଙ୍କ ପରେ କ'ଣ ? "କାରଣ, ସେମାନେ ଭାବୁଥିଲେ ଯେ ନେହେରୁଙ୍କ ପରେ ବୋଧହୁଏ ଭାରତ ଗୋଟିଏ ରାଷ୍ଟ୍ରଭାବେ ତିଷ୍ଠି ରହିପାରିବ ନାହିଁ । ସେ ଯାହାହେଉ, ନେହେରୁଙ୍କ ମୃତ୍ୟୁ ପରେ ସେଭଳି ପ୍ରଶ୍ନ ଅନାବଶ୍ୟକ ହୋଇପଡ଼ିଲା । କାରଣ, ଯେପରି ଆଗରୁ କୁହାଯାଇଛି ଉତ୍ତରାଧିକାରର ସମସ୍ୟା ସେତେବେଳକୁ ସମାହିତ ହୋଇସାରିଥିଲା । ସମସ୍ତେ ଜାଣିସାରିଥିଲେ ଯେ ଏହି ଗୁରୁ ଭାର ଅଠାବନ ବର୍ଷ ବୟସ୍କ ଖର୍ବକାୟ, ବେଶ୍ ଗଭୀରଭାବେ ସମ୍ମାନାସ୍ପଦ ଏବଂ ନିଜ ହାତରେ ନିଜକୁ ଗଢ଼ିଥିବା ଲାଲ ବାହାଦୁର ଶାସ୍ତ୍ରୀଙ୍କ କାନ୍ଧରେ ପଡ଼ିବ । ତାଙ୍କ ପଛରେ ଥିଲା ମନ୍ତ୍ରିତ୍ୱ ଏବଂ କଂଗ୍ରେସ ସଦସ୍ୟତାର ଏକ ଦୀର୍ଘ ଅନୁଭବ । ତାଙ୍କର ସବୁଠାରୁ ବଡ଼ ଗୁଣ ଥିଲା ଯେ ଆପୋଷ ମିଳାମିଶା କରାଇବାରେ ସେ ଥିଲେ ସିଦ୍ଧହସ୍ତ । ଏହି ଉଚ୍ଚତମ ପଦବୀ ପାଇଁ ସେ ଏବଂ ତାଙ୍କର ଅନ୍ୟ ଶକ୍ତିଶାଳୀ ଦାବିଦାର ମୋରାରଜୀ ଦେଶାଇଙ୍କ ଭିତରେ ବିସଙ୍ଗତି ଥିଲା ପ୍ରଚୁର ।

ସେତେବେଳେ ସତୁରି ବର୍ଷ ବୟସ୍କ ଦେଶାଇ, ଯିଏ କି ଅନେଶତ ବର୍ଷ ବଞ୍ଚିଥିଲେ, ଥିଲେ ଜଣେ ବରିଷ୍ଠ ପାର୍ଟି ନେତା ଏବଂ ବିଚକ୍ଷଣ ପ୍ରଶାସକ । ପ୍ରଧାନମନ୍ତ୍ରୀ ହେବାପାଇଁ ତାଙ୍କ ଯୋଗ୍ୟତା ନେଇ କୌଣସି ଦ୍ୱିରୁକ୍ତି ନଥିଲା । ଏପରିକି ନେହେରୁଙ୍କ ମୃତ୍ୟୁର ଦୁଇ ବର୍ଷ ପୂର୍ବରୁ ଦେଶାଇଙ୍କୁ ନେହେରୁଙ୍କ "ସ୍ୱାଭାବିକ ଉତ୍ତରାଧିକାରୀ"ଭାବେ ବିବେଚନା କରାଯାଉଥିଲା । ଏହାକୁ ଅନ୍ୟମାନଙ୍କ ଅପେକ୍ଷା ଦେଶାଇ ନିଜେ ସବୁଠାରୁ ଅଧିକ ବିଶ୍ୱାସ କରୁଥିଲେ । କିନ୍ତୁ, ଧୀରେ ଧୀରେ ତାଙ୍କ ବିରୋଧରେ ମତ ତିଆରି ହେବାରେ ଲାଗିଥିଲା । ତାର କାରଣ ଥିଲା ତାଙ୍କର ଅନମନୀୟତା, ଅସହିଷ୍ଣୁତା ଏବଂ ଅନ୍ୟାନ୍ୟ କିଛି ସେହିଭଳି ଗୁଣ । ମଦକୁ ବନ୍ଦ କରିବାପାଇଁ ତାଙ୍କର ଅନ୍ଧ ଆଗ୍ରହ ପାଇଁ ତାଙ୍କୁ "ଟିଟୋଟାଲିଟାରିଆନ୍" ବୋଲି ଡ଼କାଯାଇଥିଲା । ତାଙ୍କୁ ବଳିଯାଉଥିବା ଭଳି କୌଣସି ବ୍ୟକ୍ତି ଅବା ତାଙ୍କୁ ମାତ୍ ଦିଆଯାଉଥିବା ଭଳି କୌଣସି ପଦକ୍ଷେପ ପ୍ରତି ସେ ଭୟଙ୍କରଭାବେ କ୍ଷୁବ୍ଧ ଥିଲେ । କିନ୍ତୁ, ଯାହା ଭବିତବ୍ୟ ତାକୁ ଗ୍ରହଣ

କରିନେବା ବ୍ୟତୀତ ତାଙ୍କର ଆଉ କୌଣସି ଚାରା ନଥିଲା ।

ନେହେରୁଙ୍କ ପରେ, ମୋରାରଜୀଙ୍କୁ ବାଦ୍‌ଦେଇ, ଶାସ୍ତ୍ରୀଙ୍କ ନିକଟକୁ କ୍ଷମତାପ୍ରବାହକୁ ଖୁବ୍ ସତର୍କ ଯୋଜନା ମାଧ୍ୟମରେ କିଛି କ୍ଷମତାସମ୍ପନ୍ନ କଂଗ୍ରେସ ନେତାଙ୍କ ତତ୍ତ୍ୱାବଧାନରେ ନିର୍ବାହ କରାଯାଇଥିଲା । ଏହାର ନେତୃତ୍ୱ ନେଇଥିଲେ ନିତାନ୍ତ କୁଶଳୀ ତାମିଲନାଡୁର ମୁଖ୍ୟମନ୍ତ୍ରୀ କେ କାମରାଜ । ଏହି ଗୋଷ୍ଠୀରେ - ଯାହାକୁ "ସିଣ୍ଡିକେଟ୍" ବୋଲି ସଙ୍ଗେ ସଙ୍ଗେ ଡ଼କାଗଲା - ଥିଲେ ପଶ୍ଚିମବଙ୍ଗରୁ ଅତୁଲ୍ୟ ଘୋଷ, ଆନ୍ଧ୍ରର ସଞ୍ଜିବ ରେଡ଼ି, କର୍ଣ୍ଣାଟକର ଏସ୍. ନିଜଲିଙ୍ଗାପ୍ପା, ଓଡ଼ିଶାରୁ ବିଜୁ ପଟ୍ଟନାୟକ ଏବଂ ମୁମ୍ବାଇର ଏସ୍‌କେ ପାଟିଲ । ୧୯୬୩ ମସିହା କଂଗ୍ରେସ କାର୍ଯ୍ୟକାରୀ କମିଟିରେ କାମରାଜ ସେଇ ପ୍ଲାନ୍ ବା ଯୋଜନାଟିକୁ ସର୍ବସମକ୍ଷରେ ଉପସ୍ଥାପନ କଲେ, ଯାହା କି ସେଇଦିନଠାରୁ ତାଙ୍କ ନାମାନୁସାରେ ମନେରଖାଗଲା । ମୁଖ୍ୟମନ୍ତ୍ରୀ ପଦରୁ ଅବ୍ୟାହତି ନେଇ "ପାର୍ଟିକୁ ଟାଣକରିବା ଉଦ୍ଦେଶ୍ୟରେ" କାମ କରିବେ ବୋଲି କାମରାଜ ପ୍ରସ୍ତାବଟିଏ ନେହେରୁଙ୍କ ଆଗରେ ରଖି ସବୁ ମନ୍ତ୍ରୀ ଯେଉଁମାନେ ବେଶ୍ ଅଧିକକାଳ ଧରି ମନ୍ତ୍ରୀ ପଦରେ ରହିଛନ୍ତି, ସେମାନେ ତାଙ୍କୁ ଅନୁସରଣ କରନ୍ତୁ ବୋଲି ପରାମର୍ଶ ଦେଲେ । ନେହେରୁ କାମରାଜଙ୍କ ଯୋଜନାକୁ ସ୍ୱାଗତକରି କହିଲେ ଯେ ଏଇ କ୍ରମରେ ସେ ହେବେ ପ୍ରଥମ ବ୍ୟକ୍ତି ଯିଏ କି କାମରାଜଙ୍କ ଦୃଷ୍ଟାନ୍ତକୁ ଅନୁସରଣ କରିବ । ସ୍ୱାଭାବିକଭାବେ ସମସ୍ତେ ମିଳିତ କଣ୍ଠରେ ନାଇଁ ନାଇଁ ବୋଲି ରଟି ତାଙ୍କୁ ରହିବାକୁ ଅନୁରୋଧ କଲେ । ସେ ଯାହାହେଉ, କାମରାଜ ପ୍ଲାନ୍‌ର ନିର୍ଯ୍ୟାସଟିକୁ ଗ୍ରହଣ କରାଗଲା । ସବୁ ମୁଖ୍ୟମନ୍ତ୍ରୀ ଏବଂ କେନ୍ଦ୍ର କ୍ୟାବିନେଟ୍‌ର ସଦସ୍ୟ ସେମାନଙ୍କ ଇସ୍ତଫା ପତ୍ର ଦେଇଦେଲେ । ଏମାନଙ୍କ ମଧ୍ୟରୁ ନେହେରୁ ଉଭୟ ବିଭାଗରୁ ଛଅଜଣ ଲେଖାଏଁ ବାଛିଲେ ।

ଦେଖାଇ, ଯେ କି ପରେ କହିଲେ ଯେ କାମରାଜ ପ୍ଲାନ୍ ପ୍ରକୃତରେ ଥିଲା ନେହେରୁଙ୍କ ମାନସପ୍ରସୂତ (ଯାହାକୁ ରୋକ୍‌ଠୋକ୍ ଭାବେ ମନାକଲେ ସିଣ୍ଡିକେଟ୍‌ର ଅନ୍ୟତମ ସଦସ୍ୟ ବିଜୁ ପଟ୍ଟନାୟକ  ଏବଂ ୧୯୭୭-୭୯ରେ ଦିଲ୍ଲୀ କ୍ୟାବିନେଟ୍‌ରେ ମନ୍ତ୍ରୀ ହେଲେ) ଥିଲେ ଏହି ଯୋଜନାରେ ବିଦା ହେଉଥିବା କେନ୍ଦ୍ର ମନ୍ତ୍ରୀମାନଙ୍କ ତାଲିକାରେ ପ୍ରଥମ । ଏହି ତାଲିକାରେ ଗୋଟିଏ ଆଶ୍ଚର୍ଯ୍ୟ କରିଦେଲାଭଳି ନାମଟିଏ ମଧ୍ୟ ଥିଲା ଏବଂ ତାହା ଥିଲା ଶାସ୍ତ୍ରୀଙ୍କର । ଏସ୍ ଗୋପାଲଙ୍କ କହିବାନୁସାରେ ଶାସ୍ତ୍ରୀ ଥିଲେ "ଗୋଟିଏ ଥୋପ, ଏବଂ ନେହରୁ ଯେଉଁମାନଙ୍କୁ ବାହାର କରିବାକୁ ଚାହୁଁଥିଲେ, ସେମାନଙ୍କ ବିଦାହେବା ପଛରେ ନେହେରୁଙ୍କ ବ୍ୟକ୍ତିଗତ କାରଣ ଥିବା କଥା ଯେମିତି କେହି ଜାଣିନପାରନ୍ତି ସେଇଥି ପାଇଁ ଶାସ୍ତ୍ରୀଙ୍କୁ ବ୍ୟବହାର କରାଯାଇଥିଲା । ଅଧିକାଂଶ କିନ୍ତୁ ଜାଣିନଥିଲେ ଯେ ନିଶ୍ଚୟ ଅତି ଶୀଘ୍ର ଶାସ୍ତ୍ରୀଙ୍କୁ ପୁଣି କୌଣସି ନା କୌଣସି ଆଳ ଦେଖାଇ ଡ଼କାଇ ଅଣାଯିବ । ଭୁବନେଶ୍ୱରରେ ନେହେରୁଙ୍କ ପ୍ରଥମ ହୃଦ୍‌ଘାତ ପରେ ତାଙ୍କୁ ସାହାଯ୍ୟ କରିବାପାଇଁ ଶାସ୍ତ୍ରୀଙ୍କୁ ଜଣେ ବିଭାଗହୀନ ମନ୍ତ୍ରୀଭାବେ ଯୋଡ଼ାଗଲା । ନେହେରୁଙ୍କ ମୃତ୍ୟୁପରେ ଶୋକ ପାଳନ ସରିବା ମାତ୍ରକେ ୧୯୬୪ ମସିହା ଜୁନ୍ ମାସ ୯ ତାରିଖରେ

ସର୍ବସମ୍ମତି କ୍ରମେ ଶାସ୍ତ୍ରୀଙ୍କୁ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭାପତି ରୂପେ ମନୋନୀତ କରାଗଲା ଏବଂ ସଙ୍ଗେ ସଙ୍ଗେ ସେ ପ୍ରଧାନମନ୍ତ୍ରୀ ରୂପେ ଶପଥ ନେଲେ ।

ଏଇଭଳି ସ୍ପଷ୍ଟ ତଥ୍ୟ ଆଧାରରେ ବିଚାରକଲେ, ନେହେରୁ ତାଙ୍କ ଉତ୍ତରାଧିକାରୀ ଭାବେ ତାଙ୍କ ପ୍ରିୟତମା ଝିଅଙ୍କୁ ବାଛିବାପାଇଁ ସୁଯୋଗ ପାଇଥିଲେ କି ? ଅଥଚ, ସେଭଳି କୁତ୍ସା ଏ ଯାବତ୍ ବି ତାଙ୍କ ବିରୋଧରେ ରଟନା କରାଯାଉଛି । ଏହା ଜଣାଶୁଣା କଥା ଯେ ଦେଶାଇଙ୍କୁ ବାହାର କରିବାକୁ ସେ ଶାସ୍ତ୍ରୀଙ୍କୁ ଲୋଡ଼ିଥିଲେ । ଇନ୍ଦିରା କିନ୍ତୁ କେଉଁଠାରେ ବି ହେଲେ ଏ ଦୃଶ୍ୟପଟରେ ନଥିଲେ । ସେ ଯାହା ବି ହେଉ ଯଦି ନେହେରୁ ତାଙ୍କୁ ରାଜଦଣ୍ଡ ସମର୍ପିବାକୁ ଚାହୁଁଥିଲେ, ତେବେ ସେ ବାବଦରେ ସେ କିଛି ତ ହେଲେ କରିଥାନ୍ତେ ? ଏମିତି ବି ହୋଇଥିଲା, ସେ ତାଙ୍କୁ ପାର୍ଲିଆମେଣ୍ଟର ନିର୍ବାଚନରେ ଭାଗ ନେବାକୁ ମଧ୍ୟ ଉତ୍ସାହିତ କରିନଥିଲେ । ଏହା ପୂର୍ବରୁ ସର୍ଦ୍ଦାର ପଟେଲ, ରାଜେନ୍ଦ୍ର ପ୍ରସାଦ ଏବଂ ରାଜାଜୀ (ସି ରାଜଗୋପାଳଚାରୀ)ଙ୍କ ପୁତ୍ରମାନେ ସଂସଦକୁ ନିର୍ବାଚିତ ହୋଇଥିଲେ ହେଁ ବଂଶବାଦ କଥା ଦୂରେ ଥାଉ, କେହି ତ କାହିଁ ପ୍ରିୟାପ୍ରୀତି ତୋଷଣର କୌଣସି ଅଭିଯୋଗ ଆଣିନଥିଲେ ! ଦିଲ୍ଲୀରେ ରହୁଥିବା ଆମେରିକୀୟ ସାମ୍ବାଦିକ ୱେଲସ୍ ହାନ୍‌ଗେନ୍‌ଙ୍କ ଦ୍ୱାରା ଲିଖିତ ବହି 'ନେହେରୁଙ୍କ ପରେ କିଏ' ପ୍ରତି ନେହେରୁଙ୍କ ପ୍ରତିକ୍ରିୟାରୁ ତାଙ୍କ ଆଭିମୁଖ୍ୟ ସମ୍ପର୍କରେ ବେଶ୍ ଭଲଭାବେ ଜାଣିହୁଏ । ସେଇ ପୁସ୍ତକରେ ଲେଖକ ନେହେରୁଙ୍କ ଉତ୍ତରାଧିକାରୀ ଭାବେ ଯଥାକ୍ରମେ ଦେଶାଇ, ଶାସ୍ତ୍ରୀ ଏବଂ ଇନ୍ଦିରାଙ୍କ ନାମ ରଖିଥିଲେ । ନେହେରୁ ଏଥିରେ ଯେ କେବଳ ଅସନ୍ତୁଷ୍ଟ ହୋଇଥିଲେ ତାହା ନୁହେଁ, ସେଇ 'ଆମେରିକାନ୍'କୁ ସାକ୍ଷାତକାର ଦେଇଥିବାରୁ ଇନ୍ଦିରାଙ୍କୁ ସେ ଭର୍ତ୍ସନା ମଧ୍ୟ କରିଥିଲେ । ଏହାଛଡ଼ା ସେ ଜନସାଧାରଣଙ୍କ ସମ୍ମୁଖରେ ନିଜ ବକ୍ତବ୍ୟରଖି କହିଥିଲେ ଯେ "ବଂଶ ପରମ୍ପରାନୁସାରେ ଉତ୍ତରାଧିକାରୀ ବାଛିବା କେବଳ ଯେ ଆମ ଭଳି ପାର୍ଲିଆମେଣ୍ଟାରି ବ୍ୟବସ୍ଥା ବହିର୍ଭୂତ ତାହା ନୁହେଁ, ବ୍ୟକ୍ତିଗତଭାବେ ମୋ ପାଇଁ ଏହା ଘୃଣ୍ୟ ।" କିନ୍ତୁ, ତଥାପି ଦେଶାଇ ସାରା ଜୀବନ ସେୟା ହିଁ ଭାବିନେଲେ ଯେ ଇନ୍ଦିରା ଯେପରି ନେହେରୁଙ୍କ ପଦ ହାସଲ କରିବେ, ସେଇ ବାଟ ସୁଗମ କରିବାଲାଗି ଖୋଦ୍ ନେହେରୁ ଷଡ଼ଯନ୍ତ୍ର କରିଥିଲେ । ଏପରିକି ଶାସ୍ତ୍ରୀ, ଯିଏ କି କାମରାଜ ପ୍ଲାନ୍‌ର ସିଧାସଳଖ ହିତାଧିକାରୀ ହୋଇଥିଲେ, ଏପରି ଏକ ଭାବନା ପୋଷଣ କରିଥିଲେ ଯେ "ଅନ୍ତରର କୁଆଡ଼େ ନେହେରୁ, ନିଜ ଝିଅକୁ ଉତ୍ତରାଧିକାରୀଭାବେ ବାଛିବାକୁ ଚାହୁଁଥିଲେ ।" ମାତ୍ର ସେ ଭଦ୍ରତା ରକ୍ଷାକରି କହିଥିଲେ, "କାହିଁକି ସେ (ନେହେରୁ) ସେ କଥା ଖୋଲି କହୁନାହାନ୍ତି ?"

ଏଭଳି ଧାରଣାକୁ ଭୁଲ୍ ବୋଲି ପ୍ରମାଣ କରିବାକୁ ଯଥେଷ୍ଟ ପ୍ରମାଣ ଥିଲା । କେବଳ ଯେ ନେହେରୁ ନିଜ ଝିଅକୁ ପ୍ରଧାନମନ୍ତ୍ରୀ ପଦକୁ ଉନ୍ନୀତ କରିବାପାଇଁ କିଛି କରିନଥିଲେ ତା ନୁହେଁ, ଇନ୍ଦିରା କୌଣସି କାଳରେ ତାଙ୍କ ବାପାଙ୍କ ଉତ୍ତରାଧିକାରୀ ହେବାର ପ୍ରତିଯୋଗିତାରେ ସାମିଲ ନଥିଲେ । ସେ ଗଭୀର ଦୁଃଖ ଦ୍ୱାରା ଆଚ୍ଛନ୍ନ ଥିଲେ । ଶାସ୍ତ୍ରୀଙ୍କ କ୍ୟାବିନେଟ୍‌ରେ ମନ୍ତ୍ରୀ ହେବାର ଇଚ୍ଛା ମଧ୍ୟ ତାଙ୍କର ନଥିଲା, କିନ୍ତୁ ଶାସ୍ତ୍ରୀ କୌଣସିମତେ ମନା ଶୁଣିବାର ସ୍ଥିତିରେ

ନଥିଲେ । ଡ଼ରୋଥି ନର୍ମାନ୍‌ଙ୍କ ପାଖକୁ ସେ ଲେଖିଥିବା ପତ୍ରାନୁଯାୟୀ ଲଣ୍ଡନରେ ଅନ୍ତତଃ ପକ୍ଷରେ ଆଉ ବର୍ଷଟିଏ ରହିବାର ଇଚ୍ଛା ତାଙ୍କର ଥିଲା । ତାଙ୍କର ଦୁଇ ପୁଅଯାକ ସେତେବେଳେ ଥିଲେ ବ୍ରିଟେନ୍‌ରେ, ରାଜୀବ କ୍ୟାମ୍ବ୍ରିଜ୍‌ରେ ଏବଂ ମୋଟର କାର୍ ପ୍ରତି ଚରମ ଦୁର୍ବଳତା ପୋଷଣ କରୁଥିବା ସଞ୍ଜୟ କ୍ରିଓ୍ବେଠାରେ ଥିବା ରୋଲସ୍ ରଏସ୍ କମ୍ପାନୀର କାରଖାନାରେ କାମ ଶିଖୁଥିଲେ । ସେ ଯାହାହେଉ, ଶାସ୍ତ୍ରୀ ଇନ୍ଦିରାଙ୍କୁ କ୍ୟାବିନେଟ୍‌ରେ ଯୋଗଦେବା ପାଇଁ ମନେଇବାରେ ସଫଳ ହେଲେ । ଇନ୍ଦିରା ଗୋଟିଏ "ହାଲୁକା ବିଭାଗ", ସୂଚନା ଏବଂ ପ୍ରସାରଣ ବିଭାଗ ମାଗିଲେ ।

## ଗୋଟିଏ କଷ୍ଟସାଧ ସମୀକରଣ

ଇନ୍ଦିରା କ୍ୟାବିନେଟ୍‌ରେ ଯୋଗ ଦିଅନ୍ତୁ ବୋଲି ଶାସ୍ତ୍ରୀ ଜିଦ୍‌ଧରିବା ପଛରେ ଏକ ମିଶ୍ର ଉଦ୍ଦେଶ୍ୟ ଥିଲା । ତାଙ୍କର ଅନେକ ସୁଗୁଣ ଯୋଗୁଁ ସେ ପ୍ରଧାନମନ୍ତ୍ରୀ ହୋଇପାରିଥିଲେ, କିନ୍ତୁ ଏହା ମଧ୍ୟ ଥିଲା ତାଙ୍କ ପାଇଁ ଏକ ଉପହାର । ସେ ଅକୃତଜ୍ଞ ରହିବାକୁ ଚାହିଁଲେ ନାହିଁ । ସେ ଏହା ମଧ୍ୟ ଜାଣିଥିଲେ ଯେ ମନ୍ତ୍ରୀମଣ୍ଡଳରେ ନେହେରୁଙ୍କ ଝିଅ ରହିଲେ ତାହା ତାଙ୍କୁ ଶକ୍ତି ଯୋଗାଇବ । ଜଣେ ନିହାତି ଭଦ୍ର ଏବଂ ଭଲଲୋକ ହୋଇଥିବା ସହିତ ସେ ମଧ୍ୟ ଥିଲେ ବେଶ୍ ଟାଣ ଏବଂ ଚତୁର । ସେ ନିଜର ସ୍ୱାର୍ଥକୁ କିଭଳି ସୁରକ୍ଷା କରିବେ ତାହା ଜାଣିଥିଲେ । ସେ ତାଙ୍କ କ୍ୟାବିନେଟ୍‌ରେ ଜଣେ ସମ୍ଭାବ୍ୟ ପ୍ରତିଦ୍ୱନ୍ଦ୍ୱୀଙ୍କୁ ରଖିବାକୁ ଚାହୁଁନଥିଲେ । ତେଣୁ ମୂଳରୁ ହିଁ ଶାସ୍ତ୍ରୀ - ଇନ୍ଦିରା ସମୀକରଣରେ କିଛି ପରିମାଣରେ ଅନିଶ୍ଚିତତା ଥିଲା । ଖୁବ୍ ଅଳ୍ପଦିନ ଭିତରେ ଏହା ଖରାପ ଆଡ଼କୁ ଗତି କଲା ।

ପରିସ୍ଥିତିଟା କ'ଣ ଇନ୍ଦିରା ବୁଝିପାରୁଥିଲେ । ଶାସ୍ତ୍ରୀ ତାଙ୍କୁ ଅଧିକ ଗୁରୁତ୍ୱ ଦେଉଥିଲେ ଏବଂ ସବୁ ମହତ୍ତ୍ୱପୂର୍ଣ୍ଣ କ୍ୟାବିନେଟ୍ କମିଟିରେ ତାଙ୍କୁ ଅନ୍ତର୍ଭୁକ୍ତ କରୁଥିଲେ । କିନ୍ତୁ, ଗୁରୁତ୍ୱପୂର୍ଣ୍ଣ ପଲିସି ବା ନୀତି ତିଆରିବେଳେ ତାଙ୍କୁ ଅଧିକ ସୁଯୋଗ ଦେଉନଥିଲେ ।

କିମ୍ବା କୌଣସି ଗୁରୁତ୍ୱପୂର୍ଣ୍ଣ ନିଯୁକ୍ତି ସମୟରେ ସେ ଇନ୍ଦିରାଙ୍କ ପରାମର୍ଶ ନେଉନଥିଲେ । ଥରେ ଇନ୍ଦିରା, କମନ୍‌ଓ୍ୱେଲଥ୍ ଦେଶର ପ୍ରଧାନମନ୍ତ୍ରୀଙ୍କ ସମ୍ମିଳନୀରେ ଯୋଗଦେବା ପାଇଁ ଶାସ୍ତ୍ରୀଙ୍କ ତରଫରୁ ପ୍ରତିନିଧିତ୍ୱ କରିଥିବା ସମୟରେ ଯେତେବେଳେ ଜାଣିଥିଲେ ଯେ ତାଙ୍କ ଅଗୋଚରରେ ଶାସ୍ତ୍ରୀଜୀ ଜଣେ ବିଦେଶ ମନ୍ତ୍ରୀଙ୍କୁ ନିଯୁକ୍ତ କରିଛନ୍ତି, ସେତିକିବେଳେ ସ୍ୱାଭାବିକଭାବେ ଅପମାନିତ ହୋଇଥିଲେ । ସେ ଯେତେବେଳେ ଘରକୁ ଫେରିଲେ ସେତେବେଳେ ଅନେକ କନିଷ୍ଠ ମନ୍ତ୍ରୀ ଏବଂ ସାଂସଦ ତାଙ୍କୁ ପ୍ରାୟ ଘେରିଯାଇ ଶାସ୍ତ୍ରୀଙ୍କ ବିରୋଧରେ ଅଭିଯୋଗ କରିଥିଲେ ଏବଂ କହିଥିଲେ ଯେ ପ୍ରଧାନମନ୍ତ୍ରୀ ଶାସ୍ତ୍ରୀ ନୀରବରେ ନେହେରୁଙ୍କ ନୀତିର ବ୍ୟତିକ୍ରମ କରି ଚାଲିଛନ୍ତି । ସ୍ୱଭାବସୁଲଭ ଭାବେ ଇନ୍ଦିରା ସେଇ ସମୟରେ କୌଣସି ପ୍ରତିକ୍ରିୟା ପ୍ରକାଶ କଲେନାହିଁ । କିନ୍ତୁ ପରବର୍ତ୍ତୀ ସମୟରେ ତାଙ୍କ କାର୍ଯ୍ୟକଳାପରୁ ସବୁକିଛି ବାରି ହୋଇଗଲା ।

୧୯୬୫ର ଆଦ୍ୟ ଭାଗରେ, ତାମିଲନାଡୁରେ ଭୟାବହ ଭାଷାଭିତ୍ତିକ ଦଙ୍ଗା

ଦେଖାଦେଲା । ସେଇ ସମୟରେ ଶାସ୍ତ୍ରୀ ସରକାର ଦକ୍ଷିଣ ଭାରତୀୟ ରାଜ୍ୟଗୁଡ଼ିକ ଉପରେ ହିନ୍ଦୀ ଭାଷାକୁ ଲଦିଦେବାର ପ୍ରୟାସ କରୁଛି ବୋଲି ଏକ ଧାରଣା ସୃଷ୍ଟି ହେବା ଥିଲା ଏହାର କାରଣ ଏବଂ ଏଭଳି କରିବାକୁ କେବେ ବି ପ୍ରଶ୍ରୟ ଦିଆଯିବ ନାହିଁ ବୋଲି ନେହେରୁ ଦେଇଥିବା ଆଶ୍ୱାସନାକୁ ଏହା ଉଲ୍ଲଂଘନ କରୁଥିଲା । ପରିସ୍ଥିତି ଥିଲା ବିସ୍ଫୋରକ କିନ୍ତୁ ଶାସ୍ତ୍ରୀ ଏବଂ କାମରାଜ, ଯିଏ କି ବର୍ତ୍ତମାନ ଥିଲେ କଂଗ୍ରେସର ସଭାପତି, ସେଇ ବିପନ୍ନ ରାଜ୍ୟଗୁଡ଼ିକର ପରିସ୍ଥିତି ଅନୁଧ୍ୟାନ କରିବାକୁ ବି ଯାଇନଥିଲେ । ଅପରପକ୍ଷରେ ଇନ୍ଦିରା ପ୍ରଥମ ବିମାନ ଧରି ସେଇ ଝଡ଼ର କେନ୍ଦ୍ରରେ ପହଞ୍ଚି ସେଠାରେ ଆନ୍ଦୋଳନକାରୀମାନଙ୍କ ସହ କଥାବାର୍ତ୍ତା କରି ପରିସ୍ଥିତିକୁ ନିୟନ୍ତ୍ରଣରେ ଆଣିବାକୁ ସମର୍ଥ ହୋଇଥିଲେ । ଏହା ଶାସ୍ତ୍ରୀଙ୍କୁ ଖୁସି କଲାନାହିଁ । ତାଙ୍କ ସମର୍ଥକମାନେ କହିଲେ ଯେ ଇନ୍ଦିରା "ପ୍ରଧାନମନ୍ତ୍ରୀଙ୍କ ମୁଣ୍ଡ ଉପରେ ଡେଇଁଯିବାକୁ ଚେଷ୍ଟା କରୁଛନ୍ତି ।" ମୁଁ ଯେତେବେଳେ ଇନ୍ଦିରାଙ୍କୁ ଏଇକଥା କହିଥିଲି, ସେତେବେଳେ ସେ ଉତ୍ତେଜିତ ହୋଇପଡ଼ିଥିଲେ ଏବଂ କହିଥିଲେ ସେ ତାମିଲନାଡୁ ପାଇଁ ଯାହା କରିଥିଲେ, ସେଭଳି ପରିସ୍ଥିତି ଯେତେବେଳେ ବା ଯେଉଁଠି ଉପୁଜିବ, ସେଠାରେ ସେ ଅବିକଳ ସେମିତି ହିଁ କରିବେ ।

ମୁଁ କିନ୍ତୁ ଅନେକ ବର୍ଷ ପରେ ଜାଣିବାକୁ ପାଇଥିଲି ଯେ ସେ ନିଜର ଅତି ଅନ୍ତରଙ୍ଗ ପରାମର୍ଶଦାତା, ଯିଏ କି ଇନ୍ଦିରାଙ୍କ ଶେଷଦିନ ଯାଏ ତାଙ୍କ ଉପଦେଷ୍ଟା ହୋଇ ରହିଥିଲେ, ଜି ପାର୍ଥସାରଥିଙ୍କ ପାଖରେ ସରକାରରୁ ଇସ୍ତଫା ଦେବାପାଇଁ ଏବଂ ରାଜନୀତିରୁ ପୂରାପୂରି ଅବ୍ୟାହତି ନେଇ ନିଜର ସମସ୍ତ ସମୟ ଖୁବ୍ ଭଲ ପାଉଥିବା କଳା, ସ୍ଥାପତ୍ୟ ଏବଂ ଗୃହସଜ୍ଜା (ଇନ୍‌ଟେରିଅର୍ ଡେ଼କୋରେସନ୍) ଆଦି କ୍ଷେତ୍ରରେ ବିନିଯୋଗ କରିବାକୁ ଆଗ୍ରହ ପ୍ରକାଶ କରିଥିଲେ । ସ୍ୱଳ୍ପଭାଷୀ ଜିପି ତାଙ୍କୁ ଏଭଳି କଥା ଚିନ୍ତା କରିବାକୁ ମନା କରିଥିଲେ । ସେ କହିଥିଲେ, 'ଆପଣ ଜାଣନ୍ତି ନାହିଁ କେତେବେଳେ କେଉଁ କଥା !' ମୁଁ କହିପାରିବିନି ଏ କଥା କହିଲାବେଳେ ଜିପି ନିଜେ ନିଜ କଥାର ଗୁରୁତ୍ୱ ସମ୍ପର୍କରେ ଅବଗତ ଥିଲେ ନା ନାହିଁ ।

୧୯୬୫ ମସିହା ଅଗଷ୍ଟ ମାସରେ ପାକିସ୍ତାନ କାଶ୍ମୀର ଭିତରକୁ କମାଣ୍ଡୋ ପଠାଇ ସେଇ ସମ୍ବେଦନଶୀଳ ରାଜ୍ୟରେ ବିଦ୍ରୋହ ସୃଷ୍ଟି କରିବାକୁ ଚେଷ୍ଟାକଲା କାରଣ ସେ କଳେ ବଳେ କୌଶଳେ ସେଇ ରାଜ୍ୟକୁ ଭାରତଠାରୁ ଛିନ୍ନ କରିଦେବା ପାଇଁ ଚାହୁଁଥିଲା । ଆପଣା ବାକ୍ୟ ରକ୍ଷାକରି ଇନ୍ଦିରା ସେଇ ସ୍ଥାନକୁ ତତ୍‌କ୍ଷଣାତ୍ ଗଲେ । ଅନୁପ୍ରବେଶକାରୀମାନଙ୍କ ସହିତ ମୁକାବିଲା କରୁଥିବା ବ୍ୟକ୍ତିମାନଙ୍କ ପାଇଁ ଶାଢ଼ି ପରିହିତା ପତଳା ଶରୀରଧାରୀ ଇନ୍ଦିରା ଥିଲେ ଉତ୍ସାହର ଉତ୍ସ । ସେ ସେଠାରୁ ଦିଲ୍ଲୀ ଫେରିଲାବେଳକୁ ପାକିସ୍ତାନର ଏଇ ଦୁଃସାହସ ଭାରତ ଏବଂ ପାକିସ୍ତାନ ଭିତରେ ଏକ ଯୁଦ୍ଧ ସୃଷ୍ଟି କରିସାରିଥିଲା ।

ଅନୁପ୍ରବେଶକାରୀମାନଙ୍କୁ ପଠାଇବାର ଷଡ଼ଯନ୍ତ୍ରରେ ବିଫଳ ହେବାପରେ ପାକିସ୍ତାନ ସାମରିକବାହିନୀ ଗୁରୁତ୍ୱପୂର୍ଣ୍ଣ ଆଖ୍‌ନୁର ସହର ଉପରେ ଆକ୍ରମଣ କଲେ । ଶାସ୍ତ୍ରୀ ଏହି ଆକ୍ରମଣର ଟାଣ ଜବାବ ଦେଲେ ଏବଂ ଏଥିରେ ଜଡ଼ିତ ଥିବା ସମସ୍ତଙ୍କୁ ସତର୍କ କରିଦେବା ପାଇଁ ସେ

କାଶ୍ମୀରରେ ପାକିସ୍ତାନୀ ଆକ୍ରମଣର ପ୍ରତିରୋଧ ନକରି ପାକିସ୍ତାନର କେନ୍ଦ୍ରସ୍ଥଳ ଲାହୋର୍ ଉପରେ ଆକ୍ରମଣ କଲେ । ଫିଲ୍ଡ୍ ମାର୍ଶାଲ୍ ଆୟୁବ୍ ଖାନ୍‌ଙ୍କ ପାଖରେ ଅନ୍ୟ ବାଟ ନଥିଲା । ଜାତିସଂଘର ସେକ୍ରେଟାରୀ ଜେନେରାଲଙ୍କ ପ୍ରସ୍ତାବିତ ଯୁଦ୍ଧ ବିରତି ବା ପରାଜୟ ; ଏ ଦୁଇଟି ଭିତରୁ ଗୋଟିଏ ବିକଳ୍ପ ଗ୍ରହଣ କରିବାର ସୁଯୋଗରେ ସେ ପ୍ରଥମଟି ଗ୍ରହଣ କରିବାକୁ ବାଧ୍ୟ ହେଲେ ।

ଭାରତରେ ଯୁଦ୍ଧର ଭାଗ୍ୟ ସହିତ ଶାସ୍ତ୍ରୀଙ୍କ ଭାଗ୍ୟରେ ମଧ୍ୟ ପରିବର୍ତ୍ତନ ଆସିଲା । ୧୯୬୨ର ସାମରିକ ଅପମାନ ତଳେ ଗୁଞ୍ଜି ହୋଇଯାଇଥିବା ଦେଶ ସାନ୍ତ୍ୱନା ପାଇଲା । ଶାସ୍ତ୍ରୀଙ୍କ ସମ୍ମାନ ବଢ଼ିଲା । ଏକ ରାଷ୍ଟ୍ର ନାୟକ ଭାବେ ତାଙ୍କୁ ସାରା ଭାରତରେ ଦେଖାଯିବାକୁ ଲାଗିଲା । ସରକାର, ଦଳ ଏବଂ ଦେଶରେ ତାଙ୍କ ସ୍ଥିତି ବେଶ୍ ମଜବୁତ୍ ହୋଇପଡ଼ିଲା । ଏଭଳି ପରିସ୍ଥିତିରେ ତାଙ୍କୁ ହଟାଇବା ଇନ୍ଦିରାଙ୍କ ପକ୍ଷରେ ମଧ୍ୟ ସମ୍ଭବପର ନଥିଲା । ଫଳତଃ ଇନ୍ଦିରାଙ୍କ ହତାଶା ବଢ଼ିଲା ଏବଂ ତା ସହିତ ଶାସ୍ତ୍ରୀଙ୍କ ଆତ୍ମପ୍ରତ୍ୟୟ ମଧ୍ୟ ।

ଏହି ପୃଷ୍ଠଭୂମିରେ ୧୯୬୫ ମସିହାର ଶେଷଦିନରେ ଶାସ୍ତ୍ରୀ ପ୍ରବୀଣ ରାଜନେତା ଟିଟି କୃଷ୍ଣମାଚାରୀଙ୍କୁ ଖୁବ୍ ସହଜରେ ଦଳରୁ ବିଦା କରିଦେଲେ । ଟିଟିକେ ଥିଲେ ନେହେରୁଙ୍କ ଘନିଷ୍ଠ ଏବଂ ଏବେ ଇନ୍ଦିରାଙ୍କ ପ୍ରିୟ । ସେଦିନ ରାତିର ବିଳମ୍ବିତ ପ୍ରହରରେ ଏହି ସମ୍ବାଦ ଆସିଲା । ଇନ୍ଦିରା ଏହାଦ୍ୱାରା ଗଭୀରଭାବେ କ୍ଷୁବ୍‌ଧ ହେଲେ ଏବଂ ନିଜ ଭାବକୁ କୌଣସିଭାବେ ଗୋପନ ନରଖି ପ୍ରକାଶ କଲେ : "ଯା ପରେ ମୁଁ ବିଦା ହେବି" ଏବଂ ତା ସହିତ ଯୋଡ଼ିଲେ, "ଏଭଳି କ୍ୟାବିନେଟ୍‌ରେ ରହିବା କଥା ନୁହେଁ ।" ଏହାପରେ ଦୁଃଖିତଭାବେ ସେ ପୁଣି ଲଣ୍ଡନରେ ରହିବାର ଇଚ୍ଛା ପ୍ରକଟ କଲେ ।

ସେ ଏ କଥା ଜାଣିଥିଲେ କି ନାହିଁ କେଜାଣି, ଶାସ୍ତ୍ରୀଙ୍କ ଚିନ୍ତା କିନ୍ତୁ ଠିକ୍ ସେଇ ଦିଗରେ କାମ କରୁଥିଲା । ଦୁଇଦିନ ପରେ ତାଙ୍କର ମଧ୍ୟ ଏସୀୟ ସହର ତାସ୍‌କେଣ୍ଟକୁ ଯିବାର ହେଲା, ଯାହା କି ଥିଲା ସେତେବେଳର ସୋଭିଏତ୍ ରୁଷିଆର ଅଂଶବିଶେଷ । ସେଠାରେ ସେ ସୋଭିଏତ୍ ପ୍ରଧାନମନ୍ତ୍ରୀ ଆଲେକ୍‌ସି କୋସିଜିନ୍‌ଙ୍କ ଆମନ୍ତ୍ରଣରେ ଆୟୁବ୍‌ଙ୍କ ସହିତ ଶାନ୍ତି ରାଜିନାମା କରିବାର ଯୋଜନା ଥିଲା । ଯାହା ସେ ନିଜର ନିକଟତମ ଏବଂ ବିଶ୍ୱାସୀ ବନ୍ଧୁମାନଙ୍କୁ କହିଥିଲେ ତାହା ହେଉଛି ସେଠାରୁ ଫେରିଲାପରେ ସେ ଇନ୍ଦିରାଙ୍କୁ ଲଣ୍ଡନ୍‌ର ହାଇକମିଶନ୍‌ର ପଦବୀ ପାଇଁ ପ୍ରସ୍ତାବ ଦେଇଥାନ୍ତେ, ଏବଂ ତାଙ୍କ ବିଶ୍ୱାସାନୁସାରେ ଏଭଳି ପ୍ରସ୍ତାବକୁ ମନାକରିବା ଇନ୍ଦିରାଙ୍କ ପକ୍ଷରେ ସମ୍ଭବ ହୋଇନଥାନ୍ତା । କିନ୍ତୁ, କିଏ ଜାଣିଥିଲା ଯେ ତାସ୍‌କେଣ୍ଟରୁ ଶାସ୍ତ୍ରୀ କଫିନ୍‌ରେ ହିଁ ଭାରତକୁ ଫେରିବେ । କୋସିଜିନ୍‌ଙ୍କ ସହାୟତାରେ ସେ ଓ ଆୟୁବ୍ ଦୁଇ ଦେଶ ଭିତରେ ଏକ ରାଜିନାମାରେ ପହଞ୍ଚି ପାରିଥିଲେ । କିନ୍ତୁ, ଏହି ବିଜୟର ଅଳ୍ପ କିଛି ଘଣ୍ଟାପରେ ହିଁ ଘଟିଲା ଏହି ଦୁଃଖଦ ବଜ୍ରପାତ । ଲାଲ ବାହାଦୁର ଶାସ୍ତ୍ରୀ, ଯେ କି ଜଣେ ହୃଦ୍‌ରୋଗୀ ଥିଲେ, ହଠାତ୍ ଦେଖିଲା ବେଳକୁ ମାତ୍ର ଷାଠିଏ ବର୍ଷ ବୟସରେ ସେ ମୃତ୍ୟୁ ଶଯ୍ୟାରେ ଶୋଇଥିଲେ ।

## ୪



# ଶୀର୍ଷକୁ ଆରୋହଣ

ଶାସ୍ତ୍ରୀଙ୍କ ମୃତ୍ୟୁ ନେହେରୁଙ୍କ ମୃତ୍ୟୁ ପରି ନଥିଲା । ଏହା ଥିଲା ସହସା ଏବଂ ସମସ୍ତଙ୍କ ଚିନ୍ତାତୀତ । ତାଙ୍କ ଉତ୍ତରାଧିକାରୀ କିଏ ହେବ ସେ ନେଇ କୌଣସି ବୁଝାମଣା ହେବା ଦୂରେ ଥାଉ, କେହି ବି କଳ୍ପନା କରିନଥିଲେ ଯେ ଏତେ ଶୀଘ୍ର ତାଙ୍କ ପାଇଁ ଜଣେ ଉତ୍ତରାଧିକାରୀ ବାଛିବାକୁ ପଡ଼ିବ । ସିଣ୍ଡିକେଟ୍ ପୁଣି କାମରେ ଲାଗିଗଲା । ଏହାର ସର୍ଦ୍ଦାର କାମରାଜଙ୍କ ମତାନୁସାରେ ଇନ୍ଦିରା ଥିଲେ ସବୁଠାରୁ ଭଲ ପସନ୍ଦ । କିନ୍ତୁ, ତାଙ୍କର ସଦାଶୟମାନେ ସେଇ ଅବସ୍ଥାରେ ତାଙ୍କ ସହିତ ଏକମତ ହେବା ପରିସ୍ଥିତିରେ ନଥିଲେ । ଉଦାହରଣସ୍ୱରୂପ, ଏସ୍‌କେ ପାଟିଲ୍, କାମରାଜଙ୍କୁ ପାମ୍ପଲେଇବାକୁ ଯାଇ ସେ ସ୍ୱୟଂ ପଦବୀଟିକୁ ଗ୍ରହଣ କରିନିଅନ୍ତୁ ବୋଲି ମତ ଦେଲେ । କିନ୍ତୁ, ଏହାର ଉତ୍ତରରେ ସ୍ୱଳ୍ପଭାଷୀ ସେଇ ମହାରଥୀଙ୍କ ଉତ୍ତର ଥିଲା ତାର ସ୍ୱଳ୍ପତାରେ ସ୍ୱତନ୍ତ୍ର : ଇଂଲିସ୍ ନାହିଁ, ହିନ୍ଦୀ ନାହିଁ, କେମିତି ହେବ ? କିନ୍ତୁ ଗୋଟିଏ କଥାରେ ସିଣ୍ଡିକେଟ୍‌ର ସମସ୍ତେ ଏକମତ ଥିଲେ ଏବଂ ତାହା ହେଉଛି : ଦେଶାଇଙ୍କୁ ରୋକିବାକୁ ହେବ । ଏଥର ଦେଶାଇ ଶୀର୍ଷତମ ପଦବୀଟିକୁ ଦାବି କରିବାପାଇଁ ସ୍ଥିର ନିଶ୍ଚିତ ହୋଇଥିବା କଥା କାହାଠାରୁ ଗୁପ୍ତ ରଖିନଥିଲେ । ଆଗରୁ ସେ ଅଭିଯୋଗ କରୁଥିଲେ ଯେ ତାଙ୍କୁ ପ୍ରବଞ୍ଚନା ପୂର୍ବକ ତହିଁରୁ ବଞ୍ଚିତ କରାଯାଇଛି । ସୁତରାଂ, ଏହିସବୁ କାରଣରୁ ମତାମତ ଇନ୍ଦିରାଙ୍କ ସପକ୍ଷରେ ଆସିବାକୁ ଲାଗିଲା ।

ତାଙ୍କ ବଂଶ ବୁନିଆଦି ତାଙ୍କ ପାଇଁ ଏକ ସମ୍ପଦ ଥିଲା । କିନ୍ତୁ, ବିଚାରକୁ ଆସିବା ପାଇଁ ଏହା ପ୍ରମୁଖ କାରଣ ନଥିଲା । ନିକଟବର୍ତ୍ତୀ ହେଉଥିବା ସାଧାରଣ ନିର୍ବାଚନ - ନେହେରୁଙ୍କ ଅବର୍ତ୍ତମାନରେ ତାଙ୍କ ବଳିଷ୍ଠ ଉପସ୍ଥିତି ବିନା ଲଢ଼ାଯାଉଥିବା ଏହି ନିର୍ବାଚନ ଆଉ ମାତ୍ର ଥିଲା ତେର ମାସ ଦୂରରେ - ଥିଲା ମୁଖ୍ୟ ପ୍ରସଙ୍ଗ । ସବୁ କଂଗ୍ରେସ ନେତାଙ୍କ ଭିତରୁ କେବଳ ତାଙ୍କ ପାଖରେ ହିଁ ଥିଲା ତାଙ୍କ ବାପାଙ୍କ ବ୍ୟକ୍ତିତ୍ୱର ଯାଦୁ ଏବଂ ଜନାଧାର, ଯାହା କି ଶାସ୍ତ୍ରୀଙ୍କ ନାପସନ୍ଦ ସତ୍ତ୍ୱେ ସେ କରୁଥିବା ଦେଶତମାମ ବତାସୀ ଗସ୍ତସବୁରୁ ଜଣାପଡ଼ିଯାଇଥିଲା । ଅନ୍ୟ ଯେ କୌଣସି ଲୋକ ଅପେକ୍ଷା ସେ ଯେ ଅଧିକ ଭୋଟ୍ ଠୁଳ କରିବାରେ ସମର୍ଥ, ତାହା ଥିଲା ନିସନ୍ଦେହ । ସିଣ୍ଡିକେଟ୍ ଏବଂ ଆଠଟି ରାଜ୍ୟର ମୁଖ୍ୟମନ୍ତ୍ରୀମାନେ ସ୍ୱୀକାର କରୁଥିଲେ ଯେ ବାପାଙ୍କ ଭଳି ଇନ୍ଦିରା ବି ମୁସଲ୍‌ମାନ, ହରିଜନ (ଏବେ ଦଳିତ ନାମରେ ଡ଼କାଯାଉଛନ୍ତି) ଏବଂ ଅନ୍ୟ

ସଂଖ୍ୟାଲଘୁଙ୍କ ଭିତରେ ବେଶ୍ ଲୋକପ୍ରିୟ ଥିଲେ ଏବଂ ତାଙ୍କ ବାପାଙ୍କ ଭଳି ସେ ଭାରତୀୟ ସମାଜ ଏବଂ ରାଜନୀତିକୁ ଭାଗ ଭାଗ କରୁଥିବା - ଯେମିତି ଜାତି, ସଂପ୍ରଦାୟ, ଧର୍ମ, ଅଞ୍ଚଳ ଏବଂ ଦଳୀୟ ମନୋଭାବ - ବିଷୟଗୁଡ଼ିକର ଊର୍ଦ୍ଧ୍ୱରେ ଥିଲେ । ଇନ୍ଦିରାଙ୍କୁ ବାଛିବା ପଛରେ ସିଣ୍ଡିକେଟ୍‌ର ଆଉ ଏକ ବାସ୍ତବ କିନ୍ତୁ ଅପ୍ରକାଶ୍ୟ ଉଦ୍ଦେଶ୍ୟ ଥିଲା, ଯାହାକି ପରେ ଭୁଲ୍ ବୋଲି ବିବେଚିତ ହେଲା । ସେମାନେ ଭାବିଥିଲେ ଯେ ଇନ୍ଦିରା ହେବେ ଜଣେ ଦୁର୍ବଳ ପ୍ରଧାନମନ୍ତ୍ରୀ । ସେମାନେ ନିଶ୍ଚିତ ଥିଲେ ଯେ ବାସ୍ତବରେ ସିଣ୍ଡିକେଟ୍ ଶାସନ କରିବ, ଇନ୍ଦିରା କେବଳ ଗାଦିରେ ବସିବେ ।

ଇନ୍ଦିରାଙ୍କ ପାଖରେ ଥିବା ଗୋଟିଏ ବିଜୟୀ ଗୁଣ ଏଇ ଘଡ଼ିସନ୍ଧି ମୁହୂର୍ତ୍ତରେ ତାଙ୍କ କାମରେ ଆସିଲା । ମୋରାରଜୀ ଦେଶାଇ ଯେତେବେଳେ ପ୍ରଧାନମନ୍ତ୍ରୀ ପଦବୀ ପାଇଁ ବେଶ୍ ଜୋର୍‌ଦାର୍‌ଭାବେ ନିଜ ଦାବି ପେସ୍ କରୁଥିଲେ, ସେତେବେଳେ ଇନ୍ଦିରା ଏକ ସମ୍ମାନପ୍ରଦ ନୀରବତା ପାଳନ କରୁଥିଲେ । ସେ ସମ୍ପର୍କରେ ତାଙ୍କୁ ଯେତେବେଳେ ପଚରାଯାଉଥିଲା, ସେତେବେଳେ ତାଙ୍କ ଉତ୍ତର ଥିଲା, "ସେ କଂଗ୍ରେସର ଅଧ୍ୟକ୍ଷ କାମରାଜଙ୍କ ଦ୍ୱାରା ପରିଚାଳିତ ହେବେ ।" ବୈରାଗ୍ୟକୁ ଗୁରୁତ୍ୱ ଦେଉଥିବା ଆମଭଳି ଏକ ସମାଜରେ ଏଇ ଆଚରଣ ପାଇଁ ଇନ୍ଦିରା ବେଶ୍ ଲାଭବାନ୍ ହେଲେ, ଯେପରି କି ଅନେକ ବର୍ଷ ପରେ, ୨୦୦୪ ମେ ମାସରେ, ତାଙ୍କ ବୋହୂ ସୋନିଆ ଗାନ୍ଧି ନାଟକୀୟଭାବେ ଏହି ଗୁଣ ପ୍ରଦର୍ଶନ କରି ନିଜ ହକ୍ ଦ୍ୱାରା ହାସଲ କରିଥିବା ମୁକୁଟକୁ ପ୍ରତ୍ୟାଖ୍ୟାନ କରି ଅଭୂତପୂର୍ବ ଲୋକପ୍ରିୟତା ହାସଲ କଲେ ।

୧୯୬୬ ମସିହା ଜାନୁଆରି ୧୯ ତାରିଖ ଦିନ କଂଗ୍ରେସ କାର୍ଯ୍ୟକାରୀ କମିଟିର ଅଧ୍ୟକ୍ଷ ପଦବୀ ପାଇଁ ନିର୍ବାଚନ ପାର୍ଲିଆମେଣ୍ଟର ଗମ୍ବୁଜାକୃତି ସେଣ୍ଟ୍ରାଲ୍ ହଲ୍‌ରେ ଅନୁଷ୍ଠିତ ହେଲା । ଭୋଟିଂ ପ୍ରକ୍ରିୟା ଥିଲା ଧୀର । ସେଭଳି ବନ୍ଧୁତ୍ୱପୂର୍ଣ୍ଣ ଏବଂ ସୌହାର୍ଦ୍ଦ୍ୟଭରା ଦିନମାନଙ୍କରେ ନିରାପତ୍ତା ବ୍ୟବସ୍ଥା କଥା ଶୁଣାନଥିଲା । ତେଣୁ ପାର୍ଲିଆମେଣ୍ଟ ବାହାରେ ଅସଂଖ୍ୟ ଲୋକ ଜମା ହୋଇଥିଲେ ।

ଆଶାନୁରୂପ ଫଳଭାବେ ମୋରାରଜୀଙ୍କ ୧୬୯ଟି ଭୋଟ ବିପକ୍ଷରେ ଇନ୍ଦିରା ୩୫୫ଟି ଭୋଟ୍ ପାଇ ଜିତିଲେ । ବାହାରେ ଜମା ହୋଇଥିବା ଜନତା ଆନନ୍ଦରେ ଚିତ୍କାର କରୁଥିଲେ, "ଇନ୍ଦିରା ଗାନ୍ଧି ଜିନ୍ଦାବାଦ, ଲାଲ ଗୁଲାବ ଜିନ୍ଦାବାଦ ।" ଦ୍ୱିତୀୟ ସ୍ଲୋଗାନ୍‌ଟି ଥିଲା ତାତ୍ପର୍ଯ୍ୟପୂର୍ଣ୍ଣ ଏବଂ ଭାବାବେଗସମ୍ପନ୍ନ । ପ୍ରାପ୍ତବୟସ୍କ ହେବାପରେ ନେହେରୁ ସଦାବେଳେ ତାଙ୍କ କୁର୍ତ୍ତାର ବୋତାମ କାଜରେ ନାଲି ଗୋଲାପଟିଏ ଲଗାଉଥିଲେ । ଇନ୍ଦିରାଙ୍କ ବିଜୟକୁ ଲୋକେ ଲାଲ ଗୋଲାପର ପ୍ରତ୍ୟାବର୍ତ୍ତନ ବୋଲି କହିବାକୁ ଲାଗିଲେ । ସାଧାରଣ ଜନତାଙ୍କ ସ୍ନେହ ସେଦିନ ଏମିତି ଅଜାଡ଼ି ହୋଇପଡ଼ିଥିଲା ଯେ ସେଇ ସ୍ଥାନରୁ ରାଷ୍ଟ୍ରପତି ଭବନ ପର୍ଯ୍ୟନ୍ତ ଗୋଟିଏ କିଲୋମିଟରରୁ କମ୍ ବାଟକୁ ଇନ୍ଦିରା ଅତି କଷ୍ଟରେ ସହ ଅତିକ୍ରମ କଲେ । ସେଠାରେ ରାଷ୍ଟ୍ରପତି ରାଧାକୃଷ୍ଣନ୍ ତାଙ୍କୁ ମନ୍ତ୍ରୀମଣ୍ଡଳ ଗଢ଼ିବାପାଇଁ ଆମନ୍ତ୍ରଣ ଜଣାଇଲେ । ରାଷ୍ଟ୍ରପତିଙ୍କ ଲିମୋସିନ୍ ତାଙ୍କୁ

ତାଙ୍କ ସରକାରୀ ବାସଭବନ ୧ ସଫଦରଜଙ୍ଗ ରୋଡ଼୍‌ରେ ଛାଡ଼ିଲା, ଯାହା କି ପ୍ରଧାନମନ୍ତ୍ରୀଙ୍କ ସରକାରୀ ବାସଭବନଭାବେ ପରିଚିତ ହେଲା ଏବଂ ସେଇ ବିଷାଦମୟ ସକାଳ ପର୍ଯ୍ୟନ୍ତ, ଯେଉଁ ସକାଳେ କି ତାଙ୍କ ସୁନ୍ଦର ବଗିଚାରେ ତାଙ୍କୁ ହତ୍ୟା କରାଗଲା, ତାହା ତାଙ୍କ ବାସଭବନ ହୋଇ ରହିଥିଲା । ଅସଂଖ୍ୟ ଜନତା ଏବଂ ବିଶ୍ୱବ୍ୟାପୀ ଗଣମାଧ୍ୟମର ପ୍ରାୟ ସମସ୍ତ ପ୍ରତିନିଧି ସେଦିନ ତାଙ୍କ ଘରେ ତାଙ୍କୁ ପ୍ରତୀକ୍ଷା କରି ରହିଥିଲେ । ପରେ ଏ ଘଟନାକ୍ରମକୁ ମନେପକାଇ ସେ କହିଥିଲେ ଯେ ସେଠାରେ ଛିଡ଼ାହୋଇ ଆନନ୍ଦରେ ଆତ୍ମହରା ହୋଇପଡ଼ିଥିବା ଜନସମୁଦ୍ରକୁ ଏକୁଟିଆ ଲକ୍ଷ୍ୟ କରୁଥିବାବେଳେ ସେ ପ୍ରଥମଥର ପାଇଁ ବୁଝିପାରିଥିଲେ "ଜନସମୁଦ୍ର ଭିତରେ ଏକୁଟିଆ" ହେବାର ଅର୍ଥ କ'ଣ ? ତାଙ୍କ ଦୁଇ ପୁତ୍ର ଦେଶ ବାହାରେ ଥିଲେ । ତାଙ୍କ ପରିବାରର ଅନ୍ୟ କୌଣସି ସଦସ୍ୟ ଉପସ୍ଥିତ ନଥିଲେ । ତାଙ୍କ ଅନୁଗତ ବ୍ୟକ୍ତିଗତ ସହକାରୀ ଏବଂ ସହାୟକବୃନ୍ଦ ସେଇ ଆନନ୍ଦମୁଖର ଜନସମୁଦ୍ରରେ ମିଶିଯାଇଥିଲେ ।

ସେଇ ସମୟରେ ଅସହାୟଭାବେ କ୍ଷୀଣ କଣ୍ଠରେ ସେ ମାଗିଲେ, "କେହି ମୋତେ ଗିଲାସେ ପାଣି ଦେବ କି ?"

## ଏକ ଅନିଶ୍ଚିତ ଆରମ୍ଭ

କ୍ଷମତା ରାଜନୀତିରେ ଇନ୍ଦିରାଙ୍କ ଉତ୍‌ଥାନ ଥିଲା ଦ୍ରୁତ ଏବଂ ଅଭୁତପୂର୍ବ । ତାଙ୍କର ବୟସ ଥିଲା ଅଠଚାଳିଶ ବର୍ଷ ଏବଂ ଉଭୟ ତାଙ୍କ ବାପା ବା ଶାସ୍ତ୍ରୀ ଯେଉଁ ବୟସରେ ପ୍ରଥମେ ପ୍ରଧାନମନ୍ତ୍ରୀ ଆସନ ଅଳଙ୍କୃତ କରିଥିଲେ, ତା ଠାରୁ ଦଶ ବର୍ଷ ସାନ । ତାଙ୍କର ପ୍ରଧାନମନ୍ତ୍ରୀତ୍ୱକୁ ସାରା ଦେଶ ଯେମିତି ସ୍ୱାଗତ ଜଣାଇଥିଲା ତାହା ଥିଲା ବାସ୍ତବରେ ହୃଦୟଭରା । କିନ୍ତୁ, ଯେଉଁ ସମୟରେ ସେ ଏହି ସମ୍ମାନ ହାସଲ କଲେ ସେଇ ସମୟଟି ଥିଲା ଏକ ସମସ୍ୟାଶଙ୍କୁଳ କାଳ ।

ତିନି ବର୍ଷ ଭିତରେ ଦୁଇଟି ଯୁଦ୍ଧ ଏବଂ ସେଇ କାଳଖଣ୍ଡର ଅଧାରୁ କମ୍ ସମୟ ଭିତରେ ଦୁଇ ଦୁଇ ଥର ନେତୃତ୍ୱ ପରିବର୍ତ୍ତନ ନୂତନ ରାଷ୍ଟ୍ରଭାବେ ଗଢ଼ିଉଠୁଥିବା ଏହି ବିଶାଳ ଦେଶ ପାଇଁ ଥିଲା ନିହାତିଭାବେ କ୍ଳାନ୍ତିକର । ୧୯୬୫ ଏବଂ ୧୯୬୬ ଦୁଇ ବର୍ଷ ବିଲ୍‌କୁଲ୍ ବର୍ଷା ନହେବା ଏହି ପରିସ୍ଥିତିକୁ ଆହୁରି ବହୁଗୁଣିତ କରିଦେଇଥାଏ । ଚାରିଆଡ଼େ ବ୍ୟାପକ ଶସ୍ୟହାନି ଘଟିଥାଏ । ବିଶେଷକରି ବିହାରରେ ଦୁର୍ଭିକ୍ଷର କରାଳ ଛାୟା ସମଗ୍ର ରାଜ୍ୟକୁ ଗ୍ରାସ କରିସାରିଥାଏ । ଦେଶର କୋଷାଗାରରେ ପଇସା ନଥାଏ, ଯାହାର ଅର୍ଥ ହେଲା ବିଶ୍ୱ ବଜାରରୁ ଖାଦ୍ୟଶସ୍ୟ କିଣାଯାଇ ପାରିବନାହିଁ । ଜନତା (ପବ୍ଲିକ୍)ଆଇନ ୪୮୦ ଅନୁସାରେ ଆମେରିକାରୁ ରିହାତି ଦରରେ ଖାଦ୍ୟଶସ୍ୟ ଆମଦାନୀ କରିବା ଉପରେ ଆମର ନିର୍ଭରଶୀଳତା ବଢ଼ିଯିବା ଏକ ସଂକଟମୟ ପରିସ୍ଥିତି ସୃଷ୍ଟି କରିଥାଏ । ଦରଦାମ୍ ବଢୁଥିବାରୁ ଜନ ଅସନ୍ତୋଷ ଯେତେବେଳେ ବଢୁଥାଏ, ସେତିକିବେଳେ ପରିସ୍ଥିତିକୁ ଆହୁରି ଜଟିଳ କରିଦେଇ ଆସିଲା ସାଧାରଣ ନିର୍ବାଚନ । ପଶ୍ଚିମବଙ୍ଗରେ ଖାଦ୍ୟ ଦଙ୍ଗା ଯୋଗୁଁ ସାମରିକ ସାହାଯ୍ୟ ନେବାର ଆବଶ୍ୟକତା ଆସିଯାଇଥାଏ ।

ଏଇ ପରିପ୍ରେକ୍ଷୀରେ ଇନ୍ଦିରା ଗାନ୍ଧି ପ୍ରଧାନମନ୍ତ୍ରୀ ହେବାର ମାସକ ପରେ ଜୟପୁର ଠାରେ ଅନୁଷ୍ଠିତ ହୋଇଥିବା ଏଆଇସିସି (ସର୍ବ ଭାରତୀୟ କଂଗ୍ରେସ କମିଟି)ର ଅଧିବେଶନରେ ଖାଦ୍ୟାଭାବର ପ୍ରସଙ୍ଗ ତାଙ୍କ ପାଇଁ ସ୍ୱାଭାବିକଭାବେ ଏକ ଅସ୍ୱସ୍ତିକର ପରିସ୍ଥିତି ସୃଷ୍ଟି କରିଥିଲା । ଏହାର କାରଣ ଥିଲା, ଅଧିକ ଖାଦ୍ୟଶସ୍ୟ ମହଜୁଦ କରି ରଖିଥିବା ରାଜ୍ୟଗୁଡ଼ିକ ଅଭାବଗ୍ରସ୍ତ ରାଜ୍ୟକୁ ଶସ୍ୟ ବିକିବାକୁ ମନା କରିଦେଇଥିଲେ । କିନ୍ତୁ, କେବଳ ଏତିକିରେ ଯେ କଥା ସରିଗଲା, ତାହା ନୁହେଁ ।

ସମ୍ବେଦନଶୀଳ ଉତ୍ତର ପୂର୍ବାଞ୍ଚଳରେ, ସେତେବେଳେ ଯାଏଁ ନାଗା ଅଞ୍ଚଳରେ ସୀମିତ ଥିବା ଜନଜାତି ବିଦ୍ରୋହ ମିଜୋମାନଙ୍କ ଅଞ୍ଚଳକୁ ବ୍ୟାପିଯାଇଥାଏ । ଶାସ୍ତ୍ରୀଙ୍କ ସମୟରେ ଦକ୍ଷିଣାଞ୍ଚଳରେ ହୋଇଥିବା ଭାଷା ଭିତ୍ତିକ ଆନ୍ଦୋଳନ, ଯାହାକୁ ନିର୍ବାପିତ କରିବାରେ ଇନ୍ଦିରା ମୁଖ୍ୟ ଭୂମିକା ତୁଲାଇଥିଲେ, ପୁଣି କୁହୁଳୁଥିଲା । ଅନେକ ଦିନ ଧରି ଚୁପ୍‌ଚାପ୍ ହୋଇ ପଡ଼ିରହିଥିବା ପଞ୍ଜାବୀ ଭାଷାଭିତ୍ତିକ ରାଜ୍ୟଗଠନ ପାଇଁ ଶିଖ୍‌ମାନଙ୍କ ଦାବି, ପଞ୍ଜାବୀ ଭାଷୀ କିଛି ହିନ୍ଦୁଙ୍କ ଅଯୌକ୍ତିକ ବିରୋଧ ସତ୍ତ୍ୱେ, ପୁଣି ମୁଣ୍ଡ ଟେକୁଥାଏ । ଏହି ଆନ୍ଦୋଳନର ସମ୍ମୁଖ ଭାଗରେ ଥିବା ନେତାମାନେ ୧୯୬୫ର ପାକିସ୍ତାନ ଯୁଦ୍ଧ ପରିପ୍ରେକ୍ଷୀରେ ବିବେକବୋଧର ପରିଚୟ ଦେଇ ଏହି ଆନ୍ଦୋଳନକୁ କିଛି ଦିନ ସ୍ଥଗିତ ରଖିବାକୁ ସ୍ଥିର କରିଥିଲେ । ଏହାର ଉତ୍ତରରେ ଶାସ୍ତ୍ରୀ ଇନ୍ଦିରାଙ୍କ ନେତୃତ୍ୱରେ ଏକ "କ୍ୟାବିନେଟ୍ କମିଟି" ଗଢ଼ି ଏ ବାବଦରେ ସୁପାରିଶ କରିବାପାଇଁ କହିଥିଲେ । ବର୍ତ୍ତମାନ ଇନ୍ଦିରାଙ୍କୁ ଏସବୁ କଣ୍ଟା ସହ ଯୁଝିବାକୁ ଥିଲା । ଏଥିପାଇଁ ସେ ଆଦୌ ସମୟ ନଷ୍ଟ କଲେନାହିଁ । ବେଶ୍ ଦମ୍ଭର ସହ ସେ ପଞ୍ଜାବୀ ଭାଷୀ ରାଜ୍ୟଗଠନକୁ ସ୍ୱୀକାର କଲେ ଏବଂ ଏଥିପାଇଁ ବେଶ୍ ପ୍ରଶଂସା ବି ହାସଲ କଲେ । କିନ୍ତୁ ରାଷ୍ଟ୍ରର ଶୋଚନୀୟ ଆର୍ଥିକ ପରିସ୍ଥିତି ଦୃଷ୍ଟିରୁ ବିଭିନ୍ନ ଯୋଜନା ପାଇଁ ବଜେଟ୍‌ରେ କମ୍ ଅର୍ଥର ବ୍ୟବସ୍ଥା ରଖିବା ଉପରୋକ୍ତ ସଫଳତାକୁ ଛାୟାଗ୍ରସ୍ତ କରିଦେଲା । ଦେଶର ବିକାଶ ପାଇଁ ଯୋଜନା ଆରମ୍ଭ ହେବା ପରଠାରୁ ଏଭଳି ଅର୍ଥ କାଟ ହେବା ଥିଲା ପ୍ରଥମ । ପରେ ଜଣେ ଅଗ୍ନିଗର୍ଭା ବକ୍ତାରେ ପରିଣତ ହୋଇଥିବା ଇନ୍ଦିରା ଆଶ୍ଚର୍ଯ୍ୟଜନକଭାବେ ପାର୍ଲିଆମେଣ୍ଟରେ ଥତମତ ହୋଇଯାଉଥିଲେ । ଏହାକୁ ଲକ୍ଷ୍ୟକରି ନେହେରୁଙ୍କ ସମାଲୋଚକ ରାମ ମନୋହର ଲୋହିଆ ତାଙ୍କୁ 'ଗୁଙ୍ଗି ଗୁଡ଼ିୟା' ବା "ମୂକ କଣେଇ" ବୋଲି ଡ଼ାକିବାକୁ ସୁଯୋଗ ପାଇଯାଇଥିଲେ । ବେଶ୍ କିଛିଦିନ ଧରି ଏହା ତାଙ୍କ ଡ଼ାକନାମ ହୋଇ ରହିଯାଇଥିଲା ।

ଏହି ହତାଶାମୟ ପରିବେଶରେ ସେ ଯୁକ୍ତରାଷ୍ଟ୍ର ଆମେରିକା ଯିବାକୁ ସ୍ଥିର କଲେ । ସେ ଯିବାର ଅତତଃପକ୍ଷେ ସପ୍ତାହକ ପୂର୍ବରୁ ମୁଁ ଆମେରିକା ଯିବାକୁ ଠିକ୍ କରି ତାଙ୍କ ସହ ସାକ୍ଷାତ କରିବାକୁ ଚାହିଁଲି । ଖୁବ୍ ସ୍ୱଚ୍ଛରେ ନିଜ ବକ୍ତବ୍ୟ ପ୍ରଦାନ କରୁଥିବା ଧାରାରେ ସେ ମୋତେ କହିଲେ, "ଏହାକୁ ଛାପିବ ନାହିଁ । କିନ୍ତୁ, ମୁଁ ଯାଉଛି ଆମେରିକାରୁ ଖାଦ୍ୟ ଏବଂ ଅର୍ଥ ସାହାଯ୍ୟ ମାଗିବାକୁ । କିନ୍ତୁ, ଏଭଳିଭାବେ ମୋତେ ମାଗିବାକୁ ହେବ ଯେମିତି ତାହା ବାହାରକୁ ଜଣା

ନପଡ଼େ ।" ଯିବାର ଅବ୍ୟବହିତ ପୂର୍ବରୁ ଏକ ସାଧାରଣ ଉଦ୍‌ବୋଧନ ଦେଇ ସେ କହିଥିଲେ ଯେ ଏହା ହେଉଛି ତାଙ୍କର "ସଦିଚ୍ଛାମୂଳକ ଯାତ୍ରା" ଏବଂ ସେ ଆମେରିକା ଠାରୁ କିଛି ଚାହାନ୍ତି ନାହିଁ । ମୋତେ ସେଦିନ ତାଙ୍କ ବ୍ୟକ୍ତିତ୍ୱର ଯେଉଁ ଝଲକ ଦେଖିବାକୁ ମିଳିଥିଲା, ତାହା ପରବର୍ତ୍ତୀ କାଳରେ ହୋଇଯାଇଥିଲା 'ଇନ୍ଦିରା ଷ୍ଟାଇଲ୍' । ଏହାର ଦ୍ୱିତୀୟ ଉଦାହରଣ ଥିଲା, ଏହି ଯାତ୍ରା ସମୟରେ ପ୍ୟାରିସ୍ ଠାରେ ଓହ୍ଲାଇବାର ନିଷ୍ପତ୍ତି । ଭାରତୀୟ ନେତାମାନଙ୍କ ପାରମ୍ପରିକ ରହଣି - ସ୍ଥଳ ଲଣ୍ଡନ୍‌ର ଏହା ଥିଲା ଏକ ବ୍ୟତିକ୍ରମ । ତାଙ୍କ ପୁତ୍ରଦ୍ୱୟ ଇଂଲିଶ ଚ୍ୟାନେଲ୍ ପାରିହୋଇ ତାଙ୍କୁ ଭେଟିବାକୁ ପ୍ୟାରିସ୍ ଆସିଲେ । ଏଇ ନିଷ୍ପତ୍ତି ପଛରେ ଥିଲା ଦୁଇଟି ସନ୍ଦେଶ । ପ୍ରଥମଟି ଥିଲା ଇଂଲଣ୍ଡର ପ୍ରଧାନମନ୍ତ୍ରୀ ହାରୋଲଡ୍ ଉଇଲ୍‌ସନ୍‌ଙ୍କୁ ଠିକଣା ଜବାବ ଦେବା । ଉଇଲ୍‌ସନ୍ ୧୯୬୫ ଯୁଦ୍ଧ ପାଇଁ ଭାରତକୁ ଦାୟୀ କରିଥିଲେ ଓ ପରେ ସଫେଇ ଦେଇଥିଲେ ଯେ ତାଙ୍କର ଜଣେ ପରାମର୍ଶଦାତା ତାଙ୍କୁ ଭୁଲ୍ ତଥ୍ୟ ଦେଇଥିଲେ । ଏବଂ ଦ୍ୱିତୀୟ କାରଣ ଥିଲା ଫ୍ରାନ୍‌ସ୍ ରାଷ୍ଟ୍ରପତି ଡି ଗଲଙ୍କ ସହ ସୌହାର୍ଦ୍ଦ୍ୟମୂଳକ ସାକ୍ଷାତକରି ତା ବାବଦରେ ସମସ୍ତଙ୍କୁ ଏକ ସନ୍ଦେଶ ଦେବା ଯେ ଡି ଗଲଙ୍କ ଫ୍ରାନ୍‌ସକୁ ନେଇ ଥିବା ସ୍ୱପ୍ନ ଭଳି ସେ ମଧ୍ୟ ଭାରତ ପାଇଁ ସ୍ୱପ୍ନ ଦେଖନ୍ତି । ଫ୍ରାନ୍‌ସ୍‌ରେ ତାଙ୍କ ସାକ୍ଷାତକାର ଏବଂ ତା ପରେ ଅନୁଷ୍ଠିତ ହୋଇଥିବା ଭୋଜିରେ ପ୍ରାଞ୍ଜଳ ଏବଂ ଶୁଦ୍ଧ ଫରାସୀ ଭାଷାରେ କଥାବାର୍ତ୍ତା କରି ସେ ସମସ୍ତଙ୍କୁ ମୋହିତ କରିଦେଇଥିଲେ ।

## ଆମେରିକା ସହ ମୁହାଁମୁହିଁ

ଆମେରିକା ଇନ୍ଦିରାଙ୍କ ପାଇଁ କିଛି ନୂଆ ନଥିଲା, ଯେଉଁଠିକୁ ଅନେକ ଥର ସେ ବାପାଙ୍କ ସହିତ ହେଉ ବା ନିଜେ ଏକାକୀ ହେଉ, ଅନେକ ଥର ଆସିଥିଲେ । ନ୍ୟୁୟର୍କର ଡ଼ରୋଥି ନର୍ମାନ୍‌ଙ୍କ ବାସଭବନରେ ସେ କଳା, ସଙ୍ଗୀତ, ସାହିତ୍ୟ ଏବଂ ବିଜ୍ଞାନ କ୍ଷେତ୍ରର ଅନେକ ପ୍ରସିଦ୍ଧ ପୁରୁଷ ଏବଂ ମହିଳାଙ୍କୁ ମଧ୍ୟ ଭେଟିଥିଲେ । ସେଇ ମହାନ୍ ବ୍ୟକ୍ତିତ୍ୱମାନଙ୍କ ଭିତରେ ଗୋଟିଏ ପଟେ ଥିଲେ ବକ୍‌ମିନିଷ୍ଟର୍ ଫୁଲର୍ ଏବଂ ଚାର୍ଲସ୍ ଏମ୍‌ସ୍ ତ ଅପର ପକ୍ଷରେ ଥିଲେ ବାର୍‌ବାରା କାର୍ଟ୍‌ଲାଣ୍ଡ୍ ଏବଂ ଆଲେନ୍ ଜିନ୍‌ସ୍‌ବର୍ଗ । କିନ୍ତୁ, ୧୯୬୬ ମସିହା ମାର୍ଚ୍ଚ ମାସର ସେଇ ଆମେରିକା ଭ୍ରମଣ ଥିଲା ଅଲଗା । ଏଥର ସେ ଥିଲେ ଜଣେ ପ୍ରଧାନମନ୍ତ୍ରୀ ଏବଂ ସେ ଆମେରିକାର ରାଷ୍ଟ୍ରପତି ଲିନ୍‌ଡ଼ନ୍ ଜନ୍‌ସନ୍‌ଙ୍କୁ ଭେଟିବାର କାର୍ଯ୍ୟକ୍ରମ ଥିଲା । ଦୁଇ ଦେଶର ପ୍ରମୁଖ ସମସ୍ୟା ଏବଂ ସ୍ୱାର୍ଥ ସମ୍ବଳିତ ଆଲୋଚନା "ଏଜେଣ୍ଡା"ରେ ଥିଲା ।

ସେମିତି ଦେଖିଲେ ଇନ୍ଦିରାଙ୍କ ଆମେରିକା ଯାତ୍ରା ଏକ ସଫଳ ଗସ୍ତ ଥିଲା ବୋଲି କହିହେବ । କିନ୍ତୁ, ଅସଲରେ ତାହା ଥିଲା ଏକ ବିଫଳତା । ଏହା ଅଲଗା କଥା ଯେ କିଛିଦିନ ପରେ ଯାଇ ବାସ୍ତବତାଟି ଭ୍ରାନ୍ତିକୁ ଅତିକ୍ରମ କରି ଆଗକୁ ଆସିଲା ।

ଆମେରିକାରେ ଗଣମାଧ୍ୟମର ଉତ୍ସାହପୂର୍ଣ୍ଣ ପ୍ରଚାର ଯାହା କି ଏହି ଗସ୍ତକୁ ରୂପ ଦେଇଥିଲା,ରାଷ୍ଟ୍ରପତି ଜନ୍‌ସନ୍‌ଙ୍କ ଭାଷଣ ଏବଂ ଇନ୍ଦିରାଙ୍କୁ "ଜଣେ ଉଦାତ୍ତ", "ସମର୍ଥ ଏବଂ

ସୁଶୀଳ ମହିଳା" ଭାବେ କରିଥିବା ବର୍ଣ୍ଣନା ତଥା ଭାରତକୁ ସବୁପ୍ରକାର ସାହାଯ୍ୟ ଦେବାର ପ୍ରତିଶ୍ରୁତି ଏହି ରୂପକୁ ଆହୁରି ଆକର୍ଷଣୀୟ କରିଥିଲା । ଏହି ଗସ୍ତ ଯୋଗୁଁ ସୃଷ୍ଟି ହୋଇଥିବା ଉଲ୍ଲାସ ଥଣ୍ଡା ପଡ଼ିଆସିଲା ବେଳକୁ ଜଣା ପଡ଼ିଯାଇଥିଲା ଯେ ଆମେରିକା ଯାହା ଅଳ୍ପ କିଛି ଦେବାକୁ ପ୍ରତିଶ୍ରୁତିବଦ୍ଧ ହୋଇଛି, ତା ପ୍ରତିବଦଳରେ ଇନ୍ଦିରା ଆମେରିକା ଆଗରେ ଖୁବ୍ ବେଶୀ ନଇଁ ପଡ଼ିଛନ୍ତି ।

ଆମେରିକା ପିଏଲ୍ ୪୮୦ ଧାରାରେ ଭାରତକୁ ଚାଉଳ ପଠାଇ ଯେଉଁ ପାଣ୍ଠି ସୃଷ୍ଟି କରିଥିଲା, ସେଇ ପାଣ୍ଠିର ଅର୍ଥରେ ଆମେରିକାର ଫୋର୍ଡ଼ ଫାଉଣ୍ଡେସନ୍‌ର ଦ୍ୱାରାରେ ଏକ ଇଣ୍ଡୋ-ଆମେରିକା ଶିକ୍ଷା ଫାଉଣ୍ଡେସନ୍ ତିଆରି କରିବାର ଆମେରିକାର ପ୍ରସ୍ତାବକୁ ଇନ୍ଦିରାଙ୍କ ସମ୍ମତି ବିରୋଧରେ ଭାରତୀୟ ଶିକ୍ଷାବିତ୍, ବିଦ୍ୱାନ ଏବଂ ଅଧ୍ୟାପକମାନଙ୍କ ପ୍ରବଳ ଯୁକ୍ତି ଥିଲା ଏହି ଯାତ୍ରା ପରର ପ୍ରଥମ ଝଡ଼ । ଏହା ହୋଇଥିଲେ ଆମେରିକା ନିଶ୍ଚିତ ପକ୍ଷରେ ଭାରତର ଉଚ୍ଚଶିକ୍ଷା କ୍ଷେତ୍ରରେ ଅଧିକ ହସ୍ତକ୍ଷେପ କରିବାପାଇଁ ସୁଯୋଗ ପାଇଥାନ୍ତା ।

ଘଟନାକ୍ରମେ ସେଇ ବୁଝାମଣାକୁ ନାକଚ କରିଦିଆଗଲା । ଦ୍ୱିତୀୟରେ ଭିଏତ୍‌ନାମ ଯୁଦ୍ଧକୁ ନେଇ ଆମେରିକାର ଭୂମିକାକୁ ସମାଲୋଚନା କରି ସରକାରୀ ବୟାନ ଦେବାରେ ପୂର୍ବର ଆକ୍ରମଣାତ୍ମକ ସ୍ୱର ନରମ ହେବା କଥା ସମସ୍ତେ ବାରି ପାରିଥିଲେ ଏବଂ ଭାରତକୁ ସମାଲୋଚନା କରାଯିବା ପାଇଁ ଏହା ମଧ ଏକ କାରଣ ହୋଇଥିଲା । ସମାଲୋଚକ ଜାଣିନଥିଲେ ଯେ ଜନ୍‌ସନ୍‌ଙ୍କ ସହ କଥାବାର୍ତ୍ତା ହେବାକୁ ଯିବା ପୂର୍ବରୁ ଇନ୍ଦିରା ତାଙ୍କ ମୁଖ୍ୟ ପରାମର୍ଶଦାତାମାନଙ୍କ ପରାମର୍ଶକୁ ଏଡ଼ାଇ ଦେଇ ତାଙ୍କୁ କହିଥିଲେ ଯେ ସେ "ଭିଏତ୍‌ନାମକୁ ନେଇ ଆମେରିକା ଭୋଗୁଥିବା ଯନ୍ତ୍ରଣାକୁ ସ୍ୱୟଂ ଅନୁଭବ କରିପାରୁଛନ୍ତି ।" ଏହାପରେ ସେ ଆଉ ଟିକିଏ ଆଗେଇ ଯାଇ ଘୋଷଣା କରିଥିଲେ ଯେ "ଆମେରିକାର କଷ୍ଟକୁ ଭାରତ ମଧ ଅନୁଭବ କରିପାରୁଛି ।" ଆମେରିକାରୁ ଫେରିବା ବାଟରେ ସେ ଆବିଷ୍କାର କରିଥିଲେ ଯେ ସେ ଯାହା ବି କରିଛନ୍ତି, ତାହା ମାତ୍ରାଧିକ ହୋଇଯାଇଛି । କାରଣ ଫେରିବାବେଳେ ମସ୍କୋରେ ରହିବାବେଳେ ହିଁ ରୁଷିଆର ପ୍ରଧାନମନ୍ତ୍ରୀ କୋସିଜିନ୍ ତାଙ୍କୁ ଜଣାଇ ଦେଇଥିଲେ ଯେ ଇନ୍ଦିରାଙ୍କ ଭିଏତ୍‌ନାମ ସମ୍ପର୍କିତ ବକ୍ତବ୍ୟକୁ ଗ୍ରହଣ କରିବାରେ ତାଙ୍କୁ ଅସୁବିଧା ହେଉଛି । ଅର୍ଥନୀତି ସଂକ୍ରାନ୍ତୀୟ ବୁଝାମଣା ହେଉଛି ଆଉ ଏକ ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ର ଯେଉଁଥିରେ କି ସମସ୍ୟା ସୃଷ୍ଟି ହେବାରେ ଲାଗିଥିଲା । ଅନୁଭବର ଅଭାବ ସତ୍ତ୍ୱେ ଇନ୍ଦିରା ସେତେବେଳେ ବି ଥିଲେ ଜଣେ ଚରମ ବାସ୍ତବବାଦୀ, ଯାହା କି ପରେ ତାଙ୍କର ଏକ ପ୍ରସିଦ୍ଧ ଗୁଣଭାବେ ପରିଗଣିତ ହେଲା । ସେ ଜାଣିଥିଲେ ଯେ ୧୯୬୫ ମସିହାରେ ଯୁଦ୍ଧବେଳେ ଆମେରିକା ଦ୍ୱାରା ଜାରି କରାଯାଇଥିବା ଅର୍ଥନୈତିକ ବାସନ୍ଦ ବ୍ୟବସ୍ଥାର ପରିଣତି ଥିଲା ବିଷମ ଏବଂ ବିଶ୍ୱ ବ୍ୟାଙ୍କ୍ ତଥା ଆନ୍ତର୍ଜାତିକ ମୁଦ୍ରା ପାଣ୍ଠିର ଦାବିକୁ ମାନିନେଇ ହିଁ ଏହି ପରିସ୍ଥିତିରୁ ମୁକୁଳି ହେବ । ତେଣୁ ସେ ବାଧହୋଇ ଏଭଳି କିଛି ବ୍ୟବସ୍ଥା ପ୍ରଣୟନ କରିବାକୁ ରାଜି ହୋଇଗଲେ, ଯାହାକୁ ଏକଦା ଶାସ୍ତ୍ରୀ ପ୍ରଚଳନ କରିବାକୁ ଇଚ୍ଛା କରୁଥିଲାବେଳେ ସେ ନିଜେ ଘୋର ବିରୋଧ କରିଥିଲେ ।

## ମୂଲ୍ୟହ୍ରାସ ବୋମା

ଏବଂ ସେତିକିବେଳେ ହଠାତ୍ ଜନ୍‌ସନ୍ - ଇନ୍ଦିରା କଥାବାର୍ତ୍ତା ସମୟରେ ନିଆଯାଇଥିବା ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି, ଯାହାକୁ ଉଭୟ ପକ୍ଷ ଗୁପ୍ତ ରଖିଥିଲେ, ହଠାତ୍ ଗୋଟିଏ ବୋମା ଭଳି ବାହାରକୁ ଫୁଟିଲା । ୧୯୬୬ ମସିହା, ଜୁନ୍ ମାସ ୫ ତାରିଖ ସଂଧ୍ୟାରେ ଭାରତ ସରକାର ଟଙ୍କାର ମୂଲ୍ୟ ପଇଁତିରିଶ ପ୍ରତିଶତ ହ୍ରାସ କରିଦେଲେ । ଏହା ବିପକ୍ଷରେ ସାଧାରଣରେ ଯେଉଁ ଅଭୂତପୂର୍ବ ପ୍ରତିକ୍ରିୟା ସୃଷ୍ଟିହେଲା, ତହିଁରେ ନିଜେ ଇନ୍ଦିରା ବି ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ଚୀନ ଅନୁପ୍ରବେଶ ସମୟକୁ ଛାଡ଼ିଦେଲେ ଏହା ପୂର୍ବରୁ ଏମିତି ଜନମତ କେବେ ସୃଷ୍ଟି ହୋଇନଥିଲା । ଏହାକୁ ଆହୁରି ଜଟିଳକରି କାମରାଜ ଭାରତୀୟ ନେତୃତ୍ୱକୁ ନିନ୍ଦାକରି ଲାଞ୍ଛନା ଦେଲେ ଯେ ଏହି ମୂଲ୍ୟ ହ୍ରାସ ହେଉଛି "ଆମେରିକାର ଆଦେଶ ଆଗରେ ସମ୍ପୂର୍ଣ୍ଣ ଆତ୍ମସମର୍ପଣ ।"

ସେ ଏମିତି କ୍ଷୁବ୍ଧ ହୋଇଥିଲେ ଯେ ଇନ୍ଦିରାଙ୍କୁ ଶାସନ ଡ଼ୋରି ସମ୍ଭାଳିବାକୁ ଦେବା ତାଙ୍କର ଏକ ଭୁଲ୍ ଥିଲା ବୋଲି କହିବାକୁ ପଛାଇଲେ ନାହିଁ । "ଜଣେ ବଡ଼ ଲୋକର ଝିଅ, ଜଣେ ଛୋଟ (ଗୌଣ) ଲୋକର ଭୁଲ"; ଏଇଆ ଥିଲା ଅବିକଳ ଶବ୍ଦାବଳୀ । ତାଙ୍କ ଆଦେଶାନୁସାରେ କଂଗ୍ରେସ କାର୍ଯ୍ୟକାରୀ କମିଟି ନିଜ ଦଳର ସରକାର ବିରୋଧରେ ଏକ ପ୍ରସ୍ତାବ ଆଣି ଏକ ଇତିହାସ ରଚନା କଲା । କିନ୍ତୁ ସାତ ମାସ ପରେ ନିର୍ବାଚନ ଥିବାରୁ ସେଇଠାରେ ଏବଂ ତତ୍କ୍ଷଣାତ୍ "ଇନ୍ଦିରା ହଟାଓ" ଅଭିଯାନ ଆରମ୍ଭ କରିବାରୁ ସେ କ୍ଷାନ୍ତ ହେଲେ । କିନ୍ତୁ, ମୋରାରଜୀଙ୍କ ଆନନ୍ଦକୁ ବହୁଗୁଣିତ କରି ସେ ସ୍ପଷ୍ଟ କରିଦେଲେ ଯେ ୧୯୬୭ର ନିର୍ବାଚନରେ କଂଗ୍ରେସ ସରକାର ଗଢ଼ିଲେ, ଇନ୍ଦିରାଙ୍କ ପୁଣି ପ୍ରଧାନମନ୍ତ୍ରୀ ହେବାର ସମ୍ଭାବନାକୁ ଆଉ "ନିଶ୍ଚିତ ବୋଲି କହିହେବ ନାହିଁ ।"

ବିଡ଼ମ୍ବନା ଏୟା ଥିଲା ଯେ ବହୁ ଦିନରୁ ଯୋଜନାରେ ସାମିଲ ଥିବା ଏବଂ ଯେ କେହି ବି ପ୍ରଧାନମନ୍ତ୍ରୀ ଥିଲାବେଳେ ଘଟିତ ହେବାର ସମ୍ଭାବନା ଥିବା ଏକ ନିଷ୍ପତ୍ତିର ଦୋଷ ଇନ୍ଦିରା ମୁଣ୍ଡାଇଲେ । ଶାସ୍ତ୍ରୀଙ୍କ ଦୁଇ ପ୍ରମୁଖ ଉପଦେଷ୍ଟା ବି.କେ. ନେହେରୁ - ଯେ କି ଆମେରିକା ପାଇଁ ଭାରତର ରାଷ୍ଟ୍ରଦୂତ ଥିବା ସହିତ ଯାହାଙ୍କର ଅର୍ଥନୈତିକ ପ୍ରଶାସନରେ ଥିଲା ଅନେକ ଅଭିଜ୍ଞତା- ଏବଂ ଏଲ୍.କେ. ଝା - ଅର୍ଥନୈତିକ ବ୍ୟାପାର ସଚିବ ଏବଂ ଶାସ୍ତ୍ରୀଙ୍କ ଦ୍ୱାରା ବଛା ହୋଇଥିବା ପ୍ରଧାନମନ୍ତ୍ରୀଙ୍କ କାର୍ଯ୍ୟାଳୟର ମୁଖ୍ୟ ; ଏ ଦୁହିଁଙ୍କୁ ଇନ୍ଦିରା ଉତ୍ତରାଧିକାର ସୂତ୍ରରେ ପାଇଥିଲେ ଏବଂ ସେମାନେ ଥିଲେ ଟଙ୍କାର ମୂଲ୍ୟ ହ୍ରାସ କରିବା ସପକ୍ଷରେ ପ୍ରମୁଖ ପ୍ରବକ୍ତା । ଶାସ୍ତ୍ରୀ ଏ ଦୁହିଁଙ୍କ ପରାମର୍ଶ ଗ୍ରହଣ କରିବାପାଇଁ ସମ୍ପୂର୍ଣ୍ଣଭାବେ ପ୍ରସ୍ତୁତ ଥିଲେ ଏବଂ ତତ୍କାଳୀନ ଅର୍ଥ ମନ୍ତ୍ରୀ ଟିଟିକେ ଏହାର ବିରୋଧ କରିବାରୁ ଶାସ୍ତ୍ରୀ ତାଙ୍କୁ ପଦରୁ ହଟାଇ ତାସ୍‌କେଣ୍ଟ୍ ଅଭିମୁଖେ ଯାତ୍ରା କରିଥିଲେ । ଶାସ୍ତ୍ରୀଙ୍କ ପରେ ଯେତେବେଳେ ଦାୟିତ୍ୱ ଆସି ଇନ୍ଦିରାଙ୍କ କୋଳରେ ପଡ଼ିଲା, ସେତିକିବେଳେ ସି.ସୁବ୍ରମଣ୍ୟମ ଏବଂ ଅଶୋକ ମେହେଟ୍ଟା ନାମକ ଦୁଇ ମନ୍ତ୍ରୀ ଝା ଏବଂ ବିକେ ନେହେରୁଙ୍କ ସହିତ ମିଶି ଏହି ମୂଲ୍ୟହ୍ରାସ ପ୍ରସ୍ତାବକୁ ଗଭୀରଭାବେ ସମର୍ଥନ ଜଣାଇଲେ ।

ଟଙ୍କାର ମୂଲ୍ୟହ୍ରାସ ପରେ ଇନ୍ଦିରାଙ୍କ ଉପରେ ଯେଉଁଭଳି ଆକ୍ରମଣ ଚାଲିଲା, ତାର ଗୋଟିଏ ଅନାହୂତ ଫଳ ମିଳିଲା ଯେ ସେ ଆଉ "ମୂକ" ହୋଇ ରହିଲେ ନାହିଁ । ଲାଜୁଆ ସ୍ୱଭାବକୁ କାଟି ସେ ତାଙ୍କ ସମାଲୋଚକମାନଙ୍କ ଉପରେ ସମାନ ପରାକ୍ରମରେ ପ୍ରତିଆକ୍ରମଣ ଚଳାଇଲେ । ସେ ଏବଂ ଫିରୋଜ ଯେତେବେଳେ ଇଂଲଣ୍ଡରେ ରହୁଥିଲେ, ସେତିକିବେଳେ ନେହେରୁଙ୍କ ବନ୍ଧୁ ତଥା ଇନ୍ଦିରାଙ୍କ ଦିଗ୍‌ଦର୍ଶକ ଭି କୃଷ୍ଣମେନନ୍ ଦେଇଥିବା କିଛି ମନ୍ତବ୍ୟ ତାଙ୍କୁ ଗଭୀରଭାବେ ବ୍ୟଥିତ କରିଥିଲା । ସେହିଭଳି ବାରମ୍ବାର ଦିଆଯାଉଥିବା ମନ୍ତବ୍ୟ ଯେ "ଶାସ୍ତ୍ରୀଙ୍କ ପରି ସେ ମଧ୍ୟ ନେହେରୁଙ୍କ ନୀତିକୁ ଛାଡ଼ି ଦେଇଛନ୍ତି"ର ଉତ୍ତରରେ ଇନ୍ଦିରା ଚଢ଼ା ସ୍ୱରରେ କହିଲେ : ଜବାହରଲାଲ ନେହେରୁ ଏ ରାଷ୍ଟ୍ରର ନେତା ଥିଲେ । କିନ୍ତୁ ସେ ମଧ୍ୟ ଥିଲେ ମୋ ପିତା ଏବଂ ମୋ ସାଥୀ । ତାଙ୍କ ନୀତିକୁ ନେଇ ମୁଁ ବଢ଼ିଛି । ମୁଁ ନିଶ୍ଚିତ ଯେ ମୁଁ ତାଙ୍କ ଆଦର୍ଶ ଏବଂ ନିୟମରୁ ବିଚ୍ୟୁତ ହେଉନାହିଁ । କିନ୍ତୁ, ଯଦି ବି କେବେ ଦେଶପାଇଁ ତାକୁ ପରିତ୍ୟାଗ କରିବାକୁ ପଡ଼େ, ତେବେ ମୁଁ ତାହା ମଧ୍ୟ କରିବି (ଉମା ବାସୁଦେବଙ୍କ ଇନ୍ଦିରା ଗାନ୍ଧି : କରେଜ୍ ଅଣ୍ଡର୍ ଫାୟାର, ରୂପା, ୨୦୦୩ ଦ୍ରଷ୍ଟବ୍ୟ) ।

## ବାମ ଆଡ଼କୁ ବଦଳ

ସର୍ବ ସମକ୍ଷରେ ଇନ୍ଦିରା ଟଙ୍କାର ମୂଲ୍ୟହ୍ରାସ ଏବଂ ତତ୍କାଳୀନ ଅର୍ଥନୈତିକ ନୀତିକୁ ସମର୍ଥନ କରୁଥିଲେ ମଧ୍ୟ ମନେ ମନେ ସେ ଏସବୁ ନୀତିର ପୁନଃ ସମୀକ୍ଷା କରୁଥିଲେ । ଟଙ୍କାର ମୂଲ୍ୟହ୍ରାସ ନୀତିକୁ ନେଇ ସେ ଏବେ ଜାଣିପାରୁଥିଲେ ଯେ ତାଙ୍କୁ ବୋକା ବନେଇ ଦିଆଯାଇଛି । ତେଣୁ, ସେ ଝା, ସୁବ୍ରମଣ୍ୟମ ଏବଂ ଅଶୋକ ମେହେଟ୍ଟା ; ଏଇ ତ୍ରିମୂର୍ତ୍ତିଙ୍କୁ ଜଗିରଖି ଚଳିବା ଆରମ୍ଭ କରିଦେଲେ । ଖୁବ୍ ଶୀଘ୍ର ଏଇ ତିନିଜଣ ତାଙ୍କ ଅବିଶ୍ୱାସଜନିତ ଶୀତଳ ବିସ୍ଫୋରଣର ସମ୍ମୁଖୀନ ହେବାକୁ ଲାଗିଲେ । ପୁଣି ଥରେ ସେ ଟିକିଏ ବାମ ଆଡ଼କୁ ଢ଼ଳିଯାଇ ନେହେରୁଙ୍କ ଦ୍ୱାରା ଅନୁସୃତ ଏକ ଈଷତ୍ ରେଡ଼ିକାଲ୍ ବା ଚରମବାଦୀ ଭାବମୂର୍ତ୍ତିକୁ ସର୍ବସମକ୍ଷରେ ଥୋଇବାକୁ ପ୍ରଚେଷ୍ଟା କଲେ । ଏହି ବଦଳ ପ୍ରକ୍ରିୟାକୁ ସାହାଯ୍ୟ କଲେ ଲିନ୍‌ଡ଼ନ୍ ଜନ୍‌ସନ୍ । କାରଣ ଭିଏତ୍‌ନାମର ହାନୋଇ ଏବଂ ହାଇଫଙ୍ଗ୍ ଉପରେ ଆମେରିକା ବୋମାମାଡ଼ ବନ୍ଦ କରୁ ବୋଲି ପୁରୁଣା ଭାରତୀୟ ଦାବିକୁ ତାଙ୍କ ତ୍ରି ରାଷ୍ଟ୍ରୀୟ (ଇଜିପ୍ଟ, ଯୁଗୋସ୍ଲୋଭିଆ ଏବଂ ରୁଷିଆ) ଗସ୍ତବେଳେ ଇନ୍ଦିରା ପୁଣି ଦୋହରାଇ ଦେବାରୁ ଆମେରିକାର ହ୍ୱାଇଟ୍ ହାଉସ୍‌ରେ ସେଇ "ଟେକ୍‌ସାନ୍ ରାଷ୍ଟ୍ରପତି"ଙ୍କ ରାଗ ପୂରା ଛାତ ଛୁଇଁଗଲା ।

ଏହାର ପ୍ରତିକ୍ରିୟା ସ୍ୱରୂପ ଜନ୍‌ସନ୍ ଆମେରିକା, ଭାରତକୁ ପଠାଉଥିବା ଖାଦ୍ୟଶସ୍ୟ ଉପରେ ଏଭଳି କଟକଣା ଲଗାଇଲେ ଯେ ଭାରତର ଅବସ୍ଥା ପ୍ରାୟ ବାହାରୁ ଆସିଲେ "ହାଣ୍ଡିରେ ପଶିବା"ଭଳି ହୋଇଗଲା ଏବଂ ଖାଦ୍ୟର ପ୍ରତିଟି ଦାନା ହଜମ କରିବା ସମୟରେ ଭାରତକୁ କିଛି ଅପମାନ ମଧ୍ୟ ହଜମ କରିବାକୁ ପଡ଼ିଲା । ଯେତେବେଳେ ଭାରତରେ ଅବସ୍ଥାପିତ ତତ୍କାଳୀନ

ଆମେରିକୀୟ ରାଷ୍ଟ୍ରଦୂତ ଚେଷ୍ଟର୍ ବୋଲ୍ସ୍ ତାଙ୍କ ରାଷ୍ଟ୍ରପତିଙ୍କୁ ଜଣାଇଲେ ଯେ ଭାରତର ମନ୍ତବ୍ୟ ପୋପ୍ ଏବଂ ଜାତିସଂଘର ସେକ୍ରେଟାରୀ ଜେନେରାଲ୍‌ଙ୍କ ମନ୍ତବ୍ୟର ପ୍ରତିଧ୍ୱନୀ ମାତ୍ର, ସେତେବେଳେ ଜନ୍‌ସନ୍ ଚାପା ଗର୍ଜନ କରି କହିଥିଲେ, "ପୋପ୍ ଏବଂ ୟୁ ଥାନ୍‌ଟ୍ ଆମର ଗହମ ଚାହାନ୍ତି ନାହିଁ ।" ଏହାପରେ ଇନ୍ଦିରା, ଆମେରିକୀୟ ଖାଦ୍ୟ ଗ୍ରହଣ କରିବାକୁ ମନା କରନ୍ତୁ ବୋଲି ତାଙ୍କ କିଛି ସମାଲୋଚକ ଦାବି କରିବାକୁ ଲାଗିଲେ । ଏହି ପରିପ୍ରେକ୍ଷୀରେ ପୁଣି ଥରେ ଇନ୍ଦିରାଙ୍କ ସର୍ବସାଧାରଣରେ ଦେଇଥିବା ମନ୍ତବ୍ୟ ଏବଂ ନିଜର ବ୍ୟକ୍ତିଗତ ପ୍ରତିକ୍ରିୟା ଭିନ୍ନ ହୋଇଥିଲା । ସର୍ବସାଧାରଣରେ ସେ ଯାହା କହିଥିଲେ ତାହା ହେଉଛି, "ଯଦି ଖାଦ୍ୟ ଆମଦାନୀ ବନ୍ଦ ହୋଇଯାଏ, ତେବେ ଏହି ସମାଲୋଚକ ଭଦ୍ରବ୍ୟକ୍ତି ଓ ମହିଳାମାନେ ଉପାସରେ ରହିବେନାହିଁ, ଉପାସରେ ରହିବେ ଭାରତର ଲକ୍ଷଲକ୍ଷ ସାଧାରଣ ଜନତା ।"

ଏକାନ୍ତରେ ସେ କିନ୍ତୁ ପ୍ରତିଜ୍ଞା କରିଥିଲେ ଯେ ଏଣିକି ସେ ନିଜ ଦେଶକୁ ଏଭଳି ଅପମାନଜନକ ସ୍ଥିତିରେ କଦାପି ପକାଇବେନାହିଁ । ସେ ଥିଲେ ନିଜ କଥାର ପକ୍କା । କାରଣ, ଭାରତକୁ ସେ ହିଁ ଆଣିଲେ ସବୁଜ ବିପ୍ଳବ ଏବଂ ଏ କଥା ନିଶ୍ଚିତ କଲେ ଯେ ଭାରତ କେବଳ ନିଜକୁ ଖୁଆଇବ ନାହିଁ, ଖାଇସାରିବା ପରେ ବଳକା ଖାଦ୍ୟକୁ ବାହାରକୁ ରପ୍ତାନି କରିବ । ଏହା ନିଶ୍ଚିତ ପକ୍ଷେ ସବୁ ସମୟ ପାଇଁ ଏକ ପ୍ରଶଂସାଯୋଗ୍ୟ ସଫଳତା ହୋଇ ରହିଥିବ ।

ଇତିମଧ୍ୟରେ ଜନ୍‌ସନ୍ ଭାରତକୁ ଯେଉଁ ନବେକୋଟି ଡ଼ଲାର୍‌ର ଆର୍ଥିକ ସାହାଯ୍ୟ ଦେବାର ପ୍ରତିଶ୍ରୁତି ଦେଇଥିଲେ, ତହିଁରୁ ବି ଓହରି ଯାଉଥିଲେ ଏବଂ ଏଥିରେ ଇନ୍ଦିରାଙ୍କ ତିକ୍ତ ମନ୍ତବ୍ୟ ଥିଲା, "'ଯଦି' କିମ୍ୱା 'କିନ୍ତୁ'" ନଥାଇ ସହାୟତା ଦେବାକୁ ଆମକୁ ପ୍ରତିଶ୍ରୁତି ଦିଆଯାଇଥିଲା । ହେଲେ, ଏବେ ସହାୟତା ନାହିଁ, ଅଛି କେବଳ 'ଯଦି' ଓ 'କିନ୍ତୁ' ।

୧୯୬୬ ମସିହା ନଭେମ୍ୱରରେ, ଯେତେବେଳେ ଇନ୍ଦିରା କିଛି ଉତ୍ସର୍ଗୀକୃତ କୃଷିବିଜ୍ଞାନୀମାନଙ୍କ ସହାୟତାରେ ସବୁଜ ବିପ୍ଳବର ଆରମ୍ଭ ନିମନ୍ତେ ବ୍ୟସ୍ତ ଥିଲେ, ସେତିକିବେଳେ ହିନ୍ଦୁ ମୌଳବାଦୀମାନେ ଏହି ପରିସ୍ଥିତିରୁ ଫାଇଦା ଉଠାଇବା ପାଇଁ ନିର୍ବାଚନରେ ଗଭୀରଭାବେ ସମ୍ବେଦନଶୀଳ "ଗୋ ହତ୍ୟା" ପ୍ରସଙ୍ଗକୁ ଉଠାଇ ଏହା ସମ୍ପୂର୍ଣ୍ଣଭାବେ ନିଷେଧ କରିବାକୁ ସେମାନଙ୍କ ଦାବିକୁ ନେଇ ପାର୍ଲିଆମେଣ୍ଟ୍ ଦ୍ୱାର ଯାଏ ଆସିଯାଇଥିଲେ । ଗୋଟିଏ ସାଧୁମାନଙ୍କ ଶୋଭାଯାତ୍ରା, ସେମାନଙ୍କ ଭିତରୁ କିଛି ଉଲଗ୍ନ ମଧ୍ୟ, ହଠାତ୍ ଦଙ୍ଗାରେ ବ୍ୟାପୃତହୋଇ ଏଭଳିଭାବେ ଲୁଟତରାଜ ଏବଂ ହିଂସାକାଣ୍ଡ ଭିଆଇଲେ ଯେ ତହିଁରେ ସାତଜଣଙ୍କ ମୃତ୍ୟୁ ହୋଇଗଲା । ଏଥିରେ 'ଗାଈ'ମାନଙ୍କ ପ୍ରସଙ୍ଗର କିଛି ହେଉ କି ନ ହେଉ ଇନ୍ଦିରା ଏଇ ରକ୍ତପାତ ପରେ ପ୍ରଭାବହୀନ କିନ୍ତୁ ସମସ୍ୟା ସୃଷ୍ଟିକାରୀ ଗୃହମନ୍ତ୍ରୀ ତଥା ସାଧୁମାନଙ୍କ ପୃଷ୍ଠପୋଷକ ଗୁଲ୍‌ଜାରିଲାଲ ନନ୍ଦାଙ୍କୁ ବିଦା କରିଦେଲେ । ନନ୍ଦାଙ୍କ ପ୍ରସିଦ୍ଧିର ଏକମାତ୍ର କାରଣ ଥିଲା ଏୟା ଯେ ଉଭୟ ନେହେରୁ ଏବଂ ଶାସ୍ତ୍ରୀଙ୍କ ମୃତ୍ୟୁପରେ ସେ ଅଳ୍ପ କିଛି ଦିନ ପାଇଁ କାମଚଳା ପ୍ରଧାନମନ୍ତ୍ରୀ ଦାୟିତ୍ୱ ନେଇଥିଲେ । ନନ୍ଦା ସଙ୍ଗେ ସଙ୍ଗେ କାମରାଜଙ୍କ ପାଖକୁ ଦୌଡ଼ିଲେ ଏବଂ ଅଭିଯୋଗ କଲେ ଯେ ତାଙ୍କୁ ଗୋଟିଏ 'ବଧ ଯୋଗ୍ୟ

ଛେଳି'ରେ ପରିଣତ କରିଦିଆଯାଇଛି । କିନ୍ତୁ, କାମରାଜ ଏବଂ ତାଙ୍କ ଅନୁଗାମୀମାନେ ଇନ୍ଦିରାଙ୍କ ପଦକ୍ଷେପକୁ ସ୍ୱାଗତ କରୁଥିଲେ । କିନ୍ତୁ ଅନ୍ୟପଟେ, ଅର୍ଥମନ୍ତ୍ରୀ ସଚ୍ଚିନ୍ ଚୌଧୁରୀ ଏବଂ ବିଦେଶ ବ୍ୟାପାର ମନ୍ତ୍ରୀ ମନୁଭାଇ ଶାହଙ୍କୁ ବିଦା କରିବାର ଇନ୍ଦିରାଙ୍କ ନିଷ୍ପତ୍ତିକୁ ସେମାନଙ୍କ ଭିଟୋ ଦ୍ୱାରା ଅକାମୀ କରିଦେଇ ଆପଣା କର୍ତ୍ତୃତ୍ୱ ଦେଖାଇବାକୁ ମଧ୍ୟ ସେମାନେ ପଛାଇନଥିଲେ । ଭବିଷ୍ୟତରେ କିନ୍ତୁ, ଆହୁରି ଖରାପ ପରିସ୍ଥିତି ସୃଷ୍ଟି ହେବାକୁ ବାକିଥିଲା ।

ନିର୍ବାଚନରେ  କଂଗ୍ରେସ ପ୍ରାର୍ଥୀ ବାଛିବାକୁ ଯାଇ ସିଣ୍ଡିକେଟ୍ ଇନ୍ଦିରାଙ୍କ ମତ ବା ଇଚ୍ଛାକୁ ଆଦୌ ଗୁରୁତ୍ୱ ଦେଲାନାହିଁ । କୃଷ୍ଣମେନନ୍‌କୁ "ସମସ୍ତ ଭୁଲ୍ ସତ୍ତ୍ୱେ" ତାଙ୍କ ପାରମ୍ପରିକ ଆସନରେ ଲଢ଼ିବାକୁ ସୁଯୋଗ ଦିଆଯାଉ ବୋଲି ଇନ୍ଦିରାଙ୍କର ଅତି ସରଳ ଅନୁରୋଧକୁ ବି ସିଣ୍ଡିକେଟ୍ ରକ୍ଷା କରିବାକୁ ଉଚିତ୍ ମଣିଲାନାହିଁ । ଅନେକ କଂଗ୍ରେସ କର୍ମୀ ପ୍ରଧାନମନ୍ତ୍ରୀଙ୍କ ପ୍ରତି ଆନୁଗତ୍ୟ ପ୍ରକାଶକରି ଦଳର ମୁଖିଆମାନଙ୍କ ଅସନ୍ତୋଷର ଶିକାର ହେଲେ ଏବଂ ପ୍ରାର୍ଥୀତ୍ୱ ଦୌଡ଼ରୁ ବାଦ୍ ପଡ଼ିଲେ । ସିଣ୍ଡିକେଟ୍ ଦ୍ୱାରା ନିର୍ବାଚନ ପାଣ୍ଠିରୁ ନିର୍ବାଚନ ଖର୍ଚ୍ଚ ବଣ୍ଟାଗଲାବେଳେ ପ୍ରାର୍ଥୀମାନଙ୍କୁ ବିଦ୍ୱେଷମୂଳକଭାବେ ପାତରଅନ୍ତର କରାଯିବା ବେଶ୍ ସ୍ପଷ୍ଟଭାବେ ଜଣାପଡ଼ିଯାଉଥିଲା ।

ଏହାଦ୍ୱାରା ହତାଶା ଜର୍ଜରିତ କିନ୍ତୁ ଅବିଚଳିତ ଇନ୍ଦିରା ବୁଝିପାରୁଥିଲେ ଯେ ତିଷ୍ଠି ରହିବାପାଇଁ ଏକ ରାଜନୈତିକ ସଂଘର୍ଷ ତାଙ୍କୁ ଅପେକ୍ଷାକରି ରହିଛି । ସେ ଜାଣିପାରିଥିଲେ ଯେ ଏକଦା ପରସ୍ପରର ଶତ୍ରୁ ରହିଥିବା ସିଣ୍ଡିକେଟ୍ ଏବଂ ଦେଶାଇ ତାଙ୍କୁ କ୍ଷମତାଚ୍ୟୁତ କରିବାପାଇଁ ଏକାଠି ହୋଇଯାଇଛନ୍ତି । ପରିସ୍ଥିତିକୁ ପାଲଟେଇ ଦେବାପାଇଁ ବଦ୍ଧପରିକର ହୋଇଥିବା ଇନ୍ଦିରା ୧୯୬୬ ମସିହା ଖ୍ରୀଷ୍ଟ୍‌ମାସ୍ ଦିନ ଅର୍ଥାତ୍ ସେ ପ୍ରଧାନମନ୍ତ୍ରୀ ହେବାର ଏଗାର ମାସ ପୂର୍ତ୍ତି ଦିନ, ତାଙ୍କ ଯୋଜନାକୁ ପ୍ରକାଶ୍ୟକୁ ଆଣିଲେ । ଗୋଟିଏ ସାମ୍ବାଦିକ ସମ୍ମିଳନୀରେ ସେ ହାଲୁକାଭାବରେ କହିଲେ, "କାହାକୁ ଦଳ ଚାହେଁ ଏବଂ କାହାକୁ ଲୋକେ ଚାହାନ୍ତି ; ଏହା ହିଁ ପ୍ରଶ୍ନ । ଜନତାଙ୍କ ଭିତରେ ମୋ ସ୍ଥାନ ଅନିର୍ବଚନୀୟ ।" ତାଙ୍କ ସନ୍ଦେଶ ସ୍ପଷ୍ଟ ଥିଲା । ପାର୍ଟି ମୁଖିଆମାନଙ୍କ ମୁଣ୍ଡଉପର ଦେଇ ସେ ସାଧାରଣ ଜନତାଙ୍କୁ ସିଧାସଳଖ ଅନୁରୋଧ କରୁଥିଲେ । ନିର୍ବାଚନ ବେଳେ ସେ ନିଜ ଲୋକପ୍ରିୟତାକୁ ସେମାନଙ୍କ ଦଳୀୟ ଗୋଟି ଚାଳନା ଆଗରେ ଠିଆ କରାଇଲେ । ହରିକେନ୍ ଭଳି ସେ ସାରା ଭାରତକୁ ଖେଦିଗଲେ ଏବଂ ଯେତେ ପାରେ ସେତେ ଲୋକଙ୍କ ସହ ମିଶିବାରେ ଲାଗିଲେ ।

ସେ ଯାହାହେଉ, ଆର୍ଥିକ ଅନଟନ ଏବଂ ରାଜନୈତିକ ଅସ୍ଥିରତା ତାର ମୂଲ୍ୟ ଆଦାୟ କରୁଥିଲା । ଦେଶର ପରିବେଶ ଥିଲା ଚାପଗ୍ରସ୍ତ । ଆବହାଉଆରେ ଥିଲା ହିଂସା । ଫଳରେ ଯଦିଓ ସେ ଅଧିକାଂଶ ସ୍ଥାନରେ ଲୋକମାନଙ୍କ ଦ୍ୱାରା ସମ୍ବର୍ଦ୍ଧିତ ହେଲେ, ଅନେକ ସ୍ଥାନରେ ତାଙ୍କୁ କଳା ପତାକା ଏବଂ ବିରୋଧ ଦ୍ୱାରା ସ୍ୱାଗତ କରାଯାଉଥିଲା । ଭୁବନେଶ୍ୱର, ଯେଉଁ ସହରରେ ତିନି ବର୍ଷ ପୂର୍ବେ ତାଙ୍କ ବାପାଙ୍କ ହୃଦ୍‌ଘାତ ହୋଇଥିଲା, ସେଠାରେ ତାଙ୍କ ଉପରକୁ

ଢ଼େଲା ମାଡ଼ ହେଲା ଏବଂ ତହିଁରୁ ଗୋଟିଏ ତାଙ୍କ ନାକରେ ବାଜିଲା । ଗୁଣ୍ଡାରାଜ ଆଗରେ ମୁଣ୍ଡ ନୁଆଁଇବାକୁ ରାଜି ନଥିବାର ସାହସ ଥିଲା ତାଙ୍କର ସବୁଠାରୁ ବଡ଼ ଗୁଣ ଏବଂ ଏଇ ଘଟନା ପରେ ପୁଲିସ୍‌ର ବଳପ୍ରୟୋଗକୁ ଅନୁମତି ନଦେଇ ସେ ସେମିତି ଅବିଚଳିତ ଭାବେ ତାଙ୍କ ବକ୍ତବ୍ୟ ପୂର୍ଣ୍ଣ କଲେ । ତାଙ୍କ ଭାଷଣ ସମ୍ପୂର୍ଣ୍ଣ ହେଲାପରେ ଯାଇ ସେ ଡାକ୍ତରମାନଙ୍କୁ ତାଙ୍କୁ ଦେଖିବାକୁ ସୁଯୋଗ ଦେଲେ । ସେଇ ସମୟରେ ସେ ଡାକ୍ତରମାନଙ୍କୁ କହିଥିଲେ ଯେ ତାଙ୍କ ନାକଟି ଟିକିଏ ଅଧିକ ଲମ୍ବା ବୋଲି ସେ ଭାବି ଆସିଥିବାରୁ ଡ଼ାକ୍ତରମାନେ ଏହାକୁ ଏକ ସୁଯୋଗଭାବେ ଗ୍ରହଣକରି ତାଙ୍କ ନାକକୁ କାଟି ସଜାଡ଼ି ଦେଇପାରନ୍ତି । ଡ଼ାକ୍ତରମାନେ ତାଙ୍କ କଥାକୁ ମନଯୋଗ ସହ ଶୁଣିଲେ କିନ୍ତୁ ସେଇ ଅନୁରୋଧକୁ ଗ୍ରହଣ କଲେନାହିଁ । ଏହାର ସତର ବର୍ଷପରେ ତାଙ୍କ ଶେଷକୃତ୍ୟ ସମୟରେ କୋଟି କୋଟି ଶୋକ ବିହ୍ୱଳ ଜନତା ଲକ୍ଷ୍ୟ କରୁଥିଲେ ଯେ ଜୀବିତ ଥିବାବେଳେ ଅଥବା ମୃତ୍ୟୁରେ, ତାଙ୍କ ନାକ ହିଁ ଥିଲା ତାଙ୍କ ଚେହେରାର ସବୁଠାରୁ ପ୍ରମୁଖ ଅଂଶ ।

ଭୁବନେଶ୍ୱର ଯିବାର ଅନେକ ଦିନ ପୂର୍ବରୁ ସେ ରାଏବରେଲି ଯାଇଥିଲେ, ଯେଉଁ ପାର୍ଲିଆମେଣ୍ଟ ଆସନର ପ୍ରତିନିଧିତ୍ୱ ତାଙ୍କ ଦିବଂଗତ ସ୍ୱାମୀ କରୁଥିଲେ ଏବଂ ଇନ୍ଦିରା ଏବେ ତାକୁ ନିଜର ଆସନଭାବେ ପ୍ରତିପୋଷଣ କରିବାକୁ ସ୍ଥିରକଲେ । ସେଠାରେଏକ ଚମକପ୍ରଦ ପ୍ରଦର୍ଶନରେ ସେ ଦାରିଦ୍ର୍ୟ ଏବଂ କ୍ଷୁଧା ଭଳି ସମସ୍ତ ସମସ୍ୟାକୁ ଚତୁରତାର ସହ ଏଡ଼ାଇଯାଇ ଦେଶକୁ ଏଭଳି ସନ୍ଦେଶଟିଏ ଦେବାକୁ ସମର୍ଥହେଲେ ଯେ ସେ "ରାଜନୈତିକ ଦଳ" ଏପରିକି "ରାଜନୀତି ଠାରୁ ଉର୍ଦ୍ଧ୍ୱରେ" । ସେ ଭାରତୀୟମାନଙ୍କ ମଙ୍ଗଳ କଥା ହିଁ କେବଳ ଚିନ୍ତା କରୁଛନ୍ତି । "ଏମାନେ ସମସ୍ତେ", ସେ କହିଥିଲେ, "ମୋର ପରିବାରର ସଦସ୍ୟଙ୍କ ଭଳି ।" ସେଇଠି ସେ ପାଇଲେ ବିପୁଳ କରତାଳି ଏବଂ ପଚାଶ ବର୍ଷ ଛୁଇଁ ନଥିବା ସତ୍ତ୍ୱେ ତାଙ୍କୁ "ମଦର ଇଣ୍ଡିଆ" ବୋଲି ସମସ୍ତେ ଡ଼ାକିବାକୁ ଲାଗିଲେ । ଅବଶିଷ୍ଟ ଜୀବନ ଯେଉଁ କିମ୍ବଦନ୍ତୀ ତାଙ୍କୁ ଘେରି ରହିଥିଲା, ସେଦିନ ତାର ଜନ୍ମ ହୋଇଥିଲା । ମାତ୍ର ଅଳ୍ପ କିଛି ଦିନ ପରେ "ମଦର ଇଣ୍ଡିଆ" ଡ଼ାକଟି ଅଧିକ ଭାରତୀୟ ବୋଧ ହେଉଥିବା ଡ଼ାକ ନାମ "ଇନ୍ଦିରା ଆମ୍ମା"ରେ ପରିଣତ ହୋଇଗଲା ।

## ନିର୍ବାଚନୀୟ ଧକ୍‌କା

ଇନ୍ଦିରା ଗାନ୍ଧିଙ୍କ ନିର୍ବାଚନ ପ୍ରଚାରବେଳେ ସେ ଲୋକମାନଙ୍କ ଦ୍ୱାରା ଯେଉଁଭଳି ଭାବେ ଉଷ୍ମତା ଏବଂ ସ୍ନେହ ଦ୍ୱାରା ସମ୍ବର୍ଦ୍ଧିତ ହେଉଥିଲେ, ସେଭଳି ସ୍ନେହ ନିର୍ବାଚନ ଫଳାଫଳରେ ପ୍ରତିଧ୍ୱନିତ ହେଲାନାହିଁ । ଏହା ଥିଲା କଂଗ୍ରେସ ତଥା ପ୍ରଧାନମନ୍ତ୍ରୀଙ୍କ ପାଇଁ ଏକ ଶକ୍ତ ଧକ୍‌କା । ଏଇ ନିର୍ବାଚନରେ ଯେତିକି ଭୋଟ୍ ପଡ଼ିଥିଲା, ସେଥିରେ ପାର୍ଟିର ଭାଗ ୧୯୬୨ ମସିହାର ନିର୍ବାଚନ - ନେହେରୁଙ୍କ ନେତୃତ୍ୱରେ ହୋଇଥିଲାବେଳର ପଇଁଚାଳିଶ ପ୍ରତିଶତରୁ ଖସି ଆସି ଏକଚାଳିଶ ପ୍ରତିଶତରେ ପହଞ୍ଚିଥିଲା । ଏହାର ଅର୍ଥ ଲୋକସଭାରେ କଂଗ୍ରେସ ପାଖରେ ଥିବା ସିଟ୍ ସଂଖ୍ୟାରେ ଏକ ପଞ୍ଚମାଂଶ ହ୍ରାସ । ପାଞ୍ଚଶହ କୋଡ଼ିଏ ଆସନ ବିଶିଷ୍ଟ ଲୋକସଭାରେ କଂଗ୍ରେସର ସିଟ୍

ସଂଖ୍ୟା ଥିଲା ୨୮୩ ; ଏତେ ପତଳା ସଂଖ୍ୟାଗରିଷ୍ଠତାର ମାର୍ଜିନ୍‌ରେ ପରିସ୍ଥିତି ନିରାପଦ ନଥିଲା। ଦକ୍ଷିଣସ୍ଥ ତାମିଲନାଡୁରେ ଦ୍ରାବିଡ଼୍ ମୁନେତ୍ରା କାଜାଗମ୍ (ଡ଼ିଏମ୍‌କେ) ନାମକ ଏକ ଆଞ୍ଚଳିକ ଦଳ କଂଗ୍ରେସକୁ ସମ୍ପୂର୍ଣ୍ଣଭାବେ ପରାସ୍ତ କରିଦେଇଥିଲା। ଉତ୍ତରଭାଗରେ ଅବସ୍ଥା ଆହୁରି ଶୋଚନୀୟ ହୋଇପଡ଼ିଥିଲା। ସେ ଯାଏଁ ସାରା ଦେଶରେ ପ୍ରଭାବଶାଳୀ ଥିବା ଦଳଟି ଆଠଗୋଟି ରାଜ୍ୟରୁ ତାର ନିୟନ୍ତ୍ରଣ ହରାଇଥିଲା। "ଭାରତର ପୂର୍ବ ଦିଗରେ ଥିବା କୋଲକତାରୁ ଜଣେ ଯାତ୍ରା ଆରମ୍ଭକରି ପଶ୍ଚିମ ଦିଗର ଅମୃତସର ଯାଏଁ ପହଞ୍ଚିଲା ଭିତରେ ଗୋଟିଏ ଇଞ୍ଚ କଂଗ୍ରେସଦ୍ୱାରା ଶାସିତ ଅଞ୍ଚଳ ଅତିକ୍ରମ କରିବନାହିଁ", ବୋଲି ମୁଁ ସେତେବେଳେ ଷ୍ଟେଟ୍‌ସ୍‌ମ୍ୟାନ୍ ଖବରକାଗଜର ଏକ ସାପ୍ତାହିକ ସ୍ତମ୍ଭରେ ଲେଖିଥିଲି।

ଗଭୀରଭାବେ ଆକ୍ରାନ୍ତ ହୋଇଥିବା ଇନ୍ଦିରାଙ୍କ ତଥାପି ଥିଲା ଗୋଟିଏ ବିରାଟ ସାନ୍ତ୍ୱନା। ତାହା ହେଉଛି ସିଣ୍ଡିକେଟ୍‌ର ସମସ୍ତ ସଦସ୍ୟଙ୍କୁ ଜନତା ଏକ ଶିକ୍ଷା ଦେଇଥିଲେ। ଏସ୍‌କେ ପାଟିଲ୍ ଏବଂ ଅତୁଲ୍ୟ ଘୋଷ ମାଟି କାମୁଡ଼ି ଥିଲେ। କାମରାଜଙ୍କ ପତନ ଥିଲା ଦେଖିଲା ଭଳି। ଯେଉଁ ରାଜ୍ୟର ସେ ଥିଲେ "ମୁକୁଟ ବିହୀନ ସମ୍ରାଟ୍", ସେଇ ରାଜ୍ୟ ତ ସେ ହରାଇଲେ, ତା ସହିତ ହରାଇଲେ ନିଜ ସିଟ୍। ଏଥିଯୋଗୁଁ ଦଳ ଭିତରେ ଇନ୍ଦିରାଙ୍କ ସ୍ଥିତି ଦୃଢ଼ତର ହେଲା ଏବଂ ପ୍ରଧାନମନ୍ତ୍ରୀ ପଦ ପାଇଁ ଆଉ ଥରେ ଦଳ ଭିତରେ ପ୍ରତିଦ୍ୱନ୍ଦ୍ୱିତା କରାଇବାପାଇଁ ଥିବା ମୋରାରଜୀଙ୍କ ଯୋଜନା ପଣ୍ଡ ହୋଇଗଲା। କଂଗ୍ରେସ ଏହି ନିର୍ବାଚନରେ ସିନା ଗୁରୁତରଭାବେ ଘାଇଲା ହୋଇଯାଇଥିଲା, କିନ୍ତୁ ସେ ନିଜକୁ ଉଜ୍ଜୀବିତ କରି ରଖିବାର ପ୍ରବୃତ୍ତି ହରାଇନଥିଲା। କାମରାଜ ନିଜର ଦାରୁଣ ପରାଜୟ ପରେ ପୁଣି ନିଜକୁ ବୁଝାଇ ସେଇ କଂଗ୍ରେସ ସଦସ୍ୟମାନଙ୍କ ନେତୃତ୍ୱ ନେବାକୁ ପ୍ରସ୍ତୁତ ହେଲେ, ଯେଉଁମାନେ କି ଦଳ ଭିତରେ ଆଉ ନେତୃତ୍ୱକୁ ନେଇ ପ୍ରତିଦ୍ୱନ୍ଦ୍ୱିତା ହେଉ ବୋଲି ଚାହୁଁନଥିଲେ। କେବଳ ସେତିକି ନୁହେଁ, ଦୁଇ ପ୍ରତିଦ୍ୱନ୍ଦ୍ୱୀଙ୍କ ଭିତରେ ସାଲିସୁତୁରା କରିବାର ଦାୟିତ୍ୱ ସେ ନେଲେ।

ସେଇ ଅନୁସାରେ ଇନ୍ଦିରା ନିର୍ଦ୍ୱନ୍ଦ୍ୱରେ ଦଳର ନେତ୍ରୀ ରୂପେ ନିର୍ବାଚିତ ହେଲେ ଏବଂ ମୋରାରଜୀ ଦେଶାଇ ତାଙ୍କ କ୍ୟାବିନେଟ୍‌ରେ ଉପପ୍ରଧାନମନ୍ତ୍ରୀ ଭାବେ ଯୋଗଦେଲେ ଏବଂ ଅର୍ଥ ବିଭାଗର ଦାୟିତ୍ୱ ନେଲେ। ୧୯୫୮ ମସିହାରେ ତାଙ୍କ ବାପାଙ୍କ କ୍ୟାବିନେଟ୍‌ରେ ମଧ୍ୟ ଦେଶାଇ ଏହି ବିଭାଗର ଦାୟିତ୍ୱ ନେଇଥିଲେ ଏବଂ ୧୯୬୩ରେ କାମରାଜଙ୍କ ଯୋଜନାରେ ବିଦା ନହେବା ଯାଏଁ ସେଇ ବିଭାଗରେ ଥିଲେ।

——— ୫ ———



# ଶିଖରକୁ ଧୀର ଯାତ୍ରା

କେହି କହିପାରିବେ ନାହିଁ ଯେ ସିଣ୍ଡିକେଟ୍ ପ୍ରାଯୋଜିତ ଇନ୍ଦିରା ଏବଂ ମୋରାରଜୀଙ୍କ ସନ୍ଧି ଥିଲା ଏକ "ଫାଉଷ୍ଟିଅ ସଉଦାବାଜି" । କିନ୍ତୁ ନିଶ୍ଚିତପକ୍ଷେ ଏହା ଥିଲା ଦୁର୍ବଳ, ଏପରିକି ଅଚଳ ଏବଂ ଇନ୍ଦିରାଙ୍କ ଛଡ଼ା ଆଉ କେହି ସେ କଥା ଅଧିକ ଭଲଭାବେ ଜାଣି ନଥିଲେ । ସେ ଏବଂ ତାଙ୍କ ସମର୍ଥକମାନେ ଅନୁଭବ କରୁଥିଲେ ଯେ ଉପପ୍ରଧାନମନ୍ତ୍ରୀ ଜଣକ ହେଉଛନ୍ତି ସିଣ୍ଡିକେଟ୍‌ର "ଟ୍ରୟ ଯୁଦ୍ଧର ଘୋଡ଼ା ।" ସରକାରଙ୍କ ଅନ୍ତରୀଣ ପରିଷଦମାନଙ୍କରେ ଦେଶାଇ ଇନ୍ଦିରାଙ୍କୁ ହେୟଜ୍ଞାନ କରି ତାଙ୍କ ଅସହିଷ୍ଣୁତା ପ୍ରକାଶ କରିବାକୁ ପଛାଉନଥିଲେ । ଇନ୍ଦିରାଙ୍କ ପ୍ରସିଦ୍ଧି ଯେଉଁସବୁ ଗୁଣ ପାଇଁ ଥିଲା, ପ୍ରକୃତରେ ଦେଶାଇ ଥିଲେ ତାର ବିପରୀତ ; ଅର୍ଥାତ୍ ବାସ୍ତବବାଦୀ ଏବଂ ସତର୍କ । ସିଣ୍ଡିକେଟ୍ ଏବଂ ଦେଶାଇ ବର୍ତ୍ତମାନ ଏକାଠି ହୋଇଯାଇଥିବାରୁ ଇନ୍ଦିରା ତାଙ୍କ ବିରୋଧରେ ଏକ ମୁହାଁମୁହିଁ ପରିସ୍ଥିତି ସୃଷ୍ଟି କରିବାକୁ ଚାହୁଁନଥିଲେ । ସେ ଚାହୁଁଥିଲେ ଯେ ଗୋଟିକ ପରେ ଗୋଟିଏ ପ୍ରସଙ୍ଗରେ ନିଜକୁ ଠିକ୍ ବୋଲି ସାବ୍ୟସ୍ତ କରି ଦଳ ଭିତରେ ନିଜ ଆସ୍ଥାନ ଦୃଢ଼ ନକଲାଯାଏଁ ଏହି ମୁକାବିଲା ସ୍ଥଗିତ ରହୁ ଏବଂ ଯୋଜନାବଦ୍ଧ ଭାବେ ସେ ଏହା କରିବାକୁ ଆରମ୍ଭ କଲେ ।

ଏହା ସହିତ ସେ ଏୟା ବି ଇଙ୍ଗିତରେ ଜଣାଇଦେଇଥିଲେ ଯେ ସେ ବର୍ତ୍ତମାନ ସିଣ୍ଡିକେଟ୍‌ର ପ୍ରଭାବର ଛାୟାରେ ନାହାନ୍ତି ଏବଂ ଏକୁଟିଆ ସେ ବେଶ୍ ସମର୍ଥ । ଗତବର୍ଷ ଭଳି ଏଥର କ୍ୟାବିନେଟ୍‌ର ଗଠନ କିପରି ହେବ ସେ ନେଇ କାମରାଜଙ୍କ ସହ ସେ କୌଣସି ଆଲୋଚନା କଲେନାହିଁ । ସିଣ୍ଡିକେଟ୍‌ର ଏକମାତ୍ର ବିଜୟୀ ପ୍ରାର୍ଥୀ ନିଲମ୍ ସଞ୍ଜୀବ ରେଡ୍‌ଡ଼ିଙ୍କୁ କ୍ୟାବିନେଟ୍‌ରେ ଅନ୍ତର୍ଭୁକ୍ତ କଲେନାହିଁ, କିନ୍ତୁ ତାଙ୍କୁ ସନ୍ତୁଷ୍ଟ କରିବାପାଇଁ ତାଙ୍କୁ ଲୋକସଭାର ବାଚସ୍ପତିଭାବେ ନିଯୁକ୍ତ କଲେ । ପରେ ଇନ୍ଦିରା ଯେଉଁ ସଂଘର୍ଷ ଆରମ୍ଭକଲେ ସେଥିରେ ନିଲମ୍ ସଞ୍ଜୀବ ରେଡ୍‌ଡ଼ିଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା ।

ଇନ୍ଦିରା ସିଣ୍ଡିକେଟ୍‌ରୁ ମୁକ୍ତ ହେବା କଥା ଜଣାପଡ଼ିଗଲା ପରେ ତାଙ୍କ ଉପଦେଷ୍ଟା ଏବଂ ଚାମଚାମାନଙ୍କ ଏକ ନୂଆ ଗୋଷ୍ଠୀ ଆବିର୍ଭାବ ହେବା ସ୍ୱାଭାବିକ ଥିଲା । "କିଚେନ୍ କ୍ୟାବିନେଟ୍"

ଭାବେ ତୁରନ୍ତ ଉପାଧି ପାଇଥିବା ଏହି ଦଳରେ କିଛି କନିଷ୍ଠ ମନ୍ତ୍ରୀଙ୍କ ସମେତ ପ୍ରମୁଖଭାବେ ସେଇମାନେ ଥିଲେ ଯେଉଁମାନେ କି ଶାସ୍ତ୍ରୀଙ୍କ ସମୟରେ ଇନ୍ଦିରାଙ୍କ ପାଖକୁ ଯାଇ "ନେହେରୁଙ୍କ ପଲିସି ବା ନୀତିରୁ ଶାସ୍ତ୍ରୀଙ୍କ ବିଚ୍ୟୁତି" ସମ୍ପର୍କରେ ଅଭିଯୋଗ କରି କିଛି ପଦକ୍ଷେପ ଗ୍ରହଣ କରିବାକୁ ଅନୁରୋଧ କରୁଥିଲେ ।

୧୯୬୭ ମସିହା ମେ ମାସରେ ରାଷ୍ଟ୍ରପତି ରାଧାକୃଷ୍ଣନ୍‌ଙ୍କ କାର୍ଯ୍ୟକାଳ ପୂରି ଆସୁଥିବାରୁ ତାଙ୍କ ସ୍ଥାନରେ କିଏ ରାଷ୍ଟ୍ରପତି ହେବେ ସେଇ ପ୍ରସଙ୍ଗକୁ ନେଇ ସେ ଏବଂ ଦଳ ଭିତରେ ଥିବା ତାଙ୍କ ପ୍ରତିପକ୍ଷଙ୍କ ଭିତରେ କନ୍ଦଳର ସୂତ୍ରପାତ ହେଲା । ରାଧାକୃଷ୍ଣନ୍ ଇନ୍ଦିରାଙ୍କ ବାପାଙ୍କ ଠାରୁ ବୟସରେ ବର୍ଷଟିଏ ବଡ଼ ଥିଲେ ଏବଂ ଉଭୟ ଥିଲେ ବେଶ୍ ଘନିଷ୍ଠ ବନ୍ଧୁ । ରାଧାକୃଷ୍ଣନ୍‌ଙ୍କ ପୁଅ ଏବଂ ନେହେରୁଙ୍କ ଜୀବନୀକାର ସର୍ବପଲ୍ଲୀ ଗୋପାଲଙ୍କ ବର୍ଣ୍ଣନାନୁସାରେ, ଇନ୍ଦିରାଙ୍କ ପ୍ରତି ରାଷ୍ଟ୍ରପତିଙ୍କ ଆଭିମୁଖ୍ୟ ଥିଲା "ସ୍ନେହାପ୍ଲୁତ, ସପକ୍ଷବାଦୀ ଏବଂ ହାଲୁକା ।" ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଏହି ଦାର୍ଶନିକଙ୍କ ପାଇଁ ସେ କେବଳ ଥିଲେ ଜଣେ ବନ୍ଧୁଙ୍କ କନ୍ୟା । କୌଣସି ପ୍ରଧାନମନ୍ତ୍ରୀ ଏଭଳି ଜଣେ ରାଷ୍ଟ୍ରମୁଖ୍ୟଙ୍କୁ ନିଶ୍ଚିତପକ୍ଷେ ଦ୍ୱିତୀୟ ବାର ଚାହିଁବ ନାହିଁ । କିନ୍ତୁ ସିଣ୍ଡିକେଟ୍, ଦେଶାଇଙ୍କ ପ୍ରଚ୍ଛନ୍ନ ସମର୍ଥନରେ, ଚାହୁଁଥିଲା ଯେ ଡ଼କ୍ଟର ରାଧାକୃଷ୍ଣନ୍ ଦ୍ୱିତୀୟ ଥର ରାଷ୍ଟ୍ରପତି ହୁଅନ୍ତୁ । କିନ୍ତୁ ଇନ୍ଦିରାଙ୍କ ପ୍ରାର୍ଥୀ ଥିଲେ ଉପରାଷ୍ଟ୍ରପତି ଜାକୀର ହୁସେନ୍ ; ଜଣେ ସମ୍ମାନାସ୍ପଦ ଶିକ୍ଷାବିତ୍ ଏବଂ ସ୍ୱାଧୀନତା ସଂଗ୍ରାମୀ । ଏଠାରେ ଉଲ୍ଲେଖଯୋଗ୍ୟଯେ ରାଧାକୃଷ୍ଣନ୍ ରାଷ୍ଟ୍ରପତି ପଦବୀ ଅଳଙ୍କୃତ କରିବା ପୂର୍ବରୁ ନିଜେ ମଧ୍ୟ ଉପରାଷ୍ଟ୍ରପତି ଥିଲେ ।

ସବୁବେଳେ କିଛି ନା କିଛି କଥାକୁ ନେଇ ଝଗଡ଼ା କରୁଥିବା ବିରୋଧୀ ଦଳଗୁଡ଼ିକ କଂଗ୍ରେସର ନିର୍ବାଚନ ପରାଜୟ ଏବଂ ଦଳର ଅନ୍ତରୀଣ ବିବାଦରେ ଉତ୍ସାହିତ ହୋଇ ଏଥିରେ ଆଉ ଟିକିଏ କେଁ ପୂରାଇଦେଲେ । ସେମାନେ କୋର୍ଟର ମୁଖ୍ୟ ବିଚାରପତି କେ. ସୁବ୍‌ବା ରାଓଙ୍କୁ ରାଷ୍ଟ୍ରପତି ପଦ ନିମନ୍ତେ ପ୍ରାର୍ଥୀ ହେବାପାଇଁ ରାଜି କରାଇଦେଲେ । ଆଉ ମାତ୍ର କେଇ ମାସ ପରେ ଅବସର ନେବାକୁ ଥିବା କେ. ସୁବ୍‌ବା ରାଓ ସଙ୍ଗେ ସଙ୍ଗେ ରାଜିହୋଇ ଚାକିରିରୁ ଇସ୍ତଫା ଦେଇଦେଲେ । ଏହା ଏକ ଅସାଧାରଣ ଘଟନା ଥିଲା । ଏହା ଆହୁରି ବିବାଦୀୟ ଥିଲା ଏଇଥି ପାଇଁ ଯେ ମାତ୍ର କିଛି ଦିନ ପୂର୍ବରୁ ସୁବ୍‌ବା ରାଓ ଏକ ବେଞ୍ଚର ଅଧ୍ୟକ୍ଷତା କରି ଅତି କମ୍ ବହୁମତରେ (ଚାରିରେ ତିନି) ପାର୍ଲିଆମେଣ୍ଟର ସମ୍ବିଧାନ ସଂଶୋଧନ କରିବାର କ୍ଷମତାକୁ ସଙ୍କୁଚିତ କରିଦେଇଥିଲେ । ଏହା ଅନୁସାରେ ପାର୍ଲିଆମେଣ୍ଟ ସମ୍ବିଧାନର ସବୁ ଅଂଶକୁ ସଂଶୋଧନ କରିବାର କ୍ଷମତା ପାଇଥିଲା, କିନ୍ତୁ, ନାଗରିକଙ୍କ ମୌଳିକ ଅଧିକାର ସମ୍ବଳିତ ଅଧ୍ୟାୟକୁ ଛାଡ଼ି । ଏହା କରିବାକୁ ହେଲେ ନୂଆ ସାମ୍ବିଧାନିକ ପରିଷଦକୁ ଆହୂତ କରିବାର ବ୍ୟବସ୍ଥା ଥିଲା । ଏହାକୁ ଗ୍ରହଣ କରିବାକୁ ଇନ୍ଦିରା ରାଜି ନଥିଲେ ଏବଂ ଏହାକୁ ସେ ଖୋଲାଖୋଲି ଭାବେ ପ୍ରକାଶ ମଧ୍ୟ କରିଥିଲେ । ତାଙ୍କ ଯୁକ୍ତି ଥିଲା ଯେ ଜନତାଙ୍କ ବହୁମତ ପାଇ ନିର୍ବାଚିତ ହୋଇଥିବା ପାର୍ଲିଆମେଣ୍ଟର କଥା ରହିବା ଉଚିତ, ଯେମିତି କି ଗତ ସତର ବର୍ଷ ହେଲା ହୋଇଆସିଛି । ପାର୍ଲିଆମେଣ୍ଟ ଏବଂ

ବିଚାରବିଭାଗ ମଧ୍ୟରେ ମତାନୈକ୍ୟର ଏହା ଥିଲା ବୀଜ ଏବଂ ରାଷ୍ଟ୍ରପତି ନିର୍ବାଚନ ସହିତ ଏହା ଛନ୍ଦି ହୋଇପଡ଼ିଥିଲା ।

ସିଣ୍ଡିକେଟ୍ ଏବଂ ଦେଶାଇଙ୍କ ସେନାପତିମାନେ ଇନ୍ଦିରାଙ୍କୁ କହିଥିଲେ ଯେ ଏଭଳି ବିବାଦୀୟ ପରିବେଶରେ ରାଧାକୃଷ୍ଣନ୍ ଜିତିବା ନିଶ୍ଚିତ । ଏଣୁ ତାଙ୍କୁ ସବୁ ପକ୍ଷରୁ ସମର୍ଥନ କରାଯାଉ । ଇନ୍ଦିରା ସେମାନଙ୍କୁ ଗୋଟିଏ ପ୍ରଶ୍ନକରି ସେମାନଙ୍କ ମୁହଁ ଚୁପ୍ କରିଦେଲେ : ଯେତେବେଳେ ଜନତା ଜାଣିବାକୁ ଚାହିଁବେ ଯେ କାହିଁକି ଜାକୀର୍ ସାହେବଙ୍କୁ "ଏଡ଼ାଇ" ଦିଆଗଲା, ସେତିକିବେଳେ ଆମେ କ'ଣ ଉତ୍ତର ଦେବା ?" କିନ୍ତୁ ବାସ୍ତବରେ ଜାକୀର ହୁସେନ୍ ସହଜରେ ଜିତିଗଲେ ଏବଂ ଦେଶର ପ୍ରଥମ ମୁସଲମାନ୍ ରାଷ୍ଟ୍ରପତି ହେଲେ । ଏହା ଥିଲା ଭାରତୀୟ ଧର୍ମନିରପେକ୍ଷତା ତଥା ଇନ୍ଦିରାଙ୍କର ବିଜୟ ।

ଇନ୍ଦିରାଙ୍କ ଉଲ୍ଲସିତ ଅନୁଗାମୀ ଏବଂ ତାଙ୍କ ବିରୋଧୀମାନଙ୍କ ଭିତରେ ସଂଘର୍ଷ ଏଥର ଅର୍ଥନୈତିକ କ୍ଷେତ୍ରକୁ ଚାଲିଯାଇଥିଲା । ନୂଆ ରାଷ୍ଟ୍ରପତି ଶପଥ ନେଲାପରେ ଦିଲ୍ଲୀଠାରେ ଯେଉଁ କଂଗ୍ରେସ ଅଧିବେଶନ ହେଲା ସେଥିରେ ଏପରି ଏକ ଘଟନା ପ୍ରଥମେ ଘଟିଲା । ଆମେ ଦେଖିଛୁ ଯେ ଟଙ୍କାର ମୂଲ୍ୟହ୍ରାସ ପରେ ଇନ୍ଦିରା ଟିକିଏ ବାମପନ୍ଥା ଆଡ଼କୁ ଢ଼ଳିଥିଲେ । ଏପରିକି ସେଇ ଅଧିବେଶନରେ ଇନ୍ଦିରା ଗୋଟିଏ ଦଶ ସୂତ୍ରୀ କାର୍ଯ୍ୟକ୍ରମ ଉପସ୍ଥାପନ କଲେ, ଯାହାକୁ ସିଣ୍ଡିକେଟ୍ ଏବଂ ଦେଶାଇଙ୍କ ଶିବିରରେ ରକ୍ଷଣଶୀଳ ନେତାମାନେ ତତ୍‌କ୍ଷଣାତ୍ ଗ୍ରହଣ କଲେ ସିନା କଂଗ୍ରେସରେ ଥିବା ଟିକିଏ ଚରମବାଦୀ, ଯେଉଁମାନଙ୍କୁ 'ତରୁଣ ତୁର୍କୀ' ବୋଲି ଡ଼ାକାଯାଉଥିଲା, ଏଥିରେ ସନ୍ତୁଷ୍ଟ ନଥିଲେ । ନିର୍ବାଚନର ବିପର୍ଯ୍ୟୟ ପାଇଁ ସେମାନେ ଦଳର ବୟସ୍କ ଏବଂ ଦକ୍ଷିଣବାଦୀମାନଙ୍କୁ ଦାୟୀ କରି ଦଳର ପରିସ୍ଥିତିକୁ ଏବେ ବଦଳାଯାଉ ବୋଲି ଦାବି କରୁଥିଲେ । ସେମାନଙ୍କ ପାଇଁ ସବୁଠାରୁ ବଡ଼ ପ୍ରସଙ୍ଗ ଥିଲା ବ୍ୟାଙ୍କ୍‌ଗୁଡ଼ିକର ଜାତୀୟକରଣ ପ୍ରସଙ୍ଗ, ଏବଂ ଯଦିଓ ସେମାନେ ଜାଣିଥିଲେ ଯେ ମୋରାରଜୀ ଦେଶାଇ ଏହାର ବିରୋଧୀ ତଥାପି ସେମାନେ ଏହି ପ୍ରସଙ୍ଗ ଉପରେ ଜୋର୍ ଦେଉଥିଲେ । ମୋରାରଜୀ ତିଳେ ମାତ୍ର ସମୟ ନଷ୍ଟ ନକରି ଏହି ପ୍ରସ୍ତାବକୁ ଅଗ୍ରାହ୍ୟ କରିଦେଲେ । ଚରମବାଦୀମାନଙ୍କୁ ଚମକାଇ ଦେଇ ଇନ୍ଦିରା ଦେଶାଇଙ୍କୁ ସମର୍ଥନ କଲେ । ବ୍ୟାଙ୍କ୍ ଉପରେ "ସାମାଜିକ ନିୟନ୍ତ୍ରଣ" ରହୁ ବୋଲି ଦେଶାଇଙ୍କ ପ୍ରସ୍ତାବ - ଯାହା ଅର୍ଥ ଘରୋଇ ବ୍ୟାଙ୍କ୍‌ଗୁଡ଼ିକର କାର୍ଯ୍ୟକଳାପକୁ ତଦାରଖ କରିବାପାଇଁ ଏକ କମିଟି ଗଢ଼ାଯିବା - ଗ୍ରହଣଯୋଗ୍ୟ ଏବଂ ଏହାକୁ ଦୁଇ ବର୍ଷ କାଳ ସୁଯୋଗ ଦେବା ଉଚିତ୍ ବୋଲି ସେ ସମସ୍ତଙ୍କୁ ଅନୁରୋଧ କଲେ ।

ବ୍ୟାଙ୍କ୍‌ଗୁଡ଼ିକର ଜାତୀୟକରଣ ପାଇଁ ପଦକ୍ଷେପ ବିଫଳ ହେବାରୁ ତରୁଣ ତୁର୍କୀମାନେ ଇନ୍ଦିରାଙ୍କୁ ସିନା ସିଧାସଳଖ କିଛି କହିଲେ ନାହିଁ, ତଥାପି ସେମାନଙ୍କ ହତାଶାଭାବକୁ ସର୍ବସମକ୍ଷରେ ପ୍ରକାଶ କଲେ । ସେମାନଙ୍କ ଏହି ପାଲଟା ଆକ୍ରମଣ ସେଇ ବିଭାଜିତ ଦଳକୁ ପ୍ରକାରାନ୍ତରେ ଦୋହଲାଇ ଦେଲା । ସେମାନେ ଆଉ ଯେଉଁ ସମସ୍ୟା କଥା କହୁଥିଲେ ତାହା ଥିଲା ପୂର୍ବତନ ରାଜ୍ୟଗୁଡ଼ିକର ରାଜାମାନଙ୍କ କଥା ଯେଉଁମାନେ କି ସ୍ୱାଧୀନତା ପରେ ଭାରତ ସହ ମିଶିଯାଇଥିଲେ

ଏବଂ ତା ବଦଳରେ ସ୍ୱତନ୍ତ୍ର ସୁବିଧା ଏବଂ "ପ୍ରାଇଭି ପର୍ସ" ବା ରାଜକୀୟ ଭତ୍ତା ପାଉଥିଲେ । ପୁରୁଷ ପୁରୁଷ ଧରି ରାଜପରିବାରର ଲୋକେ ଏହି ରାଜକୀୟ ଭତ୍ତା ପାଇବାର ବ୍ୟବସ୍ଥା କରାଯାଇଥିଲା, ଯଦିଓ, ସରକାର ଚାହିଁଲେ ଏହି ପରିମାଣକୁ କମାଇବାରେ କ୍ଷମତା ରଖିଥିଲେ । ରାଜପୁତ୍ରମାନଙ୍କୁ ଯେଉଁ ସ୍ୱତନ୍ତ୍ର ସୁବିଧା ମିଳୁଥିଲା, ସେଇ ଅନୁସାରେ ସେମାନେ ସେମାନଙ୍କ ସବୁ ଉପାଧି ରଖିପାରିବା, ନିଜ ରାଜ୍ୟରେ ନିଜ ପତାକା ଉଡ଼ାଇ ପାରିବା, କାର୍‌ମାନଙ୍କରେ ବ୍ୟକ୍ତିଗତ ନମ୍ବର ପ୍ଲେଟ୍ ଲଗାଇପାରିବା ଏବଂ ନିଜ ଉତ୍ସବମାନଙ୍କରେ ତୋପ ସଲାମି ନେଇପାରିବା ଭଳି ସ୍ୱତନ୍ତ୍ର ସୁବିଧା ଅନ୍ତର୍ଭୁକ୍ତ ଥିଲା ।

ସ୍ୱାଧୀନତାର ପ୍ରଥମ ପନ୍ଦର ବର୍ଷ ଯାଏ କେହି ଯା ଉପରେ ଏତେ ଗୁରୁତ୍ୱ ଦେଉନଥିଲେ କାରଣ ଏହି ରାଜାମାନଙ୍କ ଭିତରୁ ଯେଉଁମାନେ ନିର୍ବାଚନରେ ଯୋଗଦେଇ ସଫଳତା ପାଇଥିଲେ ; ସେମାନେ କଂଗ୍ରେସ ଏବଂ ଅନ୍ୟାନ୍ୟ ଦଳ ଭିତରେ ସମାନୁପାତିକ ଭାବେ ବାଣ୍ଟିହୋଇ ରହିଥିଲେ । ୧୯୬୭ ସାଧାରଣ ନିର୍ବାଚନବେଳକୁ ପରିସ୍ଥିତିରେ ଅନେକ ନାଟକୀୟ ପରିବର୍ତ୍ତନ ଆସିଥିଲା । ରାଜନୀତି ପ୍ରତି ଆକର୍ଷିତ ହୋଇଥିବା ଅନେକ ରାଜକୁମାର ଗୋଟିଏ ନୂତନ ଅତି ରକ୍ଷଣଶୀଳ ଦଳ "ସ୍ୱତନ୍ତ୍ର ପାର୍ଟି"ରେ ମିଶିଥିଲେ ଯାହାକି କାୟମନୋବାକ୍ୟରେ ଥିଲା ଇନ୍ଦିରା ବିରୋଧୀ । ଏ ସଂକ୍ରାନ୍ତରେ ଆହୁରି ଜଟିଳତର ପରିସ୍ଥିତି ସୃଷ୍ଟିହେବାର କାରଣ ଥିଲା ଏୟା ଯେ ନିର୍ବାଚନରେ ଏମାନେ ସମସ୍ତେ କଂଗ୍ରେସ ସଦସ୍ୟମାନଙ୍କୁ ପରାସ୍ତକରି ଜୟଯୁକ୍ତ ହୋଇଥିଲେ ।

କହିବା ବାହୁଲ୍ୟ ଯେ ଦଳ ଭିତରେ ଏହି ରାଜପୁତ୍ରମାନଙ୍କ ବିରୋଧୀ ମନୋଭାବ ତୀବ୍ରତର ହେଉଥିଲା । ସେମାନଙ୍କୁ "ଉଚିତ୍ ଜାଗା"ଦେଖାଇ ଦେବାକୁ ଦଳ ଭିତରେ ଜନମତ ସୃଷ୍ଟି ହେଉଥିଲା । କିନ୍ତୁ,ନେତୃତ୍ୱ ଏ ପ୍ରସଙ୍ଗର ସ୍ପର୍ଶକାତର ଦିଗ ନେଇ ସତର୍କ ମଧ ଥିଲା, ବିଶେଷକରି ନେହେରୁ ସରକାର ଦ୍ୱାରା ଦିଆଯାଇଥିବା ପ୍ରତିଶ୍ରୁତିକୁ ନେଇ ଯାହା ସମ୍ବିଧାନ ଦ୍ୱାରା ସ୍ୱୀକୃତ ହୋଇ ରହିଥିଲା । ତେଣୁ ଯେଉଁ ଦଶ ସୂତ୍ରୀ କାର୍ଯ୍ୟକ୍ରମ ପାଇଁ ସମସ୍ତେ ରାଜି ହୋଇଥିଲେ, ସେଥିରେ ରାଜାମାନଙ୍କ ଠାରୁ ସ୍ୱତନ୍ତ୍ର ସୁବିଧା ପ୍ରତ୍ୟାହାର କରାଯିବା ନେଇ କଥା ରହିଥିଲା, କିନ୍ତୁ "ପ୍ରାଇଭି ପର୍ସ"କୁ ନେଇ କୌଣସି ପ୍ରକାର ମନ୍ତବ୍ୟ ଦିଆଯାଇନଥିଲା । ଚରମବାଦୀମାନେ ଏହା ଭିତରେ ସେମାନଙ୍କ ପାଇଁ ଏକ ସୁଯୋଗକୁ ଦେଖିପାରୁଥିଲେ । ଏକ ବିଳମ୍ବିତ ରାତିରେ, ଯେତେବେଳେ ଉପସ୍ଥିତି ପତଳା ହୋଇଯାଇଥିଲା, ଏବଂ ଉଭୟ ଇନ୍ଦିରା ଏବଂ ଦେଶାଇ ଘରକୁ ଚାଲିଯାଇଥିଲେ, ସେତିକିବେଳେ ଏହି "ତରୁଣ ତୁର୍କୀ" ଗଣ ରାଜପୁତ୍ରମାନଙ୍କ ପାଇଁ ଉଦ୍ଦିଷ୍ଟ ଉଭୟ ସ୍ୱତନ୍ତ୍ର ସୁବିଧା ଏବଂ ପ୍ରାଇଭି ପର୍ସ ବ୍ୟବସ୍ଥା ଉଚ୍ଛେଦ କରିବାକୁ ସମ୍ବିଧାନ ସଂଶୋଧନ ଆଣିବାପାଇଁ ଏକ ବହୁମତ ସୃଷ୍ଟିକରିବାରେ ସଫଳ ହୋଇଥିଲେ । ସେମାନଙ୍କ ସଂଶୋଧନ ପ୍ରସ୍ତାବ ସତର ବିପକ୍ଷରେ ଛଅ ଭୋଟ୍‌ରେ ଗୃହୀତ ହୋଇଗଲା । କିନ୍ତୁ, ଏହାକୁ ଭାରତୀୟ କଂଗ୍ରେସର ଇନ୍ଦିରା ସରକାରଙ୍କ ପ୍ରତି ଏକ ନିର୍ଦ୍ଦେଶ ବୋଲି ଗ୍ରହଣ କରାଗଲା । ଦଳର ତୁଙ୍ଗ ନେତୃବୃନ୍ଦଙ୍କ ଭିତରେ ଥିବା ମନ ଫଟାଫଟି ବାହାରକୁ ଜଣାପଡ଼ିଯାଇଥିଲା । କାମରାଜ

ତାଙ୍କର ଭାବମୂର୍ତ୍ତିକୁ ବଜାୟ ରଖି ନୀରବ ରହିଲେ । କିନ୍ତୁ, ଏସ୍.କେ. ପାଟିଲ୍ ଏଆଇସିସିର ଏଭଳି ଗୋପନୀୟ ପଦକ୍ଷେପକୁ "ପାଗଳାମିର ଚିହ୍ନ" ବୋଲି କହି ନିନ୍ଦାକଲେ । ଦେଶାଇ ମଧ୍ୟ କହିଲେ ଯେ ଏହା ବିଶ୍ବାସଭଙ୍ଗର ଏକ ଉଦାହରଣ । ଅତୁଲ୍ୟ ଘୋଷ, ପ୍ରଥମ ଏବଂ ଶେଷଥର ପାଇଁ ସିଣ୍ଡିକେଟ୍‌ର ମତ ସହ ଏକମତ ନହୋଇ ଏଆଇସିସିର ନିଷ୍ପତ୍ତିକୁ ସ୍ୱାଗତ ଜଣାଇଲେ । ୱାଇବି ଚୌହାନ, ଯେ କି ସେତିକିବେଳେ ଗୃହମନ୍ତ୍ରୀ ଥିଲେ, ଏହି ଦିଗରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବାରେ ଅସୁବିଧା କିଛି ନାହିଁ ବୋଲି ପ୍ରକାଶ କଲେ । ସଦାବେଳେ ଦୁର୍ବୋଧ ତଥା ରହସ୍ୟମୟୀ ଇନ୍ଦିରା, କେବଳ "ଯେଉଁ ଭାବେ ଏହି ସଂଶୋଧନ ପ୍ରସ୍ତାବକୁ ଗ୍ରହଣ କରାଗଲା, ସେ ନେଇ ଟିକିଏ ଚିନ୍ତା ପ୍ରକଟ କଲେ ।"

ଏହାପରେ, ଆଶାନୁରୂପଭାବେ ଦଳ ଭିତରେ ବିଦ୍ୱେଷ ବଢ଼ିଲା । ଏହି ଦୁଇଦଳ ଭିତରେ କଳହ କେବଳ ଯେ ଦଳୀୟ ଅନୁଶାସନର ସୀମା ପାର କଲା ତାହା ନୁହେଁ, ଏହା ସୌଜନ୍ୟତାର ସମସ୍ତ ସୀମା ସରହଦ ଉଲ୍ଲଂଘନ କରିଗଲା । ଇନ୍ଦିରାଙ୍କ ସମର୍ଥକମାନଙ୍କ ଦ୍ୱାରା ଅବିରତ ଆକ୍ରମଣର ଶିକାର ମୋରାରଜୀ ଦେଶାଇ, କଂଗ୍ରେସ ପାର୍ଲିଆମେଣ୍ଟାରି ପାର୍ଟିର ଏକ୍‌ଜ୍ୟୁକେଟିଭ୍‌ମାନଙ୍କ ନିର୍ବାଚନରେ ବିଜୟୀ ହୋଇ ସେମାନଙ୍କୁ ଠିକଣା ଜବାବ ଦେଲେ ଏବଂ ତାଙ୍କର ଜଣେ ଅନୁଗାମୀ ; ସୁନ୍ଦରୀ ତଥା ବିଚକ୍ଷଣା ତାରକେଶ୍ୱରୀ ସିହ୍ନାଙ୍କୁ ଏହି "ଫୋରମ୍" ଜରିଆରେ ଇନ୍ଦିରାଙ୍କୁ ଅପମାନ ଦିଆଇବାର ସବୁ ବ୍ୟବସ୍ଥା କରିଦେଲେ । ଏହାର ପାଲଟା ଜବାବରେ ସବୁଠାରୁ ଟାଣୁଆ ତରୁଣ ତୁର୍କୀ ଚନ୍ଦ୍ରଶେଖର, ମୋରାରଜୀ ଦେଶାଇଙ୍କ ପୁତ୍ର କାନ୍ତି ଦେଶାଇଙ୍କ ନାମରେ ପାର୍ଲିଆମେଣ୍ଟ୍ ଗୃହରେ ଅଭିଯୋଗ ଆଣିଲେ । ଏଥିରେ ଅତି କ୍ଷୁବ୍‌ଧ ଦେଶାଇଙ୍କ ଜିଦି ଅନୁସାରେ କଂଗ୍ରେସ ପାର୍ଲିଆମେଣ୍ଟାରି ପାର୍ଟି ଚନ୍ଦ୍ରଶେଖରଙ୍କୁ "ନିୟନ୍ତ୍ରଣ" କରିବାପାଇଁ ଇନ୍ଦିରାଙ୍କୁ "ଦାୟିତ୍ୱ" ଦେଲା । ଇନ୍ଦିରା ସେଭଳି କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେନାହିଁ । ଘଟଣାଚକ୍ରରେ ଏହାର ଛଅ ବର୍ଷ ପରେ ଇନ୍ଦିରା ଚନ୍ଦ୍ରଶେଖରଙ୍କୁ ଜେଲ୍‌ରେ ଭର୍ତ୍ତି କରିଦେଲେ । ପରେ ସେଇ ଚନ୍ଦ୍ରଶେଖର ଜନତା ଦଳର ନେତୃତ୍ୱ ନେଲେ ଏବଂ ୧୯୭୭-୭୯ ଭିତରେ ତାଙ୍କ ଦଳ ତରଫରୁ ମୋରାରଜୀ ଦେଶାଇ ଭାରତର ପ୍ରଧାନମନ୍ତ୍ରୀ ହେଲେ । ଏହାର ଦଶ ବର୍ଷ ପରେ ଚନ୍ଦ୍ରଶେଖର ନିଜେ ଚାରି ମାସ ପାଇଁ ପ୍ରଧାନମନ୍ତ୍ରୀ ହୋଇଥିଲେ ।

ଦଳ ଭିତରେ ଗୋଟିଏ ଗୃହ ଯୁଦ୍ଧ ପରିସ୍ଥିତି ସୃଷ୍ଟିହେବା ସହିତ ଦଳର ସାଙ୍ଗଠନିକ ପରିସ୍ଥିତି ବି ସେତେବେଳେ ଖରାପ ଅବସ୍ଥାରେ ପହଞ୍ଚିଥିଲା । କାମରାଜଙ୍କ କାର୍ଯ୍ୟକାଳ ପୂରିବାପରେ କର୍ଣ୍ଣାଟକର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଏସ୍ ନିଜଲିଙ୍ଗାପ୍ପା ତାଙ୍କ ଦାୟିତ୍ୱ ଗ୍ରହଣ କଲେ । ସେ ସିଣ୍ଡିକେଟ୍‌ର ଜଣେ ମୂଳ ସଭ୍ୟ ଥିଲେ । ହେଲେ, ଇନ୍ଦିରା ଓ ତାଙ୍କ ଭିତରେ କୌଣସି କଳହ ନଥିବାରୁ ତାଙ୍କୁ ନେଇ ଇନ୍ଦିରାଙ୍କ କୌଣସି ବିରୋଧ ନଥିଲା । ପ୍ରଥମେ ସେ କାମରାଜଙ୍କ ସିଣ୍ଡିକେଟ୍ ଏବଂ ଇନ୍ଦିରାଙ୍କ ଭିତରେ ପାରୁପର୍ଯ୍ୟନ୍ତ ନିରପେକ୍ଷ ରହିବା ପାଇଁ ପ୍ରଯତ୍ନ କଲେ । ତାଙ୍କ କାର୍ଯ୍ୟକାରୀ କମିଟିରେ ସେ ଦୁଇ ପକ୍ଷରୁ ସମାନ ସଂଖ୍ୟକ ପ୍ରତିନିଧିଙ୍କୁ ରଖିଲେ । ଯେତେବେଳେ କାମରାଜ

ଏବଂ ଦେଶାଇ ଇନ୍ଦିରାଙ୍କୁ ବହିଷ୍କାର କରିବାପାଇଁ ତାଙ୍କ ସମର୍ଥନ ଲୋଡ଼ିଲେ ସେ ମନା କରିଦେଲେ । ସେ ତାଙ୍କ ଡ଼ାଇରିରେ ଏ ସମ୍ପର୍କରେ ଲେଖିଛନ୍ତି ଯେ ସେତିକିବେଳେ ସେ ସେମାନଙ୍କୁ କହିଥିଲେ ଯେ ପ୍ରଧାନମନ୍ତ୍ରୀଙ୍କୁ ବଳପୂର୍ବକ ଅପସାରଣ କରିବା ଅର୍ଥ ହେଉଛି "ଦଳକୁ ଖଣ୍ଡଖଣ୍ଡ କରି ଭାଙ୍ଗିଦେବା ଏବଂ ସାରା ଦେଶକୁ ଅରାଜକତାର ମୁହଁକୁ ଠେଲିଦେବା ।" ପରେ କିନ୍ତୁ ସେ ଇନ୍ଦିରାଙ୍କ ଉପରେ କ୍ଷୁବ୍ଧ ଏଇ କାରଣରୁ ହୋଇଥିଲେ ଯେ ଦଳର ମୁଖ୍ୟଭାବେ ତାଙ୍କୁ ପଚରାଯାଇ ଯେଉଁ ନିଷ୍ପତ୍ତି ନିଆଯିବା କଥା, ସେଭଳି ନିଷ୍ପତ୍ତି ନେଲାବେଳେ ଇନ୍ଦିରା ତାଙ୍କ ପରାମର୍ଶ ନେଉ ନଥିଲେ । ତେଣୁ ପରବର୍ତ୍ତୀ କାଳରେ ସେ ତାଙ୍କ ଡ଼ାଇରିରେ ଏୟା ବି ଲେଖିଥିଲେ ଯେ ଇନ୍ଦିରା ଆଉ "ପ୍ରଧାନମନ୍ତ୍ରୀଭାବେ ରହିବାର କୌଣସି ଯଥାର୍ଥତା ନଥିଲା ।" ତାଙ୍କର ଏହି ହୃଦୟ ପରିବର୍ତ୍ତନବେଳକୁ କାମରାଜ ଏବଂ ଏସ୍.କେ. ପାଟିଲ୍ ଦୁଇ ବର୍ଷ ପରେ ପୁଣି ପାର୍ଲିଆମେଣ୍ଟକୁ ନିର୍ବାଚିତ ହୋଇ ଆସିଯାଇଥିଲେ ।

ଦିଲ୍ଲୀଠାରୁ ଅନତିଦୂର ଫରିଦାବାଦ ଠାରେ ଅନୁଷ୍ଠିତ ହୋଇଥିବା ଏଆଇସିସି ଅଧିବେଶନରେ ନିଜଲିଙ୍ଗାପ୍ପା ତାଙ୍କ ଅଧ୍ୟକ୍ଷ ଅଭିଭାଷଣରେ ଇନ୍ଦିରାଙ୍କ ଅର୍ଥନୈତିକ ନୀତିର କଟୁ ସମାଲୋଚନା  କରିଥିଲେ । ଇନ୍ଦିରା ଏହାର ଗୋଟିଏ ଠିକଣା ଉତ୍ତର ଦେବାପୂର୍ବରୁ କିଛି ବରିଷ୍ଠ କଂଗ୍ରେସ ନେତା ବିରକ୍ତିର ସହ ସେ ସ୍ଥଳ ବର୍ଜନ କଲେ ଏବଂ "ତରୁଣ ତୁର୍କୀ"ମାନେ ସଙ୍ଗେ ସଙ୍ଗେ ନିଜଲିଙ୍ଗାପ୍ପାଙ୍କୁ "ସେନ୍‌ସର୍ ବା ନିୟନ୍ତ୍ରଣ କରିବାପାଇଁ ଏକ ପ୍ରସ୍ତାବ ଆଣିଲେ । ନିଜଲିଙ୍ଗାପ୍ପା ଏହାକୁ ପ୍ରତ୍ୟାଖ୍ୟାନ କଲେ । ପରିସ୍ଥିତି ଆଉ ଖରାପ ହେବା ପୂର୍ବରୁ ଯେଉଁ ପେଣ୍ଡାଲ୍‌ରେ ମିଟିଂ ହେଉଥିଲା, ତହିଁରେ ନିଆଁ ଲାଗିଗଲା । ଫରିଦାବାଦର ଯୁଦ୍ଧ ସତରେ ଧୂଆଁରେ ସରିଲା ।

ଏଭଳି ପରିସ୍ଥିତିରେ ଇନ୍ଦିରା ସରକାର ପୂରା ସ୍ଥାଣୁ ହୋଇଯିବାରେ ବିସ୍ମୟକର କିଛି ନଥିଲା । ଏଇ ଭିତରେ ଦେଶର ସମସ୍ୟା ବି ବଢ଼ିଚାଲିଥିଲା । ପୁରୁଣା ସମସ୍ୟାଗୁଡ଼ିକର ସମାଧାନ ପାଇଁ ଚେଷ୍ଟା କରାଯାଉନଥିବାରୁ ସେଗୁଡ଼ିକ ବି ଜଟିଳ ଆକାର ଧାରଣ କରୁଥିଲା ।

ନୂଆ ସମସ୍ୟା ଭିତରେ ଥିଲା କେତେକ ରାଜ୍ୟରେ ଆରମ୍ଭ କରାଯାଇଥିବା "ଜମି ଛଡ଼ାଅ ଆନ୍ଦୋଳନ" ଏବଂ  ଭାରତର ପ୍ରଥମ ମାର୍କ୍ସବାଦୀ ଦଳ, "ଦ କମ୍ୟୁନିଷ୍ଟ ପାର୍ଟି ଅଫ୍ ଇଣ୍ଡିଆ" (ମାର୍କ୍‌ସିଷ୍ଟ୍ ଲେନିନିଷ୍ଟ)ର ଜନ୍ମ । ଏହାର ପ୍ରଥମ ବୈଠକ ଯେହେତୁ ପଶ୍ଚିମବଙ୍ଗର ଉତ୍ତର ଭାଗରେ ଅବସ୍ଥିତ ନକ୍‌ସଲ୍‌ବାରି ନାମକ ଏକ ଗ୍ରାମରେ ହୋଇଥିଲା, ସେହେତୁ ସେଇ ଆଦର୍ଶର ଅନୁଗାମୀମାନଙ୍କୁ ନକ୍‌ସଲ୍‌ବାଦୀ ବୋଲି ଡ଼କାଗଲା ।

କେବଳ "ତରୁଣ ତୁର୍କୀ" ମାନେ ନୁହେଁ, କଂଗ୍ରେସର ଅନେକ ପୁରୁଖା ସଦସ୍ୟମାନେ ମଧ୍ୟ କ୍ଷୁବ୍ଧ ଏବଂ ଅଧୈର୍ଯ୍ୟ ହୋଇ ଇନ୍ଦିରାଙ୍କୁ ସିଣ୍ଡିକେଟ୍ ଏବଂ ମୋରାରଜୀଙ୍କ ସହ ଲଢ଼େଇ ଆରମ୍ଭକରି ଏହାକୁ ଏକ ଯଥାର୍ଥ ଉପସଂହାରରେ ପହଞ୍ଚାଇବାକୁ ଅନୁରୋଧ କରୁଥିଲେ । କିନ୍ତୁ, ଇନ୍ଦିରା ଠିକ୍ ଜାଣିଥିଲେ ଯେ ଦଳୀୟ କନ୍ଦଳକୁ ସାମନା କରିବା ଅପେକ୍ଷା ବାହାରର ଆହ୍ୱାନର ମୁକାବିଲା କରିବା ହିଁ ଅଧିକ ଗୁରୁତ୍ୱପୂର୍ଣ୍ଣ ।

ଉତ୍ତର ଭାରତରେ କଂଗ୍ରେସକୁ ପରାଜିତ କରି ଯେଉଁ ମେଣ୍ଟ ସରକାର ଆସିଥିଲା, ତାର ପତନ ଖୁବ୍ ଶୀଘ୍ର ହୋଇଥାନ୍ତା, କିନ୍ତୁ ସେଇ ମେଣ୍ଟ ଭିତରେ ଅନେକ ନୂତନ ମେଣ୍ଟ ଗଢ଼ାଯାଉଥିଲା ଏବଂ ଭଙ୍ଗାଯାଉଥିଲା ଏବଂ ଯେଉଁମାନେ ବି ସରକାର ଗଢ଼ିବାକୁ ଆସୁଥିଲେ ସେମାନେ ସମସ୍ତେ ଥିଲେ ସୁଯୋଗବାଦୀ ଏବଂ କ୍ଷଣସ୍ଥାୟୀ । ମନ୍ତ୍ରୀପଦ ଏବଂ ଟଙ୍କାର ଲୋଭରେ ବିଧାୟକ ଏବଂ ସାଂସଦମାନେ ଏମିତିଭାବେ ସେମାନଙ୍କ ଆନୁଗତ୍ୟକୁ ପରିବର୍ତ୍ତନ କରୁଥିଲେ ଯେ ସେମାନଙ୍କୁ "ଆୟାରାମ ଏବଂ ଗୟାରାମ" ବୋଲି କୁହାଯିବା ଆରମ୍ଭ କରାଯାଇଥିଲା । ଏହା ଦ୍ୱାରା ସମଗ୍ର ରାଜନୀତିକୁ ଏକ ପ୍ରକାର କୁଖ୍ୟାତି ମିଳିସାରିଥିଲା ।

ଇନ୍ଦିରା ଗାନ୍ଧିଙ୍କ ପାଇଁ ଆଉ ଏକ ଅସ୍ୱସ୍ତିର କାରଣ ହୋଇଥିଲା ପଶ୍ଚିମବଙ୍ଗରେ ବାମ ଫ୍ରଣ୍ଟ୍ ମନ୍ତ୍ରୀ ମଣ୍ଡଳର ଶାସନ । ଏହି ସରକାରର ମୁଖ୍ୟମନ୍ତ୍ରୀ ପଦବୀରେ ଥାଆନ୍ତି ଅଜୟ ମୁଖାର୍ଜୀ, ରାଜନୈତିକ ଓଜନ ନଥିବା ଅଥଚ ଅତି ସଚ୍ଚୋଟ ଭଦ୍ରବ୍ୟକ୍ତି । ଉଲ୍ଲେଖ କରାଯାଇପାରେ କି ଏହାଙ୍କୁ ଏକଚ୍ଛତ୍ରବାଦୀ ଅତୁଲ୍ୟ ଘୋଷ କଂଗ୍ରେସରୁ ବହିଷ୍କାର କରିଦେଇଥିଲେ । ସେ ଯାହାହେଉ, ମୁଖାର୍ଜୀଙ୍କ ନୂଆ ପଦବୀ ଥିଲା ନାମକୁ ମାତ୍ର । ପ୍ରକୃତ କ୍ଷମତା ରହିଥିଲା କମ୍ୟୁନିଷ୍ଟ୍ ପାର୍ଟି ଅଫ୍ ଇଣ୍ଡିଆ (ମାର୍କ୍ସ୍‌ବାଦୀ) ବା ସିପିଆଇ (ଏମ୍) ଦଳ ହାତରେ ଯାହାର ନେତୃତ୍ୱ ନେଉଥିଲେ ଜ୍ୟୋତି ବସୁ । ବଙ୍ଗାଳି ଭଦ୍ରଲୋକ (ସହରୀ ମଧ୍ୟବିତ୍ତ ପରିବାର)ଙ୍କ ଭିତରେ ବସୁଙ୍କର ଥିଲା ଅନେକ ସମର୍ଥନ । ଦ କମ୍ୟୁନିଷ୍ଟ୍ ପାର୍ଟି ଅଫ୍ ଇଣ୍ଡିଆର ଯଦିଓ ସିପିଆଇ (ଏମ୍) ସହ ପଟୁନଥିଲା ତଥାପି ତାହା ଥିଲା ବାମଫ୍ରଣ୍ଟ୍ ସରକାରର ଗୋଟିଏ ଛୋଟ ଅଂଶୀଦାର ଦଳ । ସୋଭିଏତ୍ ଏବଂ ଚୀନ ମଧ୍ୟରେ ଜାତ ହୋଇଥିବା ବିଭେଦ ଯୋଗୁ ଭାରତୀୟ କମ୍ୟୁନିଷ୍ଟ ଆନ୍ଦୋଳନ ଷାଠିଏ ଦଶକର ଆଦ୍ୟ ଭାଗରେ ଦୁଇ ଭାଗରେ ବିଭକ୍ତ ହୋଇଯାଇଥିଲା ।

୧୯୬୭ ମସିହା ନଭେମ୍ବର ମାସ ଇନ୍ଦିରା ପଶ୍ଚିମବଙ୍ଗରେ ସେଇଆ କଲେ ଯାହା ସେ କଂଗେସ ଦଳର ସଭାନେତ୍ରୀଭାବେ ୧୯୫୯ ମସିହା ଜୁଲାଇ ମାସରେ କେରଳରେ କରିଥିଲେ । ସେ ପଶ୍ଚିମବଙ୍ଗର ରାଜ୍ୟପାଳଙ୍କୁ ସେଇ ରାଜ୍ୟର ସରକାରକୁ ବହିଷ୍କାର କରିବାକୁ ଆଦେଶ ଦେଇ ଆଉ ଏକ ବିକଳ୍ପ ସରକାର ଶପଥ ନେବାର ବ୍ୟବସ୍ଥା କଲେ । ବାମ ଫ୍ରଣ୍ଟ୍‌ରୁ ଅସନ୍ତୁଷ୍ଟ ହୋଇ "ବାହାରି ଆସିଥିବା" କିଛି ନେତାଙ୍କୁ ନେଇ ଗଢ଼ା ହୋଇଥିବା ଏହି ସରକାରକୁ ବାହାରୁ ଢ଼ିରା ଦେଇଥିଲା କଂଗ୍ରେସ ଦଳ । କିନ୍ତୁ ବାମଫ୍ରଣ୍ଟ୍ ଏହି ଚାଲକୁ ସଫଳ ହେବାକୁ ଦେଲାନାହିଁ ଏବ ସମଗ୍ର ପ୍ରସଙ୍ଗକୁ ନେଇ ରାସ୍ତାକୁ ଓହ୍ଲାଇ ଆସିଲା ଏବଂ ବିଧାନସଭାକୁ ଅଚଳ କରିଦେବାରେ ସଫଳ ହେଲା । ପଶ୍ଚିମବଙ୍ଗର ବିଧାନସଭାକୁ ଭାଙ୍ଗିଦିଆଗଲା ଏବଂ ଏହା ସହିତ ମଧ୍ୟ ଅନ୍ୟ ଅଣ କଂଗ୍ରେସ ରାଜ୍ୟର ସରକାରକୁ ଭାଙ୍ଗି ଦେଇ - କେବଳ ତାମିଲନାଡୁର ଡ଼ିଏମ୍‌କେ ସରକାର ଥିଲା ବ୍ୟତିକ୍ରମ - ସେଠାରେ ସାନି ନିର୍ବାଚନର ଘୋଷଣା କରାଗଲା । ଫେବୃୟାରୀ, ୧୯୬୯ରେ ଏହି ନିର୍ବାଚନ ଅନୁଷ୍ଠିତ ହେଲା ।

ଏହି 'ଛୋଟ ସାଧାରଣ ନିର୍ବାଚନ'ରେ କଂଗ୍ରେସ ଉତ୍ତର ଭାରତର ରାଜ୍ୟଗୁଡ଼ିକରେ,

ବିଶେଷକରି ଗୁରୁତ୍ୱପୂର୍ଣ୍ଣ ଉତ୍ତରପ୍ରଦେଶ ଏବଂ ବିହାରରେ ପୁଣି କ୍ଷମତାକୁ ଫେରିଲା । କିନ୍ତୁ ପଶ୍ଚିମବଙ୍ଗରେ ବାମ ଫ୍ରଣ୍ଟ୍ ବା ସାମ୍ମୁଖ୍ୟର ବିଜୟ କଂଗ୍ରେସର ଏହି ସଫଳତାକୁ ନିଷ୍ପ୍ରଭ କରିଦେଲା । ୧୯୬୭ର ବିଜୟ ଠାରୁ ଏହା ଥିଲା ଆହୁରି ବଡ଼ ବିଜୟ ଏବଂ ବାମ ସାମ୍ମୁଖ୍ୟରେ ସିପିଆଇ(ଏମ୍)ର ପତିଆରା ଆଗ ଅପେକ୍ଷା ଆହୁରି ଅଧିକ ବୃଦ୍ଧି ପାଇଥିଲା । କଂଗ୍ରେସର କିନ୍ତୁ ସେଠାରେ ମୂଳୋତ୍ପାଟନ ହୋଇଯାଇଥିଲା । ଅଜୟ ମୁଖାର୍ଜୀ ମୁଖ୍ୟମନ୍ତ୍ରୀ ଥିଲେ କିନ୍ତୁ ତାଙ୍କର ପ୍ରଭାବଶୂନ୍ୟ ପରିସ୍ଥିତି ଏବେ ଆହୁରି ଫାର୍ସ୍ ଭଳିଆ ମନେହେଉଥିଲା । ମାର୍କସୀୟ କର୍ମୀମାନେ ପାର୍ଟିକୁ ନେଇ ଅନୈତିକ ଭାବେ ବରଖାସ୍ତ କରାଯିବାରେ ଭୀଷଣ କ୍ଷୁବ୍ଧ ହୋଇଥିଲେ, ତେଣୁ ଏଥରର ବିଜୟ ସେମାନଙ୍କ ଭିତରେ ଏକ ଉଲ୍ଲସିତ ଆନନ୍ଦର ବାତାବରଣ ସୃଷ୍ଟି କରିଥିଲା ଏବଂ ଆଗ୍ରହାତିଶଯ୍ୟରେ ସେମାନେ ବଳ ପ୍ରଦର୍ଶନ କରିବା ଠାରୁ ଆରମ୍ଭକରି ଦଳର ଚରମବାଦୀ ନିୟମସବୁକୁ ଆଗକୁ ଆଣିବାକୁ ଚାହଁଲେ,ଯାହା କି ପଶ୍ଚିମବଙ୍ଗଭଳି ଏକ ସମ୍ବେଦନଶୀଳ ରାଜ୍ୟରେ ସଂଘର୍ଷ ଏବଂ ହିଂସାର ସୂତ୍ରପାତ ହେଲା । କିଛିଦିନ ପରେ ପରିସ୍ଥିତି ଅବିଶ୍ୱସନୀୟ ଭାବେ ଦୁଃସହ ହୋଇପଡ଼ିଲା । ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ ନିଜ ସରକାର ବିରୋଧରେ "ଅନଶନ" କଲେ । ଇନ୍ଦିରା କାଳ ବିଳମ୍ବ ନକରି ପୁଣି ଆଉଥରେ ପଶ୍ଚିମବଙ୍ଗ ସରକାରଙ୍କୁ ବହିଷ୍କାର କରି ରାଷ୍ଟ୍ରପତି ଶାସନ ଜାରି କରିଦେଲେ ।

## କଂଗ୍ରେସର ବିଭାଜନ

ଏହି ପୃଷ୍ଠଭୂମିରେ ଯେଉଁ ମୁକାବିଲାକୁ ଇନ୍ଦିରା ସବୁବେଳେ ଏଡ଼ାଇଯିବାକୁ ଚାହୁଁଥିଲେ, ତାହା ଘଟିବା ବର୍ତ୍ତମାନ ନିଶ୍ଚିତ ହୋଇପଡ଼ିଥିଲା । ଫରିଦାବାଦର ତିକ୍ତତାର ଅଳ୍ପ କିଛିଦିନ ପରେ ୧୯୬୯ ମସିହା ମେ ୩ ତାରିଖରେ ହଠାତ୍ ଜାକିର ହୁସେନ୍‌ଙ୍କ ଦେହାନ୍ତ ହୋଇଗଲା ଏବଂ ସିଣ୍ଡିକେଟ୍ ଯେଉଁ ସୁଯୋଗକୁ ଟାକି ବସିଥିଲା, ତାହା ମିଳିଗଲା । କିନ୍ତୁ, କିଛି ନ ଜାଣିଲା ପରି ସିଣ୍ଡିକେଟ୍ ନିଜ ପ୍ରାର୍ଥୀ ନିଲମ ସଞ୍ଜୀବ ରେଡ଼୍‌ଡ଼ିଙ୍କୁ ପରବର୍ତ୍ତୀ ରାଷ୍ଟ୍ରପତି ପ୍ରାର୍ଥୀ ରୂପେ ଉପସ୍ଥାପିତ କଲା ଏବଂ ସିଣ୍ଡିକେଟ୍ ଭାବି ନେଇଥିଲା ଯେ ନିଜ ଲୋକଙ୍କୁ ନେଇ ରାଷ୍ଟ୍ରପତି ଭବନରେ ବସାଇଲେ ଇନ୍ଦିରା ଗାନ୍ଧିଙ୍କୁ ବିଦା କରିଦେବା ସହଜ ହେବ । ଇନ୍ଦିରା ଏହି ଯୋଜନାକୁ ବୁଝିପାରି ଏହାକୁ ବିଫଳ କରିବାପାଇଁ ନିଜେ ଆଉ ଏକ ଯୋଜନା ତିଆରି କରିବାରେ ଲାଗିଗଲେ । ରାଷ୍ଟ୍ରପତି ପଦ ନିମନ୍ତେ ଦଳ ପକ୍ଷରୁ ପ୍ରାର୍ଥୀ ବାଛିବାପାଇଁ ଗୁରୁତ୍ୱପୂର୍ଣ୍ଣ ପାର୍ଲିଆମେଣ୍ଟରି ବୋର୍ଡ଼ର ବୈଠକ ବସିବା ପୂର୍ବରୁ ମଧ୍ୟ ଜୁଲାଇରେ ବାଙ୍ଗାଲୋରଠାରେ ଏଆଇସିସିର ଅଧିବେଶନ ବସିବାର ଥିଲା ।

୧୯୬୭ର ସାଧାରଣ ନିର୍ବାଚନ ପରେ ପରେ ଇନ୍ଦିରା ପ୍ରଧାନମନ୍ତ୍ରୀଙ୍କ ସଚିବ ଭାବେ ଏଲ୍.କେ. ଝାଙ୍କୁ ବଦଳାଇ ତାଙ୍କ ସ୍ଥାନରେ ପିଏନ୍ ହସ୍କରଙ୍କୁ ନିଯୁକ୍ତ କରିଥିଲେ । ହସ୍କରଙ୍କୁ ଇନ୍ଦିରା ଲଣ୍ଡନରେ ତାଙ୍କ ଛାତ୍ର ଜୀବନ ବେଳୁ ଜାଣିଥିଲେ ଏବଂ ହସ୍କର୍ ସେତେବେଳେ

"ପିନ୍‌କ୍ ଥାର୍ଟିଙ୍କ୍" ଆଦର୍ଶର ଥିଲେ ବଡ଼ ଅନୁଗାମୀ ଏବଂ ନେହେରୁ ଭକ୍ତ । ତାଙ୍କୁ ଇନ୍ଦିରା ଏକାନ୍ତଭାବେ ବିଶ୍ୱାସ କରୁଥିଲେ । ତେଣୁ ତାଙ୍କ ବିଷୟରେ ଯଥାର୍ଥରେ କୁହାଯାଏ ଯେ ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ସେ ଯେ କେବଳ ଦେଶର ସବୁଠାରୁ ଅଧିକ କ୍ଷମତାଶାଳୀ "ସିଭିଲ୍ ସର୍ଭ୍ୟାଣ୍ଟ୍" ବା ପ୍ରଶାସନିକ ଅଧିକାରୀ ଥିଲେ ତାହା ନୁହେଁ, ସେ ମଧ୍ୟ ଥିଲେ ଦେଶର ଦ୍ୱିତୀୟ ସବୁଠାରୁ ଅଧିକ କ୍ଷମତାଶାଳୀ ବ୍ୟକ୍ତି । ଏହାଛଡ଼ା ଏଚ୍.ୱାଇ. ଶାରଦାପ୍ରସାଦ, ଯିଏ କି ଇନ୍ଦିରାଙ୍କ ସୂଚନା ପରାମର୍ଶଦାତା ଭାବେ କାର୍ଯ୍ୟ ଆରମ୍ଭକରି ଇନ୍ଦିରାଙ୍କ ଶେଷ ଯାଏଁ ତାଙ୍କ ସହିତ ଥିଲେ, କହନ୍ତି - "ହକ୍‌ସର୍ ଯେ ଇନ୍ଦିରା ଗାନ୍ଧିଙ୍କ ଠାରୁ କିଛି କର୍ତ୍ତୃତ୍ୱ ଆହରଣ କରିଥିଲେ, ତାହା ନୁହେଁ, ସେ ମଧ୍ୟ ଇନ୍ଦିରାଙ୍କ ଆଧିପତ୍ୟ ପାଇଁ ଅଢେ ବହୁତେ ଉପାଦାନ ଯୋଗାଇଥିଲେ ।"

ବାଙ୍ଗାଲୋର୍ ଅଧିବେଶନ ପାଇଁ ଏହାଥିଲା ସବୁଠାରୁ ବଡ଼ ଆହ୍ୱାନ । ହକ୍‌ସରଙ୍କ ସହିତ ପରାମର୍ଶ ପରେ ଇନ୍ଦିରା ସ୍ଥିରକଲେ ଯେ ତାଙ୍କ କାର୍ଯ୍ୟକଳାପ ଏଣିକି ଏଭଳି ହେବା ଉଚିତ, ଯେଭଳି କି ରାଷ୍ଟ୍ର ତାଙ୍କର ଦେଖାଇ ବା ସିଣ୍ଡିକେଟ୍ ସହ ମନୋମାଳିନ୍ୟକୁ ବ୍ୟକ୍ତିଗତ କ୍ଷମତା ହାସଲ ପାଇଁ ଏକ ଲଢ଼େଇଭାବେ ନଦେଖି ଦେଖିବ ଏକ ଆଦର୍ଶଗତ ଯୁଦ୍ଧଭାବେ । ଫରିଦାବାଦରେ ଅର୍ଥନୈତିକ ପଲିସିକୁ ନେଇ ଗଣ୍ଡଗୋଳ ହେବାପରେ ଇନ୍ଦିରାଙ୍କ ବାମବାଦୀ ସମର୍ଥକମାନଙ୍କ ସଂଖ୍ୟା ବେଶ୍ ବଢ଼ିଯାଇଥିଲା ଏବଂ ସେମାନେ ଦଳ ଭିତରର "ପ୍ରତିକ୍ରିୟାଶୀଳ ଗୋଷ୍ଠୀ"ଟିର ମୁକାବିଲା କରି ଶେଷ କରିଦେବାକୁ ଉଦ୍‌ବିଗ୍ନ ହୋଇ ବସିରହିଥିଲେ । କିନ୍ତୁ, ଏଥିରେ ଇନ୍ଦିରାଙ୍କ ଆଚରଣ ଥିଲା ସ୍ୱାଭାବିକ ଭାବେ ତାଙ୍କ ନିଜ ଶୈଳୀରେ, ଚୁପ୍ ଚାପ୍ ।

ବ୍ୟସ୍ତ ଅଛନ୍ତି ବୋଲି କହି ସେ ନିଜକୁ କାର୍ଯ୍ୟକାରୀ କମିଟିର ଅଧିବେଶନରେ ଅନୁପସ୍ଥିତ ରଖିଲେ । କିନ୍ତୁ, ସେ ଗୋଟିଏ କାଗଜକୁ ଅର୍ଥନୈତିକ ପଲିସି ଉପରେ କିଛି ଲେଖା ପଠାଇଲେ, ଯାହାର ଶିରୋନାମା ଥିଲା "ସଂପୂର୍ଣ୍ଣ କିମ୍ବା ଆଂଶିକଭାବେ ଗୃହୀତ ହେବାପାଇଁ "ତରବରିଆ ଭାବେ ଡ଼କାଯାଇଥିବା କିଛି ଏଣୁତେଣୁ ଭାବନା ।" ତନ୍ମଧ୍ୟରୁ କିଛି ଥିଲା ପୁରୁଣା, ଯେଉଁସବୁକୁ ନେଇ କୌଣସି ପଦକ୍ଷେପ ନିଆ ନଯାଇ କେବଳ ମୁହଁରେ ହିଁ ସେଗୁଡ଼ିକୁ ସମର୍ଥନ କରାଯାଉଥିଲା । କିନ୍ତୁ ଏହି ଲେଖାରେ ଯେଉଁ ବିସ୍ଫୋରକ ପ୍ରସଙ୍ଗର ଅବତାରଣା କରାଯାଇଥିଲା, ତାହା ଥିଲା ବ୍ୟାଙ୍କିଂ କ୍ଷେତ୍ରର ଭବିଷ୍ୟତକୁ ନେଇ । "ତରୁଣ ତୁର୍କୀ"ମାନେ ଯେଉଁଭଳି ବ୍ୟାଙ୍କ୍ ଜାତୀୟକରଣ କଥା ଦାବି କରୁଥିଲେ, ଇନ୍ଦିରା ପକ୍କା କୁଶଳତାର ପରିଚୟ ଦେଇ ଏକାଥରକେ ବଡ଼ ବ୍ୟାବସାୟିକ ବ୍ୟାଙ୍କ୍‌ଗୁଡ଼ିକର ଜାତୀୟକରଣ ପ୍ରସଙ୍ଗ ଉଠାଇନଥିଲେ । ସେ ଇଙ୍ଗିତ କରିଥିଲେ ଯେ ବ୍ୟାଙ୍କ୍‌ଗୁଡ଼ିକ ପାଇଁ ଅନୁମୋଦିତ ସାମାଜିକ ନିୟନ୍ତ୍ରଣ ବ୍ୟବସ୍ଥାର ମିଆଦ ସେ ଯାଏଁ ପୂରି ନଥିଲେ ବି ସେଗୁଡ଼ିକର "ଜାତୀୟକରଣ ପ୍ରସଙ୍ଗକୁ ଆଉଥରେ ବିଚାର କରାଯାଇପାରେ ।"

ସିଣ୍ଡିକେଟ୍ ଇନ୍ଦିରାଙ୍କୁ ସନ୍ଦେହୀ ବୋଲି ବିଚାରକରି ତାଙ୍କ ଆଚରଣର ପ୍ରତ୍ୟୁତ୍ତର ନିଜ ମତେ ଦେବାକୁ ଚାହିଁଲା । ସିଣ୍ଡିକେଟ୍‌ର ତତ୍ତ୍ୱାବଧାନରେ କଂଗ୍ରେସ କାର୍ଯ୍ୟକାରୀ କମିଟି ଇନ୍ଦିରାଙ୍କ "ପଲିସି କାଗଜକୁ ସମ୍ପୂର୍ଣ୍ଣ ଭାବେ" ସମର୍ଥନ କଲେ ଏବଂ ଟିକିଏ ବି ପରିହାସର ସ୍ୱର ନରଖି

ଘୋଷଣା କଲେ ଯେ ତାଙ୍କ ସରକାର ଏ ସମ୍ପର୍କରେ ପ୍ରସ୍ତାବଟିଏ ରଖିପାରେ । ପରଦିନ ଏଆଇସିସି କାର୍ଯ୍ୟକାରୀ କମିଟି ଏହି ପ୍ରସ୍ତାବକୁ ସର୍ବସମ୍ମତି କ୍ରମେ ଗ୍ରହଣ କଲା । ଗୋଟିଏ ବିସ୍ମୟକର ବ୍ୟତିକ୍ରମ ଥିଲା ଯେ ନିଜେ ମୋରାରଜୀ ଦେଶାଇ, ଉପସ୍ଥିତ ଅତିଥିମାନଙ୍କ ସମ୍ମୁଖରେ ଏହାକୁ ପ୍ରଂଶସା କଲେ ।

କିନ୍ତୁ ସମସ୍ତଙ୍କ ନଜର ମୁଖ୍ୟ ନାଟକ ଉପରେ ଥିଲା, ଏଇ "ସାଇଡ୍ ସୋ" ଉପରେ ନୁହେଁ । ଆଉ ପ୍ରକୃତ ନାଟକଟି ଥିଲା ଆଠ ଜଣିଆ ପାର୍ଲିଆମେଣ୍ଟାରି ବୋର୍ଡ଼ ଦ୍ୱାରା ରାଷ୍ଟ୍ରପତି ପ୍ରାର୍ଥୀ ବାଛିବା । ଉତ୍କଣ୍ଠାପୂର୍ଣ୍ଣ ପରିବେଶରେ ବୈଠକଟି ଆରମ୍ଭହେଲା ମାତ୍ରକେ ଇନ୍ଦିରା ତାଙ୍କ ମନୋନୀତ ପ୍ରାର୍ଥୀଙ୍କୁ ନେଇ ଗୋଟିଏ ବୁଝାମଣା ହୋଇଯାଉ ବୋଲି ଚାହିଁଲେ । ଜଗଜ୍ଜୀବନ ରାମଙ୍କୁ ରାଷ୍ଟ୍ରପତିଭାବେ ମନୋନୀତ କରି ଜଣେ ହରିଜନଙ୍କୁ ଦେଶର ସର୍ବୋଚ୍ଚ ଆସନରେ ବସାଇବାରେ ମହାତ୍ମା ଗାନ୍ଧିଙ୍କ ସ୍ୱପ୍ନ ପୂରଣ ହେବାର ସୁଯୋଗ ଆସିଛି ବୋଲି ସେ ତାଙ୍କ ଯୁକ୍ତି ଉପସ୍ଥାପନ କଲେ । କିନ୍ତୁ ସିଣ୍ଡିକେଟ୍ ସଞ୍ଜୀବ ରେଡ୍‌ଡ଼ିଙ୍କ ପ୍ରାର୍ଥୀତ୍ୱକୁ ନେଇ ଜିଦିରେ ଅଟଳ ଥିଲା । ସିଣ୍ଡିକେଟ୍‌ର ଆଚରଣକୁ ନେଇ ଇନ୍ଦିରା ଯେତିକି ବ୍ୟଥିତ ନଥିଲେ, ତାଙ୍କ ଗୃହମନ୍ତ୍ରୀ ଚଭାନ୍ ତାଙ୍କ ବିରୋଧରେ ଯାଇ ସିଣ୍ଡିକେଟ୍ ସପକ୍ଷରେ ଭୋଟ୍ ଦେବା ଥିଲା ଇନ୍ଦିରାଙ୍କ ପାଇଁ ଅଧିକ ବେଦନାଦାୟକ । ଥରେ ଏମିତି ରାଷ୍ଟ୍ରପତି ପ୍ରାର୍ଥୀ ମନୋନୀତ କରିବାକୁ ନେଇ ପାର୍ଲିଆମେଣ୍ଟାରି ବୋର୍ଡ଼ ତାଙ୍କ ବାପାଙ୍କ ମତକୁ ମଧ ନାକଚ କରିଦେଇଥିଲା । କିନ୍ତୁ ସେ ତାକୁ ସ୍ୱାଭାବିକଭାବେ ଗ୍ରହଣ କରିଥିଲେ । ତାର କାରଣ ଥିଲା, ନେହେରୁଙ୍କ ପରିସ୍ଥିତି ଥିଲା ବେଶ୍ ନିରାପଦ ଏପରିକି ଅପରାଜେୟ । କିନ୍ତୁ, ଇନ୍ଦିରାଙ୍କ ପରିସ୍ଥିତି ଥିଲା ଭିନ୍ନ । ତେଣୁ ଇନ୍ଦିରା କହିଲେ, "ସିଣ୍ଡିକେଟ୍‌ର କାର୍ଯ୍ୟ ଥିଲା ତାଙ୍କ ପଦବୀ, ତାଙ୍କ ପଲିସି ସର୍ବୋପରି ତାଙ୍କ ଉପରେ ସିଧାସଳଖ "ଆକ୍ରମଣ ।" ଗୋଟିଏ "ଘାଇଲା ବାଘୁଣୀ" ପରି ସେ ପ୍ରତିଆକ୍ରମଣ କରିବାକୁ ବଦ୍ଧପରିକର ହେଲେ ।

ସମସ୍ତେ ଆଶା କରିଥିଲେ ଯେ ସେ ଚଭନ୍‌ଙ୍କ ବିପକ୍ଷରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବେ । କିନ୍ତୁ ସେଭଳି କିଛି ନକରି ସେ ସମସ୍ତଙ୍କୁ ଆଚମ୍ବିତ କରିଦେଲେ । ଏଇ ସମୟରେ ମୋରାରଜୀ ଦେଶାଇ ଇସ୍ତଫା ଦେଇ ସାରା ଭାରତରେ ଚାଞ୍ଚଲ୍ୟ ଖେଳାଇଦେଲେ । ଏହା କରିବା ପଛରେ ତାଙ୍କ କାରଣ ଥିଲା ଏୟା ଯେ ଇନ୍ଦିରା ତାଙ୍କ ହାତରୁ ଅର୍ଥ ବିଭାଗ କାଢ଼ିନେଇ ତାଙ୍କୁ କେବଳ ବିଭାଗହୀନ ଉପପ୍ରଧାନମନ୍ତ୍ରୀ ଭାବେ ରହିବାକୁ କହିଥିଲେ । ତାଙ୍କ ପଠାଇଥିବା ଗୋଟିଏ ଚିଠିରେ ଇନ୍ଦିରା ତାଙ୍କୁ ଅତି ନମ୍ରତାର ସହ ଲେଖିଥିଲେ ଯେ ଯେହେତୁ କିଛି "କିଛି ମୌଳିକ ପ୍ରସଙ୍ଗକୁ ନେଇ ଦେଶାଇଙ୍କର ଦୃଢ଼ ଅସମ୍ମତି" ଅଛି, ସେଇ କାରଣରୁ ଏଆଇସିସି ଦ୍ୱାରା ଅନୁମୋଦିତ ଅର୍ଥନୈତିକ କାର୍ଯ୍ୟକ୍ରମକୁ ରୂପାୟନ କରିବା ଦିଗରେ ତାଙ୍କୁ ଅଧିକ ଭାରାକ୍ରାନ୍ତ କରାଯିବା ଉଚିତ୍ ନୁହେଁ । ଏଥିରେ ମ୍ରିୟମାଣ ଦେଶାଇ ତାଙ୍କ ସହିତ "ଚପରାଶି ଭଳି ବ୍ୟବହାର" କରାଯାଉଛି ଏବଂ ଏହା ଇନ୍ଦିରାଙ୍କର ଏକ ଅସୌଜନ୍ୟତା ବୋଲି ଅଭିଯୋଗ କରି ପଦ ଛାଡ଼ିଲେ । ଅବଶ୍ୟ ବ୍ୟକ୍ତିଗତଭାବେ ଇନ୍ଦିରା ତାଙ୍କର କିଛି ଅତି ପ୍ରିୟ ଲୋକଙ୍କ ପାଖରେ

କହିଥିଲେ ଯେ ଘଟଣାକ୍ରମ ଯେଉଁଭଳି ମୋଡ଼ନେଲା, ସେଥିରେ ସେ ନିଜେ ଦୁଃଖିତ । ସେ କହିଥିଲେ, ଦେଶାଇ ଥିଲେ 'ସିଧାଲୋକ', ଏବଂ ଚଭନ୍ ଥିଲେ 'ଗୋଳମାଳିଆ' । କିନ୍ତୁ ଚଭନ୍‌ଙ୍କ ବିପକ୍ଷରେ କିଛି କାର୍ଯ୍ୟାନୁଷ୍ଠାନ ହୋଇଥିଲେ ତହିଁରୁ ପ୍ରତିଶୋଧପରାୟଣତାର ଗନ୍ଧ ବାହାରିଥାଆନ୍ତା ।

ଏହି ସୁଯୋଗର ସଦ୍‌ବ୍ୟବହାର କରି ଇନ୍ଦିରା ଏମିତି ଏକ ପଦକ୍ଷେପ ନେଲେ ଯଦ୍ୱାରା କି ଦେଶାଇଙ୍କ ଇସ୍ତଫାର ଧକ୍‌କାରୁ ମୁକୁଳିବାକୁ ତାଙ୍କ ପ୍ରତିପକ୍ଷମାନେ ସମୟ ପାଇଲେ ନାହିଁ । ଯଦିଓ ପାର୍ଲିଆମେଣ୍ଟର ଅଧିବେଶନ ସୋମବାର ଦିନ ଆରମ୍ଭ ହେବାକୁ ଥିଲା, ତାର ଦୁଇ ଦିନ ପୂର୍ବରୁ ଅର୍ଥାତ୍ ଶନିବାର ଦିନ ଗୋଟିଏ ଅଧ୍ୟାଦେଶ ବଳରେ ଇନ୍ଦିରା ଚଉଦଟି ବ୍ୟାବସାୟିକ ବ୍ୟାଙ୍କ୍‌କୁ ଜାତୀୟକରଣ କରିଦେଲେ । ଏହାପରେ ସିଣ୍ଡିକେଟ୍ ଏହାକୁ "ରାଜନୈତିକ ଉଦ୍ଦେଶ୍ୟ ପ୍ରଣୋଦିତ" ଏବଂ ଅର୍ଥନୈତିକ ସଂସ୍କାର ସହ ଏହାର କୌଣସି ସମ୍ପର୍କ ନାହିଁ ବୋଲି ଚିଲ୍ଲାଇବାକୁ ଲାଗିଲେ । କିନ୍ତୁ ବ୍ୟାଙ୍କ୍ ଜାତୀୟକରଣର ଅଧ୍ୟାଦେଶକୁ ସାରା ଦେଶ ଯେଉଁ ଆନନ୍ଦର ସହିତ ସ୍ୱାଗତ ଜଣାଇଲା ସେଥିରେ ଏହି ଚିତ୍କାର କୁଆଡ଼େ ମିଳାଇଗଲା ।

ଆଜିକାର ଜଗତ୍‌କରଣ ଏବଂ ଉଦାରୀକରଣ ଯୁଗରେ ଯିଏ ବ୍ୟାଙ୍କ୍ ଜାତୀୟକରଣ କରାଯିବା ସମୟର ବୈଦ୍ୟୁତିକ ପରିବେଶକୁ ଅଙ୍ଗେ ନ ନିଭେଇଛି, ସେ ହୁଏତ ପରିସ୍ଥିତିକୁ ବିଶ୍ୱାସ କରିପାରିବେ ନାହିଁ । କଥା ହେଉଛି ଆମ ଦେଶର ଏ ମୁଣ୍ଡରୁ ସେ ମୁଣ୍ଡ ଯାଏଁ ସମସ୍ତ ଲୋକ ପ୍ରଧାନମନ୍ତ୍ରୀଙ୍କୁ ଉଲ୍ଲସିତ ପ୍ରଶଂସା କରିବାକୁ ଲାଗିଲେ । ସାଧାରଣ ଲୋକେ ରାସ୍ତା ଉପରେ ଖୁସିରେ ନାଚିବାକୁ ଲାଗିଲେ ଏବଂ ଯେଉଁମାନେ ଜୀବନରେ କେବେ ବି ବ୍ୟାଙ୍କ୍‌ରେ କାମ କରୁନଥିଲେ ବା ଭବିଷ୍ୟତରେ ଯେଉଁମାନଙ୍କ ବ୍ୟାଙ୍କ୍‌ରେ କାମ କରିବାର ସମ୍ଭାବନା ନଥିଲା, ସେମାନେ ବି ଆନନ୍ଦରେ ଆତ୍ମହରା ହୋଇପଡ଼ିଥିଲେ । ସମସ୍ତଙ୍କ ଭିତରେ ଗୋଟିଏ ଧାରଣା ଆସିଯାଇଥିଲା ଯେ ଶେଷରେ ଗରିବମାନଙ୍କ ପାଇଁ କିଛି କାମ କରାଗଲା ଏବଂ ଧନୀମାନଙ୍କୁ ତାଙ୍କ ଠିକଣା ଜାଗା ଦେଖାଇ ଦିଆଗଲା । ପ୍ରଧାନମନ୍ତ୍ରୀଙ୍କ ଘର ଆଗରେ ବିରାଟ ରାଲିମାନ ଆୟୋଜନ କରାଗଲା । ଅବଶ୍ୟ ଏହା ପଛରେ କିଛିଟା ସାଙ୍ଗଠନିକ ଉଦ୍ୟମ ଥିଲା, ତଥାପି ମୂଳତଃ, ଏହା ଥିଲା ଆବେଗିକ ଏବଂ ସ୍ୱତଃସ୍ଫୂର୍ତ୍ତ ।

ସାଧାରଣ ଜନତାଙ୍କ ଭିତରେ ଏଭଳି ଉନ୍ମାଦନା ପ୍ରକାଶ ପାଇବା ପରିସ୍ଥିତିରେ ସିଣ୍ଡିକେଟ୍ କେବଳ ଗୋଟିଏ ବାଟରେ ନିଜର ପ୍ରତିକ୍ରିୟା ପ୍ରକାଶ କଲା ; ତାହା ହେଉଛି, ସ୍ୱତନ୍ତ୍ର ପାର୍ଟି ବା ଜନସଂଘ (ଆଜିକାର ବିଜେପିର ମୂଳ ଦଳ)ଭଳି ବିରୋଧୀଦଳଗୁଡ଼ିକ ସହ ମିଶି "ରାଜନୀତିକୁ ରାସ୍ତାକୁ ନେଇ ଆସିବାରେ ଇନ୍ଦିରାଙ୍କ ଅବଦାନ" ଉଦ୍‌ବେଗଜନକ । ସେମାନେ ଇନ୍ଦିରାଙ୍କୁ "କମ୍ୟୁନିଷ୍ଟ୍ ସହଯାତ୍ରୀ"ବୋଲି ଆଖ୍ୟା ମଧ୍ୟ ଦେଲେ । ସିପିଆଇର ସଦସ୍ୟମାନେ ଇନ୍ଦିରାଙ୍କ ସମର୍ଥନରେ ବାହାରୁଥିବା ଶୋଭାଯାତ୍ରାରେ ଯୋଗ ଦେଉଛନ୍ତି ବୋଲି ସେମାନେ ଅଭିଯୋଗ କଲେ । କଂଗ୍ରେସର ଗୋଟିଏ ନିଷ୍ପତ୍ତି, ଯାହାର ସମର୍ଥନରେ ଦଳ ଭିତରେ ଏହି ତୀବ୍ର

ସମାଲୋଚକମାନେ ବର୍ଷ ପରେ ବର୍ଷ ଭୋଟ୍ ଦେଇ ଆସୁଛନ୍ତି ; ତାକୁ କାର୍ଯ୍ୟକାରୀ କରିବା ଯୋଗୁଁ ସେ କିପରି ରାତାରାତି କମ୍ୟୁନିଷ୍ଟ୍ ହୋଇଗଲେ ? ଏହା ଥିଲା ଇନ୍ଦିରାଙ୍କ କ୍ରୁଦ୍ଧ ପ୍ରଶ୍ନ ।

ଏହି ଦୁଇଦଳ ଭିତରେ ତୀବ୍ର କଳହ ଚାଲିଥିଲାବେଳେ ଉଭୟ ଦଳପାଇଁ ମୁଖ୍ୟ ପ୍ରସଙ୍ଗଟି ତଥାପି ଥିଲା ରାଷ୍ଟ୍ରପତି ନିର୍ବାଚନ । ସେଇ ସମୟରେ ଇନ୍ଦିରା ଗୋଟିଏ ବ୍ୟତିକ୍ରମ ପଦକ୍ଷେପ ନେଇଥିଲେ ଏବଂ ତାହା ଥିଲା ସଞ୍ଜୀବ ରେଡ୍ଡୀଙ୍କ ଠାରୁ ମନୋନୟନ ପତ୍ରରେ ଦସ୍ତଖତ କରାଇନେବା । ପରେ ଯେତେବେଳେ ଇନ୍ଦିରା ତାଙ୍କ ସମର୍ଥନକୁ ଭିଭି ଗିରିଙ୍କ ପାଇଁ ବଢ଼ାଇଦେଲେ ସେତିକିବେଳେ ତାଙ୍କ ସମାଲୋଚକମାନେ ତାଙ୍କୁ "ଅନୈତିକ"ବୋଲି ଅପବାଦ ଦେବାରେ ଲାଗିଲେ । ଜାକିର୍ ହୁସେନ୍‌ଙ୍କ ମୃତ୍ୟୁବେଳକୁ ଭିଭି ଗିରି ଥିଲେ ଉପରାଷ୍ଟ୍ରପତି ଏବଂ ରାଷ୍ଟ୍ରପତିଙ୍କ ଅନ୍ତେ ସେ ତାଙ୍କ ପଦ ମର୍ଯ୍ୟାଦାର ଦାୟିତ୍ୱ ସମ୍ଭାଳୁଥିଲେ । ଯେହେତୁ, ତାଙ୍କ ପୂର୍ବରୁ ଦୁଇଜଣ ଉପରାଷ୍ଟ୍ରପତି ରାଷ୍ଟ୍ରପତି ହୋଇସାରିଥିଲେ, ସେହେତୁ ତାଙ୍କୁ ଅଣଦେଖା କରିବାରେ ସେ କ୍ଷୁବ୍ଧ ହୋଇ ଇସ୍ତଫା ଦେଇଦେଲେ ଏବଂ ସ୍ୱାଧୀନଭାବେ ରାଷ୍ଟ୍ରପତି ପଦ ପାଇଁ ପ୍ରାର୍ଥୀ ହେଲେ ।

କିନ୍ତୁ କଂଗ୍ରେସ ସଭାପତି ନିଜଲିଙ୍ଗାପ୍ପାଙ୍କ ଗୋଟିଏ ଅତି ଗୁରୁତର ଭୁଲ୍ ଯୋଗୁଁ ଇନ୍ଦିରାଙ୍କ "ମତ ବଦଳ" ପ୍ରସଙ୍ଗ ବିରୋଧରେ ସିଣ୍ଡିକେଟ୍‌ର ଅଭିଯୋଗ ଜୋର୍ ଧରିପାରିଲା ନାହିଁ । ହଠାତ୍ ସାଧାରଣରେ ଇନ୍ଦିରାଙ୍କ ଲୋକପ୍ରିୟତା ବୃଦ୍ଧି ପାଇବାରେ ଆତଙ୍କିତହୋଇ ସେ ଜନସଂଘ ଏବଂ ସ୍ୱତନ୍ତ୍ର ପାର୍ଟି ନିକଟକୁ ଯାଇ ସେମାନଙ୍କ "ଦ୍ୱିତୀୟ ସମର୍ଥନ ଭୋଟ୍" ସବୁ ରେଡ୍‌ଡ୍ଡୀଙ୍କୁ ଦେବାପାଇଁ ଅନୁରୋଧ କଲେ ଯଦିଓ ସେ ଭଲଭାବେ ଜାଣିଥିଲେ ଯେ ମିଳିତ ବିରୋଧୀଦଳ ପକ୍ଷରୁ ପ୍ରାର୍ଥୀଭାବେ ଅବତୀର୍ଣ୍ଣ ହୋଇଥିବା ବରିଷ୍ଠ ରାଜନେତା ସି.ଡ଼ି. ଦେଶମୁଖ୍‌ଙ୍କ ପାଇଁ ସେମାନଙ୍କ ସବୁ "ପ୍ରଥମ ସମର୍ଥନ" ଭୋଟତକ ଯିବ । ଆନୁପାତିକ ପ୍ରତିନିଧିତ୍ୱ ବ୍ୟବସ୍ଥାନୁସାରେ ରାଷ୍ଟ୍ରପତି ନିର୍ବାଚନବେଳେ "ଦ୍ୱିତୀୟ ସମର୍ଥନ ଭୋଟ୍" ଅନେକ ସମୟରେ ଗୁରୁତ୍ୱପୂର୍ଣ୍ଣ ମଧ୍ୟ ହୋଇଥାଏ । ତେବେ ଇନ୍ଦିରା ଚଟାପଟ୍ ନିଜଲିଙ୍ଗାପ୍ପା ଏବଂ ସିଣ୍ଡିକେଟ୍‌କୁ "ସାଂପ୍ରଦାୟିକ ତଥା ପ୍ରତିକ୍ରିୟାଶୀଳ ଶକ୍ତିମାନଙ୍କର" ଏକ "ଅପବିତ୍ର ମେଣ୍ଟ"ବୋଲି ଅଭିହିତକରି ରେଡ୍‌ଡୀଙ୍କ ଠାରୁ ସମର୍ଥନ ପ୍ରତ୍ୟାହାର କରିନେଇ "ବିବେକ ଭୋଟ" ଦେବାପାଇଁ ସମସ୍ତଙ୍କୁ ଆହ୍ୱାନ ଦେଲେ ।

୧୯୬୯ ମସିହା ଅଗଷ୍ଟ ୨୦ର ବିଳମ୍ବିତ ରାତିରେ ରାଷ୍ଟ୍ରପତି ନିର୍ବାଚନର ଫଳାଫଳ ଘୋଷଣା କରାଗଲା । ଯେହେତୁ ପ୍ରତିଦ୍ୱନ୍ଦ୍ୱିତା ଖୁବ୍ କଡ଼ା ଥିଲା, ସେହେତୁ ଶେଷ ପର୍ଯ୍ୟନ୍ତ ଆଶଙ୍କାର ବାତାବରଣ ରହିଥିଲା । ଶେଷରେ କିନ୍ତୁ ଗିରି ଜିତିଲେ ଏବଂ ଅତି କମ୍ ବ୍ୟବଧାନରେ । ପ୍ରେମ ବା ଯୁଦ୍ଧ ଭଳି ଭାରତୀୟ ନିର୍ବାଚନରେ ବିଜୟୀକୁ ହିଁ ସବୁ ଶ୍ରେୟ ଯାଏ । ଇନ୍ଦିରାଙ୍କ ଶିବିରରେ ଖୁସିର ଲହରୀ ଖେଳିଯାଇଥିଲା ଓ ସିଣ୍ଡିକେଟ୍‌ର ବିଷର୍ଣ୍ଣତା । ବିଜୟ ଶୋଭାଯାତ୍ରା ଏବଂ ପ୍ରଶଂସା ଭିତରେ ଇନ୍ଦିରା କିନ୍ତୁ ଏଭଳି ଦୁର୍ବଳ ବିଜୟକୁ ନେଇ ସଚେତନ ଥିଲେ । କିଛି ବିରୋଧୀଦଳ ସଦସ୍ୟଙ୍କର "ଦ୍ୱିତୀୟ ସମର୍ଥନ" ଭୋଟ ପାଇବା ଯୋଗୁଁ ଗିରି ବିଜୟୀ ହୋଇଥିଲେ ।

କଂଗ୍ରେସର ଦୁଇ ତୃତୀୟାଂଶ ସାଂସଦ ଏବଂ ରାଜ୍ୟ ବିଧାନସଭାଗୁଡ଼ିକର ତିନି ଚତୁର୍ଥାଂଶ କଂଗ୍ରେସ ସଦସ୍ୟ ରେଡ୍ଡୀଙ୍କୁ ସମର୍ଥନ କରିଥିଲେ । ତେଣୁ ଇନ୍ଦିରାଙ୍କ ଯୁଦ୍ଧ ତଥାପି ସରିନଥିଲା ।

ବର୍ତ୍ତମାନ ଇନ୍ଦିରା ଏବଂ ସିଣ୍ଡିକେଟ୍ ଭିତରେ ସମ୍ପର୍କ କିନ୍ତୁ ଛିନ୍ନ ହୋଇଯାଇଥିଲା କହିଲେ ଚଳେ । କିନ୍ତୁ "କଂଗ୍ରେସ ଏକତା"ର ଏଭଳି ଏକ କିମ୍ବଦନ୍ତୀକ ଛବି ଥିଲା ଯେ କୌଣସି ପକ୍ଷ ଦଳ ବିଭାଜନ ପାଇଁ ଆଗୁଆ ପଦକ୍ଷେପ ନେବାକୁ ଭରସୁ ନଥିଲେ । ବର୍ଷାରେ ଛତୁ ଫୁଟିଲାପରି ଦୁଇ ପ୍ରତିପକ୍ଷ ଗୋଷ୍ଠୀ ଭିତରେ ସଲା କରିବାପାଇଁ ଗୋଟିକ ପରେ ଗୋଟିଏ ପ୍ରୟାସ ସୃଷ୍ଟିହେଲା । ସେସବୁ ପ୍ରସ୍ତାବ ଭିତରୁ ଅନେକ ଥିଲା ନିହାତି ଦୟନୀୟତାର ପରିଚାୟକ । ସେଭଳି ଏକ ପ୍ରସ୍ତାବ ଭିତରୁ ଗୋଟିକରେ ଚଭାନ ଇନ୍ଦିରାଙ୍କ ପାଖକୁ ଆସି ନିଜ ପୂର୍ବ କାମପାଇଁ ଅନୁତାପ ପ୍ରକାଶକଲେ ଏବଂ ଏହା ପର ଠାରୁ ଇନ୍ଦିରାଙ୍କ ପ୍ରତି ଅନୁଗତ ରହିବାର ପ୍ରତିଶ୍ରୁତି ଦେଲେ । ଇନ୍ଦିରା ତାଙ୍କ ସମର୍ଥନକୁ ସ୍ୱାଗତ କଲେ କିନ୍ତୁ ଜଣାଇଦେଲେ ଯେ ସେ ଆଉ ତାଙ୍କୁ ବିଶ୍ୱାସ କରନ୍ତିନାହିଁ । ଏହାର ପନ୍ଦର ମାସ ପରେ ମୋତେ କଥା ପ୍ରସଙ୍ଗରେ କାମରାଜ କହିଥିଲେ ଯେ ଯଦି ସେ ପ୍ରଥମରୁ ଜାଣିଥାନ୍ତେ ଚଭନ୍ କିଭଳି "ତେଲିଆ ଚରିତ୍ର", ତେବେ ସେ ତାଙ୍କ "ପାର୍ଲିଆମେଣ୍ଟାରି ବୋର୍ଡ଼ର ସାଥୀମାନଙ୍କୁ ରେଡ୍ଡୀଙ୍କ ପ୍ରାର୍ଥୀତ୍ୱ ଉପସ୍ଥାପନ କରିବାପାଇଁ ଅନୁମତି ଦେଇନଥାନ୍ତେ ।"

ପ୍ରାୟ ଅଢ଼େଇ ମାସ ଧରି ଏହି ଦୟନୀୟ ଡ୍ରାମା ଚାଲିଲା । ଶେଷରେ ଏକ ଖୋଲା ଚିଠିରେ ନିଜଲିଙ୍ଗାପ୍ପା ଇନ୍ଦିରାଙ୍କ ପାଖକୁ ତାଙ୍କ ଦୁଃଖ ଏବଂ ଅଭିଯୋଗର ଏକ ଲମ୍ବା ତାଲିକା ଦେଇ ଶେଷରେ ଏହି ଆକ୍ଷେପୋକ୍ତି ସହ ଚିଠିକୁ ଶେଷକଲେ, "ଆପଣ ନିଜ ପ୍ରତି ଥିବା ଆନୁଗତ୍ୟକୁ ବିଶ୍ୱସ୍ତତାର ଏକ ପରୀକ୍ଷାଭାବେ ଗ୍ରହଣ କରିଛନ୍ତି ଏବଂ ଏହାକୁ କଂଗ୍ରେସ ଏବଂ ଦେଶ ପ୍ରତି ଆନୁଗତ୍ୟ ବୋଲି ଧରିନେଇଛନ୍ତି ।" ଗୋଟିଏ ଦୃଷ୍ଟିରୁ ବିଚାରକଲେ ଏହା ମାନିବାକୁ ହେବ ଯେ ପରବର୍ତ୍ତୀ କିଛି ପରିସ୍ଥିତି ସୂଚେଇ ଦେଇଥିଲା ଯେ ଏହି ଉକ୍ତି ସତରେ କେତେ ଯଥାର୍ଥ ଥିଲା । ସେତେବେଳେ କିନ୍ତୁ ହାଉଆ "ପ୍ରଗତିଶୀଳ ଇନ୍ଦିରା"ଙ୍କ ସପକ୍ଷରେ ଏବଂ "ପ୍ରତିକ୍ରିୟାଶୀଳ ସିଣ୍ଡିକେଟ୍", ଯାହାର ପ୍ରତୀକ ଥିଲେ ନିଜଲିଙ୍ଗାପ୍ପାଙ୍କ ବିରୋଧରେ ବହୁଥିବାରୁ ଏହି ଉକ୍ତି କେବଳ ବିଦ୍ରୁପ ଏବଂ ବ୍ୟଙ୍ଗ ସୃଷ୍ଟି କରିଥିଲା । ଏହା ଥିଲା ଅକ୍ଟୋବର ମାସ ୨୮ ତାରିଖ । ଏହାର ଦଶ ଦିନପରେ ନିଜଲିଙ୍ଗାପ୍ପା, ଇନ୍ଦିରା ଗାନ୍ଧିଙ୍କୁ କଂଗ୍ରେସର ପ୍ରାଥମିକ ସଦସ୍ୟତାରୁ ବହିଷ୍କାର କରି ଆଉ ଜଣେ ନୂଆ ନେତାଙ୍କୁ ବାଛିବାପାଇଁ କଂଗ୍ରେସ ପାର୍ଲିଆମେଣ୍ଟାରି ବୋର୍ଡ଼ର ବୈଠକ ଡ଼ାକିଲେ । ଏଥର କଂଗ୍ରେସ ବିଭାଜନ ହୋଇଗଲା ଏବଂ ଏହା ଘଟିଥିଲା କଂଗ୍ରେସ ଗଠିତ ହେବାର ଚଉରାଅଶି ବର୍ଷ ପରେ ଏବଂ ମହାତ୍ମା ଗାନ୍ଧିଙ୍କ ଜନ୍ମ ଶତବାର୍ଷିକୀ ପାଳିତ ହେଉଥିବା ବର୍ଷରେ ।

ଏଭଳି ପରିସ୍ଥିତିରେ ଇନ୍ଦିରାଙ୍କ ପ୍ରତିକ୍ରିୟା ଥିଲା ସମସ୍ତଙ୍କୁ ଦେଖାଇଦେବା ଯେ ନିଜଲିଙ୍ଗାପ୍ପା ଗୋଷ୍ଠୀର ସମର୍ଥକଙ୍କ ଅପେକ୍ଷା ତାଙ୍କୁ କେତେ ଅଧିକ କଂଗ୍ରେସ ସଦସ୍ୟ ସମର୍ଥନ

କରୁଛନ୍ତି । ପାର୍ଲିଆମେଣ୍ଟର ଉଭୟ ସଦନରେ କଂଗ୍ରେସର ସଦସ୍ୟ ସଂଖ୍ୟା ଥିଲା ୪୨୯ । ସେମାନଙ୍କ ଭିତରୁ ୩୧୦ ସଦସ୍ୟ ଇନ୍ଦିରା ଡ଼ାକିଥିବା ବୈଠକରେ ଯୋଗ ଦେଉଥିଲେ । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଥିଲା ଏୟା ଯେ କେତେକ ଲୋକସଭାର କଂଗ୍ରେସ ସଦସ୍ୟଙ୍କ ଭିତରୁ ୨୨୦ ପ୍ରଧାନମନ୍ତ୍ରୀଙ୍କୁ ସମର୍ଥନ କଲେ ଏବଂ ମାତ୍ର ୬୮ ଜଣ ଦେଶାଇ ଏବଂ ସିଣ୍ଡିକେଟ୍ ସପକ୍ଷରେ ଗଲା । କଂଗ୍ରେସ ଭିତରେ ଇନ୍ଦିରାଙ୍କ ଆଧିପତ୍ୟ ଏବେ ସ୍ପଷ୍ଟ ହୋଇଯାଇଥିଲା । କିନ୍ତୁ ତାଙ୍କ ସରକାର ଥିଲା ଗୋଟିଏ ସଂଖ୍ୟାଲଘୁ ସରକାର । କିନ୍ତୁ ଇନ୍ଦିରାଙ୍କ ଭୟ କରିବାର କୌଣସି କାରଣ ନଥିଲା । କାରଣ ସିପିଆଇ, ଡ଼ିଏମ୍‌କେ, ଯେଉଁ ଦଳ କି ତାମିଲନାଡୁରେ କଂଗ୍ରେସକୁ ପରାଜିତ କରିଥିଲା, ଏବଂ ଅନ୍ୟ କେତେକ ଦଳ ତଥା କିଛି ସ୍ୱାଧୀନ ସାଂସଦ ଇନ୍ଦିରାଙ୍କୁ ସମ୍ପୂର୍ଣ୍ଣ ସମର୍ଥନ ଦେଉଥିଲେ । ପ୍ରତିଦ୍ୱନ୍ଦ୍ୱୀ କଂଗ୍ରେସ ଆଣିଥିବା ଅନାସ୍ଥା ପ୍ରସ୍ତାବକୁ ହରାଇବା ତାଙ୍କ ପକ୍ଷରେ ସେମିତି କିଛି ସମସ୍ୟା ନଥିଲା ।

ପାର୍ଲିଆମେଣ୍ଟରେ ନିଜର ସମର୍ଥନକୁ ପ୍ରଦର୍ଶନ କରିସାରିବା ପରେ ସେ ଏଆଇସିସିର ଏକ ଅଧିବେଶନ ଡ଼ାକିଲେ । ଏହାର ୭୦୫ ସଦସ୍ୟଙ୍କ ଭିତରୁ ୪୪୬ ସେଥିରେ ଯୋଗ ଦେଲେ । ଏହି ଲମ୍ବା ସଂଘର୍ଷରେ ସ୍ଥିର ଏବଂ ସ୍ଥିତପ୍ରଜ୍ଞଭାବେ ରହିଥିବା ଇନ୍ଦିରା ପ୍ରଥମଥର ପାଇଁ ସେଇ ଅଧିବେଶନରେ ନିଜ ଆବେଗକୁ ପ୍ରକାଶ କଲେ । କଂଗ୍ରେସ ସହିତ ନିଜ ପରିବାର ତଥା ନିଜର ଦୀର୍ଘ ସମ୍ପର୍କର ଅବତାରଣା କରୁଥିବାବେଳେ ସେଇ କଂଗ୍ରେସର କର୍ମକର୍ତ୍ତାମାନେ ତାଙ୍କୁ କଂଗ୍ରେସରୁ ବହିଷ୍କାର କରିବାର ଆସ୍ପର୍ଦ୍ଧା କରିଥିବାକଥା କହି ସେ କାନ୍ଦି ପକାଇଥିଲେ । ତାପରେ ସେ ପ୍ରକୃସ୍ଥିତ ହେଲେ ଏବଂ ତାଙ୍କ ବିରୋଧୀମାନଙ୍କ ସମ୍ପର୍କରେ ଆଉ ପଦୁଟିଏ ବି କହିଲେ ନାହିଁ । କିନ୍ତୁ, ତାଙ୍କ ଅନୁଗାମୀମାନେ ଜଣକ ପରେ ଜଣେ କଂଗ୍ରେସର ସେଇ କର୍ମକର୍ତ୍ତାମାନଙ୍କୁ ଶୋଧିବାର କୌଣସି ଗୋଟିଏ ସୁଯୋଗ ବି ହାତଛଡ଼ା କଲେନାହିଁ ।

ଇନ୍ଦିରା କେବଳ ନିଜ କ୍ଷମତାର ଅନ୍ୱେଷଣ ପାଇଁ ଗୁଡ଼ିଏ ବୟାନବାଜିର "ଧୂମ ପଟଳ" ସୃଷ୍ଟି କରିଛନ୍ତି ବୋଲି ପ୍ରତିକ୍ରିୟାବାଦୀ ସମାଲୋଚକମାନଙ୍କ ଅଭିଯୋଗର ଜବାବ ଦେବାପାଇଁ ଇନ୍ଦିରା ନିଜ ପ୍ରତିଜ୍ଞା ବା ପ୍ରତିଶ୍ରୁତିର କିଛି ପୂରଣ କରିବାକୁ ଆଗଭର ହେଲେ । ରବର୍ଟ କ୍ଲାଇବ୍‌ଙ୍କ ଦିନରୁ ଭାରତୀୟ ବ୍ୟାବସାୟିକ ଦୁନିଆକୁ ନିୟନ୍ତ୍ରଣ କରୁଥିବା ମ୍ୟାନେଜିଂ ଏଜେନ୍‌ସି ବ୍ୟବସ୍ଥାକୁ ଉଚ୍ଛେଦ କଲେ । ଅନିୟନ୍ତ୍ରିତ ଅର୍ଥନୀତି ଆଡ଼କୁ ଆଗେଇ ଚାଲିଥିବା ଧାରାକୁ ବନ୍ଦକରିବାକୁ ସେ "ମନୋପଲିଜ୍ ଏଣ୍ଡ୍ ରେଷ୍ଟ୍ରିକ୍‌ଟିଭ୍ ଟ୍ରେଡ୍ ପ୍ରାକ୍‌ଟିସେସ୍" (ଏମ୍‌ଆର୍‌ଟିପି) କମିଶନ ନିଯୁକ୍ତ କରି ବ୍ୟବସାୟ ଏବଂ ଶିଳ୍ପର ଭବିଷ୍ୟତ ସଂପ୍ରସାରଣକୁ ନିୟନ୍ତ୍ରଣ କରିବାକୁ ପ୍ରୟାସ କଲେ । ଅପର ପକ୍ଷରେ ବିଦେଶରେ ବ୍ୟାପାରକୁ ଜାତୀୟକରଣ କରିବା ବା ବିଦେଶୀ ବିନିବେଶକାରୀମାନଙ୍କୁ ରିହାତି ଦେବାର ବ୍ୟବସ୍ଥାକୁ ଉଚ୍ଛେଦ କରିବାକୁ ନେଇ କିଛି ଚରମବାଦୀ ସମର୍ଥକମାନଙ୍କ ଦାବିକୁ ସେ ଅଗ୍ରାହ୍ୟ କରିଦେଇଥିଲେ । କିନ୍ତୁ ସେ ସମୟରେ ସିଣ୍ଡିକେଟ୍ ଇନ୍ଦିରାଙ୍କୁ "କମ୍ୟୁନିଷ୍ଟ୍ ବା କମ୍ୟୁନିଷ୍ଟମାନଙ୍କ ଗୁପ୍ତଚର" ବୋଲି କହି ଏମିତି ଅପପ୍ରଚାର

ଚଳେଇଥିଲା ଯେ ଇନ୍ଦିରାଙ୍କ ଏଭଳି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକଳାପକୁ କେହି ମହତ୍ତ୍ୱ ଦେଉନଥିଲେ ।

ଏଥିରେ କିନ୍ତୁ ସନ୍ଦେହ ନଥିଲା ଯେ କଂଗ୍ରେସ ବିଭାଜନ ରାଷ୍ଟ୍ରରେ ଇନ୍ଦିରାଙ୍କ ସ୍ଥିତିକୁ ବେଶ୍ ମଜବୁତ କରିଥିଲା । ଏଥିରେ ଅନୁପ୍ରେରିତ ହୋଇ ସେ କ୍ୟାବିନେଟ୍‌ରେ ଗୋଟିଏ ବିରାଟ ଅଦଳବଦଳ କରିପକାଇଲେ । ଚଭନ୍‌ଙ୍କୁ ଅର୍ଥ ବିଭାଗଦେଇ ଗୁରୁତ୍ୱପୂର୍ଣ୍ଣ ଗୃହ ବିଭାଗକୁ ସେ ନିଜ ହାତରେ ରଖିଲେ । ଏହି ଅଦଳବଦଳର ଆଉ ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଥିଲା ଦିନେଶ ସିଂଙ୍କ ପଦବିକୁ ତଳକୁ ଖସାଇବା । କିଛି ସମୟ ପାଇଁ ସେ ଥିଲେ "କିଚେନ୍ କ୍ୟାବିନେଟ୍"ର ଅନ୍ୟତମ ସବୁଠାରୁ କ୍ଷମତାଶାଳୀ ମନ୍ତ୍ରୀ । ଇନ୍ଦିରା ଯେତେବେଳେ ପ୍ରଥମେ ପ୍ରଧାନମନ୍ତ୍ରୀ ହେଲେ ସେତିକିବେଳେ ଦିନେଶ ସିଂ ବିଦେଶ ବିଭାଗରେ ଜଣେ କନିଷ୍ଠ ମନ୍ତ୍ରୀ ଥିଲେ । ଇନ୍ଦିରା ତାଙ୍କୁ ଦେଲେ ବାଣିଜ୍ୟ ବିଭାଗ । ଦିନେଶ କିନ୍ତୁ ବିଦେଶ ମନ୍ତ୍ରୀ ହେବାର ଆଶା ପୋଷଣ କରୁଥିଲେ । ସେଇ କାରଣରୁ ତାଙ୍କୁ ଇନ୍ଦିରା ସେଇ ବିଭାଗ ବି ଦେଲେ । କିନ୍ତୁ ଏହାର ପନ୍ଦର ମାସପରେ ସେ ଦିନେଶଙ୍କୁ ଚକିତକରି ଏକ କମ୍ ମର୍ଯ୍ୟାଦାବନ୍ତ ମନ୍ତ୍ରୀ ପଦ ଦେଲେ । ଏହାର ଅଳ୍ପଦିନ ପରେ ତାଙ୍କୁ କ୍ୟାବିନେଟ୍‌ରୁ ପୂରାପୂରି ହଟେଇ ଦିଆଗଲା ଏବଂ ଏହାର କିଛିଦିନ ପରେ ସେ ପାର୍ଟିରୁ ନିଲମ୍ବିତ ହେଲେ । ତାଙ୍କ ପୂର୍ବରୁ କେତେକ ଇନ୍ଦିରାଙ୍କ ସୁନଜରରୁ ତଳକୁ ଖସି ଯାଇଥିଲେ ଏବଂ ତାଙ୍କପରେ ମଧ୍ୟ ଏମିତି ଅସଂଖ୍ୟ ତାଙ୍କ ଭଳି ଅବସ୍ଥା ଭୋଗିଥିଲେ ।

ଏହାଦ୍ୱାରା ଇନ୍ଦିରା ଗୋଟିଏ ସନ୍ଦେଶ ସ୍ପଷ୍ଟଭାବେ ଦେଇଥିଲେ ଯେ "କିଚେନ୍ କ୍ୟାବିନେଟ୍" ସିଣ୍ଡିକେଟ୍ ଭଳି ତାଙ୍କ ପଛରୁ କ୍ଷମତାର କେନ୍ଦ୍ର ରୂପେ କାର୍ଯ୍ୟ କରିବାର ଆସ୍ପର୍ଦ୍ଧା ନକରୁ । କିନ୍ତୁ ଦୁଃଖର କଥା ଯେ କଂଗ୍ରେସର ସଂଖ୍ୟାବହୁଳ ସଦସ୍ୟଙ୍କ ଭିତରେ ଏହା କୁଆଡ଼େ ହଜିଗଲା ।  ଦଳର ସମସ୍ତେ କୌଣସିମତେ କ୍ଷମତାର କେନ୍ଦ୍ରକୁ ପହଞ୍ଚିବାର ପ୍ରୟାସରେ ରତ ଥିଲେ । ଫଳରେ ପ୍ରାଚୀନକାଳରୁ ଏକ ସାମନ୍ତବାଦୀ ରାଷ୍ଟ୍ର ଯାହା କି ପରେ ମୋଗଲ ପରମ୍ପରା ଦ୍ୱାରା କବଳିତ ହୋଇ ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇଗଲା । ଏହା ଥିଲା ଦୁଇଟି କାରଣ ଭିତରୁ ପ୍ରଥମ କାରଣ ଯେଉଁଥି ପାଇଁ ଇନ୍ଦିରା ଭାରତର ଜଣେ ଅପ୍ରତିଦ୍ୱନ୍ଦ୍ୱୀ ନେତା ତଥା ଜଣେ ଅଭୁତପୂର୍ବ ଭାବେ ଲୋକପ୍ରିୟ ନେତା ଭାବେ ଆବିର୍ଭୂତ ହେଲେ । ଦ୍ୱିତୀୟଟି ହେଲା ଗଣତନ୍ତ୍ରର ନିୟନ୍ତ୍ରକ ଭାବେ କାମ କରିବାପାଇଁ ତାଙ୍କ ବାପାଙ୍କ ଦ୍ୱାରା ଗଠିତ ହୋଇଥିବା ଅନେକ ଅନୁଷ୍ଠାନକୁ ମୂଲ୍ୟହୀନ କରିଦେଇ ନିଜ ହାତରେ ଯାବତୀୟ କ୍ଷମତା ଠୁଳ କରିବା । କ୍ୟାବିନେଟ୍ ଅଦଳବଦଳ ବେଳେ ସେ ଭାରତର ଗୁଇନ୍ଦା ବିଭାଗକୁ ଦୁଇ ଭାଗରେ ବିଭକ୍ତ କରିଦେଇଥିଲେ । ସେ ପର୍ଯ୍ୟନ୍ତ ଦେଶର ଅନ୍ତରୀଣ ଏବଂ ବାହ୍ୟ ଗୁଇନ୍ଦାଗିରି ପାଇଁ ତଥା ବାହାର ଦେଶର ଗୁଇନ୍ଦା କାର୍ଯ୍ୟକଳାପକୁ ପ୍ରତିହତ କରିବାପାଇଁ ଦାୟିତ୍ୱ ଗୋଟିଏ ବିଭାଗ ହାତରେ ନ୍ୟସ୍ତ ଥିଲା । ରିସର୍ଚ୍ଚ ଏଣ୍ଡ୍ ଆନାଲିସିସ୍ ୱିଂ ବା 'ର' ନାମରେ ଏକ ଅଲଗା ବିଭାଗ ସୃଷ୍ଟି କରାଯାଇ ତାର କାର୍ଯ୍ୟାଳୟ ପ୍ରଧାନମନ୍ତ୍ରୀଙ୍କ ଦପ୍ତରରେ ଖୋଲାଗଲା ଏବଂ ଆଇବି (ଇଣ୍ଟେଲିଜେନ୍ସ୍ ବ୍ୟୁରୋ) ଦପ୍ତର ପୂର୍ବଭଳି ଗୃହ ବିଭାଗ କାର୍ଯ୍ୟାଳୟରେ ରହିଲା । ରାଜସ୍ୱ ସଂକ୍ରାନ୍ତ ଗୁଇନ୍ଦାଗିରି, ଯାହା କି ସେ ଯାଏଁ ଅର୍ଥ

ମନ୍ତ୍ରାଳୟ ହାତରେ ଥିଲା, ଏଣିକି ପ୍ରଧାନମନ୍ତ୍ରୀଙ୍କ ତତ୍ତ୍ୱାବଧାନରେ ରହିଲା ।

ଇନ୍ଦିରାଙ୍କ ସରକାର ଏଣିକି ବେଶ୍ ସ୍ଥିର ହୋଇଯାଇଥିଲା । କିନ୍ତୁ, ସେ ସଚେତନ ଥିଲେ ଯେ ଅନ୍ୟ ଦଳଗୁଡ଼ିକ ଉପରେ ନିର୍ଭରଶୀଳ ହେବା ଅର୍ଥ ହେଉଛି ପରବର୍ତ୍ତୀ ଅବସ୍ଥାରେ "ବ୍ଲାକ୍ ମେଲ୍"ର ଶିକାର ହେବା । ଯେତେବେଳେ ସେ ନିଜର ପରବର୍ତ୍ତୀ ପଦକ୍ଷେପ ପାଇଁ ପ୍ରସ୍ତୁତ ହେଉଛନ୍ତି, ଏତିକିବେଳେ ଗୋଟିଏ ସୁବର୍ଣ୍ଣସୁଯୋଗ ଆସି ଉପସ୍ଥିତ ହେଲା, ତାହା ପୁଣି ଅନ୍ୟ କେଉଁଠି ନୁହେଁ, କେରଳରେ, ଯେଉଁଠି ୧୯୬୭ରେ ସିପିଆଇ(ଏମ୍) ନେତୃତ୍ୱରେ ମେଣ୍ଟସରକାର କ୍ଷମତାକୁ ଆସିଥିଲା ।୧୯୭୦, ଜୁନ୍ ବେଳକୁ ଏହା ମାର୍କ୍ସିଷ୍ଟ୍ ଏବଂ ସିପିଆଇ ଭିତରେ ସୃଷ୍ଟି ହୋଇଥିବା ଅନ୍ତର୍ବିବାଦ ଯୋଗୁଁ ଭାଙ୍ଗିଗଲା । ଦଶବର୍ଷ ଆଗରୁ ଇନ୍ଦିରା ଏଇ କେରଳରେ ଯାହା କରିଥିଲେ, ଏଥର ତାର ସମ୍ପୂର୍ଣ୍ଣ ବିପରୀତ ପନ୍ଥା ଗ୍ରହଣକରି ସେପ୍ଟେମ୍ବର ମାସରେ ହୋଇଥିବା ନିର୍ବାଚନରେ ସିପିଆଇ ସହିତ ମେଣ୍ଟକରି ନିର୍ବାଚନରେ ଅବତୀର୍ଣ୍ଣ ହେଲେ । କଂଗ୍ରେସ ଏବଂ ସିପିଆଇ। ଏହି ମେଣ୍ଟ ନିର୍ବାଚନରେ ବିଜୟ ଲାଭକଲା । ରାଜ୍ୟ ବିଧାନସଭାରେ କଂଗ୍ରେସ ଥିଲା ଏକକ ସଂଖ୍ୟା ଗରିଷ୍ଠ ଦଳ । କିନ୍ତୁ ଏକ ନିହାତି ସୌଜନ୍ୟମୂଳକ ପଦକ୍ଷେପ ଗ୍ରହଣକରି ଇନ୍ଦିରା, ସିପିଆଇକୁ ସରକାର ଗଢ଼ିବାକୁ ସୁଯୋଗ ଦେଲେ ।

## ଇନ୍ଦିରା ଲହରି

କେତେକ ଦୃଷ୍ଟିରୁ ଦେଖିବାକୁ ଗଲେ କେରଳର ଘଟନା ଥିଲା ଫିଚର୍ ଫିଲ୍ମର ଟ୍ରେଲ୍‌ର ଭଳି । ଡ଼ିସେମ୍ବର ୨୭ ତାରିଖ ଦିନ ସେ ଆକାଶବାଣୀ ଜରିଆରେ ଘୋଷଣାକଲେ ଯେ ଯେହେତୁ ସେ ସାନି ନିର୍ବାଚନକୁ ସମ୍ମୁଖୀନ ହେବାକୁ ଚାହାନ୍ତି, ସେଇଥିପାଇଁ ଲୋକସଭାକୁ ଭାଙ୍ଗିଦିଆଗଲା ଏବଂ ନୂଆ ବର୍ଷ ଫେବୃଆରିରେ ନିର୍ବାଚନ ଅନୁଷ୍ଠିତ ହେବ । ଅବଶ୍ୟ ଏହି ପଦକ୍ଷେପ ନିହାତିଭାବେ ଅପ୍ରତ୍ୟାଶିତ ନଥିଲା । ଏହା ଅବଶ୍ୟମ୍ଭାବୀ ବୋଲି ଜାଣି ବିରୋଧୀଦଳଗୁଡ଼ିକ ପ୍ରତିଦ୍ୱନ୍ଦ୍ୱୀ କଂଗ୍ରେସ, ସ୍ୱତନ୍ତ୍ର, ଜନସଂଘ, ଭାରତୀୟ କ୍ରାନ୍ତି ଦଳ ନାମକ ଏକ କୃଷକ ଦଳ ମିଶି ଗୋଟିଏ "ବିଶାଳ ମେଣ୍ଟ" କରି ଇନ୍ଦିରାଙ୍କୁ ପରାଜିତ କରିଦେବେ ବୋଲି ନିଶ୍ଚିତ ହୋଇ ରହିଲେ । ଏହି ଆଶାବାଦ ପଛରେ ଥିବା କାରଣ ହେଲା, ଭାରତର ବିଭିନ୍ନ ରାଜ୍ୟରେ ଥିବା କଂଗ୍ରେସ ସଂଗଠନଗୁଡ଼ିକୁ ବାସ୍ତବରେ ସିଣ୍ଡିକେଟ୍ ହିଁ ନିୟନ୍ତ୍ରଣ କରୁଥିଲା । ଅପର ପକ୍ଷରେ ଇନ୍ଦିରା କଂଗ୍ରେସର ସେମିତି କୌଣସି ପାର୍ଟି କଳ ନଥିଲା । ମାତ୍ର ଏଇ ପରିସ୍ଥିତିରେ ସିଣ୍ଡିକେଟ୍ ବୁଝିଲାନାହିଁ ଯେ ଏହା ଇନ୍ଦିରାଙ୍କ ଉପକାରରେ ଆସିବ । କାରଣ ଏହା ଦ୍ୱାରା ଇନ୍ଦିରା ସିଧାସଳଖ ଲୋକଙ୍କୁ ହିଁ ଆବେଦନ କଲେ । ଇନ୍ଦିରାଙ୍କ ସପକ୍ଷରେ ଆଉ ଗୋଟିଏ କଥା ଆସିଲା । ଏହା ଥିଲା ପ୍ରଥମ ଲୋକସଭା ନିର୍ବାଚନ ଯାହା ସାଥିରେ କି ରାଜ୍ୟ ବିଧାନସଭାର ନିର୍ବାଚନ ହେଉନଥିଲା, ସୁତରାଂ ଇନ୍ଦିରାଙ୍କୁ ଅଯଥାରେ ଆଞ୍ଚଳିକ ନିର୍ବାଚନ ବ୍ୟାପାରରେ ବ୍ୟସ୍ତ ହେବାକୁ ପଡ଼ିନଥିଲା । ସେ ଯାହା ବି ହେଉ, ସେ ଥିଲେ ତାଙ୍କ ଦଳର ଏକମାତ୍ର ନେତା ଏବଂ ଏକମାତ୍ର ପ୍ରଚାରକ ଏବଂ ଏକ

ଦୃପ୍ତଶକ୍ତିର ସହ ସେ ଭାରତର ଆଦ୍ୟ ପ୍ରାନ୍ତ ଖେଦୁଥିଲେ ।

୧୯୭୧ ମସିହାର ନିର୍ବାଚନଟି ହେଲା ଇନ୍ଦିରା ଗାନ୍ଧିଙ୍କ ନେତୃତ୍ୱକୁ ସର୍ବତୋ ଭାବେ ସମର୍ଥନ ଜଣାଇଥିବା ଏକ ନିର୍ବାଚନ । ଏହି ନିର୍ବାଚନ ପରେ ଇନ୍ଦିରା ଲୋକପ୍ରିୟତାର ସ୍ୱାଦକୁ ବେଶ୍ ଭରପୂର ଭାବେ ଆସ୍ୱାଦନ କରୁଥିଲେ । ଯେତେବେଳେ ନ୍ୟୁଜ୍‌ୱିକ୍ ପତ୍ରିକା ପକ୍ଷରୁ ଏକ ସାକ୍ଷାତକାର ଅବସରରେ ତାଙ୍କୁ ପଚରା ଯାଇଥିଲା ଯେ ନିର୍ବାଚନରେ ମୁଖ୍ୟ ପ୍ରସଙ୍ଗଟି କ'ଣ ଥିଲା, ଇନ୍ଦିରା ଉତ୍ତର ଦେଇଥିଲେ "ମୁଁ ହିଁ ଥିଲି ମୁଖ୍ୟ ପ୍ରସଙ୍ଗ ।" ଇନ୍ଦିରାଙ୍କୁ ବିରୋଧ କରୁଥିବା ମେଣ୍ଟର ଏକସୂତ୍ରୀ କାର୍ଯ୍ୟକ୍ରମ ଥିଲା ଇନ୍ଦିରା ହଟାଓ । ଏହାର ପ୍ରତିକ୍ରିୟାରେ ଇନ୍ଦିରା ତାଙ୍କ ଆବେଗପୂର୍ଣ୍ଣ ଭାଷଣରେ କହିଥିଲେ ଯେ ସେ କୌଣସି ବ୍ୟକ୍ତିର ବିରୋଧୀ ନୁହନ୍ତି, ଏବଂ ଯେହେତୁ ତାଙ୍କର ଏକମାତ୍ର ଉଦ୍‌ବେଗ ହେଉଛି ଦେଶକୁ ଦାରିଦ୍ର୍ୟର ଶୃଙ୍ଖଳରୁ ମୁକ୍ତକରିବା, ସେହେତୁ ତାଙ୍କର ଯୁଦ୍ଧର ହୁଙ୍କାର ହେବ, "ଗରିବି ହଟାଓ ।" ଏଥିରେ ସମ୍ପୂର୍ଣ୍ଣ ଦେଶ ଯେମିତି ମୋହାଚ୍ଛନ୍ନ ହୋଇପଡ଼ିଥିଲା । ଭାରତ ଜନସଂଖ୍ୟାର ସଂଖ୍ୟାଧିକ ଦରିଦ୍ର ଏକ ବିଶ୍ୱାସ ଦ୍ୱାରା ଅଭିଭୂତ ହୋଇଯାଇଥିଲେ ଯେ ଶେଷରେ ସେମାନେ ଜଣେ ତ୍ରାଣକର୍ତ୍ତ୍ରୀ ପାଇଛନ୍ତି ।

କେହି ଆଶ୍ଚର୍ଯ୍ୟ ହେବାର ନଥିଲା ଯେ ଇନ୍ଦିରା ଯେଉଁଆଡ଼େ ଯାଉଥିଲେ ସେଠାରେ ଜନସାଧାରଣଙ୍କ ଭିତରେ ଏକ ଉଚ୍ଛ୍ୱସିତ ଉତ୍ସାହ ସୃଷ୍ଟି ହେଉଥିଲା । ଯଦିଓ ୧୯୬୭ ଅପେକ୍ଷା ଏବେ ତାଙ୍କ ପ୍ରତି ତାଙ୍କ ବିରୋଧୀମାନଙ୍କ ବିଦ୍ୱେଷ ବଢ଼ିଥିଲା, ତଥାପି ଏବେ ତାଙ୍କ ସଭାଗୁଡ଼ିକୁ ଆଉ କେହି ଭଣ୍ଡୁର କରୁନଥିଲେ, ତାଙ୍କ ଆଡ଼କୁ ପଥର ଫିଙ୍ଗିବା ତ ଦୂରର କଥା । ନିର୍ବାଚନ ଫଳାଫଳ କ'ଣ ହେବ ସେ ନେଇ କେହି ନିଶ୍ଚିତ ନଥିଲେ । ଫଳରେ, ଏହି ଫଳାଫଳ ସମସ୍ତଙ୍କୁ ଚକିତ କରିଦେଇଥିଲା । ଇନ୍ଦିରା ଗୋଟିଏ ଚାଞ୍ଚଲ୍ୟକର ବିଜୟ ହାସଲ କରିଥିଲେ । ଚାରି ବର୍ଷ ପୂର୍ବେ, ଅବିଭାଜିତ କଂଗ୍ରେସ ଯେତିକି ସିଟ୍ ଜିତିଥିଲା, ଏଥର ଇନ୍ଦିରାଙ୍କ କଂଗ୍ରେସ ୩୫୨ଟି ସିଟ୍ ହାସଲକରି ତା ଠାରୁ ସତୁରିଟି ଅଧିକ ସିଟ୍ ଜିତିଥିଲା । ପ୍ରତିଦ୍ୱନ୍ଦ୍ୱୀ କଂଗ୍ରେସର ସିଟ୍ ସଂଖ୍ୟା ୬୮ରୁ କମିଯାଇ ୧୬ରେ ପହଞ୍ଚିଲା । ଆଉ କିଛି ବିରୋଧୀଦଳ ପ୍ରାୟତଃ ସଫା ହୋଇଯାଇଥିଲେ । ଏଭଳି ବିପୁଳ ବିଜୟ ଆଗରୁ କେବେ ଦେଖା ଯାଇନଥିଲା । ଯେଉଁ ଖବରକାଗଜଗୁଡ଼ିକ ତାଙ୍କୁ ପୂର୍ବ ଦିନ ପର୍ଯ୍ୟନ୍ତ ସମାଲୋଚନା କରୁଥିଲେ, କିଛି ନିହାତି ଉତ୍କଟଭାବେ, ହଠାତ୍ "ଇନ୍ଦିରା ଲହରି"ର ପ୍ରଶଂସାରେ ଶତମୁଖ ହୋଇଉଠିଥିଲେ । ଗୋଟିଏ ଖବରକାଗଜ ତ କହିଥିଲା ଯେ ଏହା ଇନ୍ଦିରା ଲହରି ନୁହେଁ, ଏହା ହେଉଛି ଗୋଟିଏ "ହରିକେନ୍ ।" ବିସ୍ମୟକରଭାବେ ସେମାନଙ୍କ ଭିତରୁ କେହି ହେଲେ ବି ଜଣେ ଏହି କଥା ବେଶ୍ ଗରମାଗରମ ଏବଂ ଲମ୍ବା ନିର୍ବାଚନ ପ୍ରଚାର କାଳରେ କହିନଥିଲେ ।

———————— ୬ ————————



# ସବୁଠାରୁ ସୁନ୍ଦର ସମୟ

୧୯୭୧ ମସିହା ନିର୍ବାଚନରେ ଇନ୍ଦିରାଙ୍କ ବିପୁଳ ବିଜୟ ପରର ଆନନ୍ଦ ଉତ୍ସବମୟ ପରିବେଶ ଥିଲା ଦେଶବ୍ୟାପୀ । ଇନ୍ଦିରା କିନ୍ତୁ ନିଜକୁ ନିୟନ୍ତ୍ରଣରେ ରଖି ନିଜ ଅନୁଗାମୀମାନଙ୍କୁ ଚେତାଇ ଦେଇଥିଲେ ଯେ ଏବେ କାମ କରିବାର ସମୟ ଆସିଯାଇଛି, ପ୍ରତିଜ୍ଞା ପାଳନ କରିବାର ସମୟ ଆସିଯାଇଛି । ଲାଇଫ୍ ଇନ୍‌ସ୍ୟୁରାନ୍‌ସ୍‌କୁ ପଚାଶ ଦଶକରେ ତାଙ୍କ ବାପାଙ୍କ ସମୟରେ ଜାତୀୟକରଣ କରିଦିଆଯାଇଥିଲା, ଇନ୍ଦିରା ଏବେ ଜେନେରାଲ୍ ଇନ୍‌ସ୍ୟୁରାନ୍‌ସ୍‌ର ଜାତୀୟକରଣ କରିଦେଲେ । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଯେ ନାଗରିକମାନଙ୍କ ମୌଳିକ ଅଧିକାରକୁ ବଦଳାଇବାର ଅଧିକାର ପାର୍ଲିଆମେଣ୍ଟର ଅଛି ବୋଲି ସେ ସମ୍ବିଧାନରେ ସଂଶୋଧନ ଆଣିଥିଲେ ଏବଂ ଏହାଦ୍ୱାରା ଚାରି ବର୍ଷ ପୂର୍ବେ ସୁପ୍ରିମ୍ କୋର୍ଟର ବିଚାରପତି କେ. ସୁବ୍‌ବା ରାଓ ଦେଇଥିବା ଆଦେଶକୁ ଅକାମୀ କରିଦେଇଥିଲେ । ଦ୍ୱିତୀୟ ସମ୍ବିଧାନ ସଂଶୋଧନ ଆଣି ସେ ବ୍ୟବସ୍ଥା କରିଦେଲେ ଯେ ଏଣିକି ସର୍ବଜନୀନ କାର୍ଯ୍ୟରେ ଅଧିଗ୍ରହଣ କରାଯାଉଥିବା ଜମିପାଇଁ କେତେ କ୍ଷତିପୂରଣ ଦିଆଯିବ ତାହା କୋର୍ଟ ସ୍ଥିର ନକରି ପାର୍ଲିଆମେଣ୍ଟ ସ୍ଥିର କରିବ । ଏହି ସଂଶୋଧନ ବଳରେ ସମ୍ବିଧାନରେ ଉଲ୍ଲିଖିତ ନିୟମ ଯାହା କି ଡ଼ାଇରେକ୍‌ଟିଭ୍ ପ୍ରିନ୍‌ସିପଲ୍ ଅଫ୍ ଷ୍ଟେଟ୍ ପଲିସିକୁ ରୂପ ଦେଉଥିଲା, ଏଣିକି ଯେ କୌଣସି କୋର୍ଟର ବିବାଦ ବା ଆଦେଶ ପରିସରରୁ ମୁକ୍ତ ରହିଲା ।

ଏତିକି କରିସାରି ସେ ନୂତନ ଭାବେ ନିର୍ବାଚିତ ପାର୍ଲିଆମେଣ୍ଟ ଆଗରେ କିଛି ରାଜନୈତିକ ଭାବେ ଆକର୍ଷଣୀୟ ଏବଂ ଅର୍ଥନୈତିକ ଭାବେ ଯଥାର୍ଥ ପଲିସି ବା ନୀତି ଘୋଷଣା କରିବାର ଠିକ୍ ଅବ୍ୟବହିତ ପୂର୍ବରୁ ଏମିତି ଗୋଟିଏ ଦୁଃଖଦ ଘଟନା ଘଟିଗଲା ଯାହା ଗଭୀରଭାବେ ଭାରତକୁ ଆକ୍ରାନ୍ତ କଲା ଏବଂ ପ୍ରଧାନମନ୍ତ୍ରୀ ଓ ଜନସାଧାରଣଙ୍କୁ ଏହା ସାରା ୧୯୭୧ ବର୍ଷଟିକୁ ଆଚ୍ଛନ୍ନ କରି ରଖିଲା । ଇନ୍ଦିରା ଗାନ୍ଧି ତୃତୀୟ ଥର ପାଇଁ ପ୍ରଧାନମନ୍ତ୍ରୀ ହେବାର ଠିକ୍ ଆଠ ଦିନ ପରେ ଗୋଟିଏ ବିରାଟ ସଂକଟ ଯାହା ଅନେକ ଦିନ ଧରି କୁହୁଳୁଥିଲା ହଠାତ୍ ବିସ୍ଫୋରଣରେ ପରିଣତ ହେଲା । ଏହା ଘଟିଲା ତତ୍କାଳୀନ ପୂର୍ବ ବଙ୍ଗ ତଥା ବର୍ତ୍ତମାନର ଇସ୍‌ଲାମିକ ରିପବ୍ଲିକ୍ ଅଫ୍ ବାଂଲାଦେଶରେ ଏବଂ ଏହି ଘଟଣାର ଭୟାବହତା ସେଇ କ୍ଷୁଦ୍ର ଭାଗ୍ୟହୀନ ଦେଶକୁ ଥରାଇ ଦେଉଥିବା ବାତ୍ୟାଗୁଡ଼ିକରୁ କମ୍ ନଥିଲା । ଏହି ଘଟଣାର ଅଳ୍ପ କିଛି ମାସ ପୂର୍ବରୁ

ସେଇଭଳି ଏକ ବିଧ୍ୱସ୍ତକାରୀ ବାତ୍ୟା ସେଇ ଦେଶକୁ ଆକ୍ରାନ୍ତ କରିଥିଲା ।

ପାକିସ୍ତାନ ସୃଷ୍ଟିହେବା ଏକ ଭୌଗୋଳିକ ଅଭିଶାପ ଥିଲା । ହଜାରେ ମାଇଲରୁ ଅଧିକ ଭାରତୀୟ ଭୂମି ଜନବହୁଳ ପୂର୍ବ ପାକିସ୍ତାନକୁ ପଶ୍ଚିମ ପାକିସ୍ତାନରୁ ବିଚ୍ଛିନ୍ନ କରିଦେଇଥିଲା ; ପଶ୍ଚିମ ପାକିସ୍ତାନରେ ରହିଥିଲା ରାଜନୈତିକ କ୍ଷମତାର କେନ୍ଦ୍ର । ସଲ୍‌ମାନ୍ ରସ୍‌ଦିଙ୍କ ଅନୁସାରେ ପାକିସ୍ତାନ ଥିଲା "ଏକ ପକ୍ଷୀ ଯାହାର ଦୁଇଟି ଡ଼େଣା ତ ଥିଲା କିନ୍ତୁ ଶରୀରଟିଏ ନଥିଲା ।" ଏ ସମସ୍ୟା ବେଶି ଖରାପ ହେଲା ଯେତେବେଳେ ପଞ୍ଜାବୀ ସ୍ୱଚ୍ଛଳ ବର୍ଗ, ଯେଉଁମାନେ କି ସର୍ବ - ପାକିସ୍ତାନୀ ସରକାରରେ ପ୍ରଭୂତ ଭାବେ ପ୍ରଭାବଶାଳୀ ଥିଲେ ; ପ୍ରକାଶ୍ୟରେ ବଙ୍ଗାଳିମାନଙ୍କ ପ୍ରତି ଘୃଣାଭାବ ପୋଷଣ କରୁଥିଲେ । ସୈନ୍ୟବାହିନୀରେ ବଙ୍ଗାଳି ପ୍ରତିନିଧିତ୍ୱ ନଗଣ୍ୟ ଥିଲା କହିଲେ ଚଳେ । ଧର୍ମକୁ ଛାଡ଼ିଦେଲେ ଏଇ ଦୁଇ ଡ଼େଣା ଭିତରେ କୌଣସି ସାମଞ୍ଜସ୍ୟ ନଥିଲା । ଭାଷାକୁ ନେଇ ଏଇ ଦୁହିଁଙ୍କ ଭିତରେ ଥିଲା ଭୀଷଣ ତିକ୍ତତା । ଉର୍ଦ୍ଦୁ ଭାଷାକୁ ଲଦିଦେବାର ପ୍ରତିବାଦଜନିତ ସଂଘର୍ଷରେ ଯେଉଁ ବଙ୍ଗାଳି ଛାତ୍ରମାନେ ପ୍ରାଣ ହରାଇଥିଲେ, ସେମାନେ ଥିଲେ ପୂର୍ବ ବଙ୍ଗର ପ୍ରଥମ ଶହିଦ । ବାଂଲାଦେଶ ସେମାନଙ୍କ ସ୍ମୃତିକୁ ଏବେ ବି ଗଭୀରଭାବେ ସମ୍ମାନ କରେ ।

ପାକିସ୍ତାନରେ ଯଦି ଗଣତନ୍ତ୍ର ଚେରେଇ ଥାନ୍ତା ତେବେ ହୁଏତ ପୂର୍ବ ପାକିସ୍ତାନ ପ୍ରତି କରାଯାଇଥିବା ଭୁଲ୍‌କୁ ଠିକ୍ କରାଯାଇପାରିଥାନ୍ତା ବା ପ୍ରଶମନ କରାଯାଇପାରିଥାନ୍ତା । ଏହା ହୋଇଥିଲେ ପଶ୍ଚିମ ପାକିସ୍ତାନର ସାମନ୍ତବାଦୀ ବ୍ୟବସ୍ଥା ବଦଳରେ ପୂର୍ବ ପାକିସ୍ତାନର ସଂଖ୍ୟା ଗରିଷ୍ଠତା ଏବଂ ଗଣତନ୍ତ୍ର ପ୍ରତି ପ୍ରତିବଦ୍ଧତାର ବିଜୟ ହୋଇଥାନ୍ତା । କିନ୍ତୁ ତାହା ହେଲାନାହିଁ । ଗୋଟିକ ପରେ ଗୋଟିଏ ଅନିର୍ବାଚିତ ସରକାର, ସାମରିକ - ଅମଲାତାନ୍ତ୍ରିକ ଭ୍ରାନ୍ତବର୍ଗ ଦ୍ୱାରା ପରିଚାଳିତ ହୋଇ ସମଗ୍ର ରାଜନୈତିକ ବ୍ୟବସ୍ଥାକୁ ନଷ୍ଟ କରିଦେବା ପରେ ୧୯୫୮ରେ ଜେନେରାଲ ଆୟୁବ୍ ଖାନ୍‌ଙ୍କ ନେତୃତ୍ୱରେ ସାମରିକ ବାହିନୀ ପାକିସ୍ତାନର ଶାସନଡ଼ୋର ହାତକୁ ନେଇଥିଲା । ନ୍ୟାସନାଲ୍ ଆସେମ୍ବ୍ଲି ଗଠନରେ ସେ କଠୋରଭାବେ ଦୁଇ ଭାଗ ମଧ୍ୟରେ 'ପ୍ରିନ୍‌ସପଲ୍ ଅଫ୍ ପେୟାରିଟି' (ସମାନାତ୍ମକ ନିୟମ) ଲାଗୁକଲେ ।

ସ୍ୱାଭାବିକ ଭାବେ, ପୂର୍ବ ପାକିସ୍ତାନରେ ସ୍ୱତନ୍ତ୍ର ହେବାପାଇଁ ଏକ ଆନ୍ଦୋଳନ ଆରମ୍ଭ ହେଲା ଏବଂ ଖୁବ୍ ଶୀଘ୍ର ଜୋର୍ ଧରିଲା । ଏହାର ନେତା ଥିଲେ ବିଚକ୍ଷଣ ଅଥଚ ଏକ ଜିଦିଆ ଶେଖ୍ ମୁଜିବୁର ରହମନ । ଶେଖ୍ ମୁଜିବ୍ ନାମରେ ପ୍ରାୟତଃ ଜଣା, ଏହି ବ୍ୟକ୍ତିଙ୍କୁ ପରେ ବାଂଲାଦେଶର ଜନକ ଭାବେ ଅଭିହିତ କରାଗଲା ଏବଂ ଏହାର କିଛି ମାସ ପରେ ତାଙ୍କୁ ତାଙ୍କର କିଛି ଅସନ୍ତୁଷ୍ଟ ଅନୁଗାମୀ ହତ୍ୟା କରିଥିଲେ । ମୁଜିବ୍‌ଙ୍କ ଆନ୍ଦୋଳନ ୧୯୬୫ର ଭାରତ ପାକିସ୍ତାନ ଯୁଦ୍ଧପରେ ଆଉ ଟିକିଏ ତେଜିଲା କାରଣ ଏହି ଯୁଦ୍ଧରେ ପୂର୍ବ ପାକିସ୍ତାନ ନିଜକୁ ସାଂଘାତିକଭାବେ ଅସୁରକ୍ଷିତ ପରିସ୍ଥିତିରେ ଆବିଷ୍କାର କଲା ଏବଂ ଯଦି ଚୀନ୍ ପାକିସ୍ତାନର ସମର୍ଥନରେ ଗର୍ଜୁ ନଥାନ୍ତା, ତେବେ ଭାରତ ଅଚିରେ ପାକିସ୍ତାନକୁ ଅଧିକାର କରିନେଇଥାନ୍ତା । ଆୟୁବ୍ ସଙ୍ଗେ ସଙ୍ଗେ ମୁଜିବ୍‌ଙ୍କୁ ଗିରଫ କଲେ ଓ ତାଙ୍କୁ "ବିଶ୍ୱାସଘାତକ ତଥା ଭାରତର ଏଜେଣ୍ଟ୍" ବୋଲି କହି ବିଚାର ଆରମ୍ଭ

କରିଦେଲେ । ଅଗରତାଲା ଷଡ଼ଯନ୍ତ୍ର ନାମରେ ଖ୍ୟାତ ଏହି ଷଡ଼ଯନ୍ତ୍ରର ବିଚାର ଆୟୁବ୍ ଖାନ୍ କ୍ଷମତାରୁ ବାହାରିଗଲା ଯାଏଁ ଚାଲିଥିଲା । ପାକିସ୍ତାନରେ ଆୟୁବ୍‌ଙ୍କ ଶାସନକୁ ବନ୍ଦକରି ଗଣତନ୍ତ୍ରର ପ୍ରତିଷ୍ଠା କରିବାକୁ ଯେଉଁ ଜନଆନ୍ଦୋଳନ ମୁଣ୍ଡ ଟେକିଥିଲା, ତାରି ଆଗରେ ମୁଣ୍ଡ ନୁଆଇଁ ଆୟୁବ୍ କ୍ଷମତାରୁ ଓହରି ଯାଇଥିଲେ । କିନ୍ତୁ, ଗଣତନ୍ତ୍ର ପରିବର୍ତ୍ତେ ପାକିସ୍ତାନକୁ ପୁଣି ସାମରିକ ଶାସନ ପ୍ରତ୍ୟାବର୍ତ୍ତନ କରିଥିଲା ।

ଆୟୁବ୍‌ଙ୍କ ପରେ ଆସିଲେ ସାମରିକ ଏକଛତ୍ରବାଦୀ ଜେନେରାଲ ଯାହ୍ୟା ଖାନ୍, ଜଣେ ପ୍ରବଞ୍ଚକ ତଥା ଅସଂସ୍କୃତିବନ୍ତ ସୈନିକ । ପୂର୍ବବର୍ତ୍ତୀ ଶାସକ ଜଣକଙ୍କ ନିକଟରେ ଥିବା ରାଜନୈତିକ କୁଶଳତା ତଥା ସମ୍ମାନାସ୍ପଦ ବ୍ୟକ୍ତିତ୍ୱ ତାଙ୍କ ଠାରେ ନଥିଲା । ଅଧିକାଂଶ ସମୟରେ ସେ ରହୁଥିଲେ ନିଶାଗ୍ରସ୍ତ ଏବଂ ଏକ ଅବ୍ୟବସ୍ଥିତ ଜୀବନ ଯାପନ କରୁଥିଲେ । ଏହା ସତ୍ତ୍ୱେ ମଧ୍ୟ ନିଜ ପ୍ରତିଶ୍ରୁତି ଅନୁସାରେ ପାକିସ୍ତାନ ଇତିହାସରେ ସର୍ବ ପ୍ରଥମେ ଗୋଟିଏ ଅବାଧ ଏବଂ ମୁକ୍ତ ନିର୍ବାଚନ କରାଇପାରିଥିବାରୁ ସେ ଧନ୍ୟବାଦର ପାତ୍ର ।

୧୯୭୦ ମସିହା ଡ଼ିସେମ୍ବରରେ ଏଇ ନିର୍ବାଚନ ଅନୁଷ୍ଠିତ ହେଲା ଏବଂ ଏହାର ଫଳାଫଳ ସମସ୍ତଙ୍କୁ ଚକିତ କରିଦେଲା ପରି ଥିଲା । କାରଣ, ମୁଜିବ୍‌ଙ୍କ ପାର୍ଟି "ଆୱାମି ଲିଗ୍" ନିର୍ବାଚନକୁ ପୋଛି ଦେଇଥିଲା ଏବଂ "ପ୍ରୋଭିନ୍‌ସିଆଲ୍ କାଉନ୍‌ସିଲ୍"ର ପ୍ରାୟ ସମସ୍ତ ସିଟ୍ ଅଧିକାର କରିନେଇଥିଲା । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଥିଲା ଏୟା ଯେ "ନ୍ୟାସନାଲ୍ ଆସେମ୍ବ୍ଲି"ରେ ପ୍ରତିନିଧିତ୍ୱ କରୁଥିବା ୧୬୨ଟି ସିଟ୍ ମଧ୍ୟରୁ ଆୱାମି ଲିଗ୍ ପାଇଥିଲା ୧୬୦ଟି ସିଟ୍ । ତେଣୁ ତିନିଶହ ସଦସ୍ୟ ବିଶିଷ୍ଟ ସଂସଦରେ ଶେଖ୍ ମୁଜିବ୍‌ଙ୍କୁ ମିଳିଥିଲା ସ୍ପଷ୍ଟ ବହୁମତ ଏବଂ ଏହାଦ୍ୱାରା ସେ ପ୍ରଧାନମନ୍ତ୍ରୀ ପଦ ପାଇଁ ନିର୍ଦ୍ୱନ୍ଦ୍ୱ ଦାବିଦାର ଥିଲେ । କିନ୍ତୁ, ଯାହ୍ୟା ଏବଂ ତାଙ୍କ ସୈନ୍ୟବାହିନୀ, ଜୁଲ୍‌ଫିକର୍ ଅଲ୍ଲୀ ଭୁଟ୍ଟୋଙ୍କ ପୂର୍ଣ୍ଣ ସହଯୋଗ ଏବଂ ସମର୍ଥନ ପାଇ ନିହାତି ନିର୍ଲଜ୍ଜଭାବେ କ୍ଷମତା ହସ୍ତାନ୍ତର କରିବାକୁ ମନା କରିଦେଲେ । ଭୁଟ୍ଟୋ ଯେ କି ଥିଲେ ଆୟୁବ୍‌ଙ୍କ ଚେଲା ଏବଂ ଗୋଟିଏ ସମୟରେ ବିଦେଶ ମନ୍ତ୍ରୀ, ପରେ ନିଜ ଗୁରୁଙ୍କ ବିରୋଧରେ ବିଦ୍ରୋହ କରି ଯାହ୍ୟା ଏବଂ ଅନ୍ୟାନ୍ୟ ଜେନେରାଲମାନଙ୍କୁ ପ୍ରତିପୋଷଣ କରୁଥିଲେ । ନ୍ୟାସନାଲ୍ ଆସେମ୍ବ୍ଲିରେ ପଶ୍ଚିମ ପ୍ରାନ୍ତ ପାଇଁ ଯେତିକି ସିଟ୍ ରଖାଯାଇଥିଲା,'ସେତିକିରେ ଭୁଟ୍ଟୋଙ୍କ ପାକିସ୍ତାନ ପିପୁଲ୍‌ସ୍ ପାର୍ଟି ସଂଖ୍ୟା ଗରିଷ୍ଠତା ଲାଭ କରିଥିଲା । କିନ୍ତୁ, ମୁଜିବଙ୍କ ଦଳ ଯେଉଁ କାର୍‌ନାମା ଦେଖାଇଥିଲା, ତହିଁରେ ଏହି ସଫଳତା ନିଷ୍ପ୍ରଭ ହୋଇଯାଇଥିଲା ।

ମୁଜିବଙ୍କୁ କ୍ଷମତା ଦିଆନଯିବାର ପରିଣାମ ସ୍ୱରୂପ ପୂର୍ବ ବଙ୍ଗରେ ଭୟାବହ ଏବଂ ବ୍ୟାପକ ବିଦ୍ରୋହର ସୂତ୍ରପାତ ହୋଇଗଲା । ମୁଜିବଙ୍କ ସହ ଆପୋଷ ମିଳାମିଶା ଆଳରେ ଏକ ଜଘନ୍ୟ ଯୋଜନା କରି ଯାହ୍ୟା ଗୋଟିଏ ସୁପରିକଳ୍ପିତ ସାମରିକ କାର୍ଯ୍ୟାନୁଷ୍ଠାନ ଆରମ୍ଭ କରିଦେଲେ । ସେତେବେଳର ଗୁଇନ୍ଦା ରିପୋର୍ଟ ଯାଏଁ ପୁର୍ଣ୍ଣ ପହଞ୍ଚ ଥିବା ପିଏନ୍ ଧର କହନ୍ତି ଯେ ଯାହ୍ୟା ତାଙ୍କ ଲେଫ୍‌ଟନାଣ୍ଟମାନଙ୍କୁ କହିଥିଲେ : "ବେଙ୍ଗୋ"ମାନଙ୍କୁ ଉଚିତ୍ ବାଟରେ ସାବାଡ଼୍ ନକଲା ଯାଏଁ

ସେମାନଙ୍କ ସହିତ କୌଣସି ବୁଝାମଣା ହେବାର ପ୍ରଶ୍ନ ଉଠୁନାହିଁ । ଏହି ସମୟରେ ପାକିସ୍ତାନୀମାନଙ୍କ କ୍ରୁରତା ନାଜୀମାନଙ୍କ ଯୁଦ୍ଧ ଅପରାଧକୁ ମଧ୍ୟ ବଳିଯାଇଥିଲା । ମୁଜିବଙ୍କୁ ଗିରଫ କରିନିଆଯାଇ ପଶ୍ଚିମ ପାକିସ୍ତାନର ଗୋଟିଏ କୁଖ୍ୟାତ ଜେଲ୍‌କୁ ଉଡ଼ାଇ ନିଆଗଲା ଏବଂ ସେଠାରେ ତାଙ୍କୁ ବନ୍ଦୀଭାବେ ରଖାଗଲା । ମାର୍ଚ୍ଚ ୨୫ ରାତିର ବୀଭତ୍ସ ଗଣହତ୍ୟା ଦେଖି କିଛି ଆୱାମି ଲିଗ୍‌ର ନେତା କଲିକତାକୁ ପଳାଇ ଆସି ନିର୍ବାସନରେ ସରକାର ଗଢ଼ିଲେ । ପୂର୍ବ ପାକିସ୍ତାନରେ ସ୍ଥାନେ ସ୍ଥାନେ ସ୍ୱତଃସ୍ଫୁର୍ତ୍ତ ଭାବେ ବିଦ୍ରୋହ ହୋଇ ରାତାରାତି ଅନେକ ଅଜଣା ଅଶୁଣା ନେତାଙ୍କ ଆବିର୍ଭାବ ହୋଇଗଲା । ପ୍ରାୟ ସମସ୍ତ ପୂର୍ବ ପାକିସ୍ତାନୀ ଏହି ବିଦ୍ରୋହରେ ସାମିଲ ହୋଇଯାଇଥିଲେ । ଲୋକେ ହଜାର ହଜାର ସଂଖ୍ୟାରେ ସେମାନଙ୍କ ହାତକୁ ଯାହା ଅସ୍ତ୍ର ଆସିଲା, ତାହା ଉଠାଇନେଇ ଆଗକୁ ଡେ଼ଇଁ ପଡ଼ିଥିଲେ । ବାଂଲାଦେଶର ସ୍ୱାଧୀନତା ପାଇଁ ଏକ ଅସନ୍ତୁଳ ଯୁଦ୍ଧ ଆରମ୍ଭ ହୋଇଯାଇଥିଲା ।

ପୂର୍ବ ବଙ୍ଗ ଉପରେ ପାକିସ୍ତାନୀ ଅତ୍ୟାଚାର ବଢ଼ିବା ସହିତ ବଙ୍ଗୀୟ ଶରଣାର୍ଥୀମାନେ ପଡ଼ୋଶୀ ଭାରତୀୟ ରାଜ୍ୟଗୁଡ଼ିକୁ ବହୁ ସଂଖ୍ୟାରେ ପ୍ରବେଶ କରିବାକୁ ଲାଗିଲେ । ସ୍ୱାଧୀନତା ପରବର୍ତ୍ତୀ ବିଭାଜନ ଏବଂ ପରବର୍ତ୍ତୀ କାଳର ବେଆଇନ୍ ଅନୁପ୍ରବେଶ ଯୋଗେ ସେଇ ସବୁ ରାଜ୍ୟଗୁଡ଼ିକ ବହିରାଗତ ଲୋକମାନଙ୍କ ଚାପରେ ଅତିଷ୍ଠ ହୋଇପଡ଼ିଥିଲେ । ମାତ୍ର ପାଞ୍ଚ ସପ୍ତାହ ଭିତରେ ଏହି ସଂଖ୍ୟା ବଢ଼ି ପହଞ୍ଚିଯାଇଥିଲା ସାଢ଼େ ତିନି ନିୟୁତରେ । ଏଭଳି ଶରଣାର୍ଥୀ ଶିବିରକୁ ଯାଇ ଦେଖିଲାପରେ ଏବଂ ଏହି ଭୟାତୁର ଶରଣାର୍ଥୀମାନଙ୍କ କଷ୍ଟ ଅନୁଭବ କଲାପରେ ଇନ୍ଦିରା ଗାନ୍ଧି ରାଜଭବନକୁ ଫେରି ତାଙ୍କ ସହକାରୀମାନଙ୍କୁ ଦୁଃଖପୂର୍ଣ୍ଣ ଅଥଚ ଦୃଢ଼ ସ୍ୱରରେ କହିଥିଲେ : "ସାରା ବିଶ୍ୱ ଏଠାରେ କ'ଣ ଚାଲିଛି ସେ ବିଷୟରେ ଜାଣିବା ଏବଂ ସେ ନେଇ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଦରକାର । କୌଣସି ପ୍ରକାରେ ବି ଆମେ ପାକିସ୍ତାନକୁ ଏହି ଧ୍ୱଂସଲୀଳା ରଚନା କରିବାକୁ ପ୍ରଶ୍ରୟ ଦେଇପାରିବା ନାହିଁ ।"

ପରେ ଯେତେବେଳେ ଶରଣାର୍ଥୀମାନଙ୍କ ସଂଖ୍ୟା ଦଶ ନିୟୁତରେ ପହଞ୍ଚିଗଲା, ଯାହା ଥିଲା କ୍ୟୁବାର ଜନସଂଖ୍ୟାର ଦେଢ଼ ଗୁଣରୁ ବି ଅଧିକ, ସେତିକିବେଳେ ଇନ୍ଦିରା ଘୋଷଣା କଲେ ଯେ ଯାହା ପାକିସ୍ତାନର ଅଭ୍ୟନ୍ତରୀଣ ସମସ୍ୟା ଥିଲା, ଏବେ ଭାରତର ଅନ୍ତରୀଣ ସମସ୍ୟାରେ ପରିଣତ ହେଲାଣି ଏବଂ ଶରଣାର୍ଥୀମାନଙ୍କ ସମସ୍ୟା କିଭଳି ତାଙ୍କ ଦେଶ ଉପରେ ଦାରୁଣ ଆର୍ଥିକ ଏବଂ ରାଜନୈତିକ ବୋଝର କାରଣ ହେଲାଣି, ତା ଉପରେ ଗୁରୁତ୍ୱଦେଇ ସେ କହିଲେ ଯେ "ଭାରତର ସ୍ୱାର୍ଥ ବିନିମୟରେ ପାକିସ୍ତାନ ତାର ଅଭ୍ୟନ୍ତରୀଣ ମାମଲାର ସମାଧାନ କରିପାରିବନାହିଁ । ଯେହେତୁ ଭାରତ ଶରଣାର୍ଥୀମାନଙ୍କୁ ଆଶ୍ରୟ ଦେବା ପରିସ୍ଥିତିରେ ନାହିଁ, ସେମାନଙ୍କୁ ନିଜ ଦେଶକୁ ଫେରିଯିବାକୁ ହେବ । ତେଣୁ ସେ ଦାବିକଲେ ଯେ ଶରଣାର୍ଥୀମାନଙ୍କ ଆସିବାକୁ ବନ୍ଦ କରିବାପାଇଁ ପାକିସ୍ତାନ ପୂର୍ବ ପାକିସ୍ତାନରେ ଉଚିତ ପରିବେଶ ସୃଷ୍ଟିକରିବା ଆବଶ୍ୟକ ଏବଂ ପାକିସ୍ତାନ ଓ ବିଶ୍ୱ ସମୁଦାୟ ମିଶି ଗୋଟିଏ ରାଜନୈତିକ ବୁଝାମଣା ଦିଗରେ କାମକରିବା ଉଚିତ୍, ଯଦ୍ୱାରା କି

ଶରଣାର୍ଥୀମାନେ "ସମ୍ମାନ ଏବଂ ସୁରକ୍ଷା"ର ସହ ବାଂଲାଦେଶକୁ ଫେରିଯାଇପାରିବେ ।

ଶରଣାର୍ଥୀଙ୍କ ପ୍ରାବଲ୍ୟଜନିତ ସମସ୍ୟା ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ ହୋଇପଡ଼ିଥିବା ଭାରତୀୟ ଜନସାଧାରଣଙ୍କ ଭିତରେ କ୍ରୋଧ ଏବଂ ହତାଶାବୋଧ ଏଭଳିଭାବେ ବଢ଼ିଯାଇଥିଲା ଯେ ସେମାନେ "ସହସା ପଦକ୍ଷେପ" ପାଇଁ ଦାବି କରୁଥିଲେ ଏବଂ ଏଇ "ସହସା ପଦକ୍ଷେପ" ଥିଲା ଭାରତୀୟ ସାମରିକ ହସ୍ତକ୍ଷେପର ଗୋଟିଏ ନମ୍ର ଅଭିବ୍ୟକ୍ତି । କିନ୍ତୁ, ଆଗରୁ କୁହାଯାଇଛି ଇନ୍ଦିରାଙ୍କ କାର୍ଯ୍ୟାବଳୀରେ ଥିଲା ସାହସ ଏବଂ ସତର୍କତାର ଗୋଟିଏ ସମନ୍ୱୟ । କୌଣସି ଅପରିପକ୍ୱ ବା ବିପରୀତ ଫଳର କାରଣ ହେବାଭଳି କାମ କରିବାରୁ ସେ ସର୍ବଦା ନିବୃତ୍ତ ରହୁଥିଲେ । ହଠାତ୍ ତରବରିଆ ଭାବେ କୌଣସି ପଦକ୍ଷେପ ନ ନେବାର ଇନ୍ଦିରାଙ୍କ ପଲିସି କେବଳ ଯେ ଯଥାଯଥ ଥିଲା ତାହା ନୁହେଁ, ବାସ୍ତବିକତା ମଧ୍ୟ ଏଭଳି ହରବର ହୋଇ କିଛି ନକରିବାକୁ ବାଧ କରୁଥିଲା । କାରଣ, ସେହିପରି କଲେ ଭାରତ ଆନ୍ତର୍ଜାତିକ ଆଇନ ଭଙ୍ଗକରୁଛି ବୋଲି ଅଭିଯୋଗ ହେବାର ଭୟ ଥିଲା ଏବ ପାକିସ୍ତାନ ମଧ୍ୟ ଏହାର ସୁଯୋଗ ନେଇ ବାଲାଂଦେଶରେ ଚାଲିଥିବା ଆନ୍ଦୋଳନକୁ ବଦନାମ କରିବାର ଯଥେଷ୍ଟ ସମ୍ଭାବନା ଥିଲା ।

ମୌସୁମୀବେଳେ ବା ମୌସୁମୀ ପୂର୍ବରୁ ଆକ୍ରମଣ କରିବା ଏଥିପାଇଁ ଉଚିତ୍ ନଥିଲା କାରଣ, ସେଇ ସମୟରେ ସାଧାରଣତଃ ନଦୀସବୁ ବଢ଼ି ଅବସ୍ଥାରେ ଥାଏ ଏବଂ ସେତିକିବେଳେ ଗମନାଗମନ ଅସମ୍ଭବ ହୋଇପଡ଼େ । ଏହାଛଡ଼ା, ସମର ସଜ୍ଜାପାଇଁ ଭାରତୀୟ ସୈନ୍ୟବଳକୁ ଠିକଣା ଜାଗାମାନଙ୍କରେ ମୁତୟନ କରିବା ଜରୁରୀ ହୋଇପଡ଼ିଥିଲା । ଏଥିନେଇ ପ୍ରଧାନମନ୍ତ୍ରୀ ଏବଂ ଜେନେରାଲ ମାନେକ୍‌ସା (ଯେ କି ପରେ ଫିଲ୍‌ଡ୍ ମାର୍ଶାଲ୍ ହେଲେ) ସମ୍ପୂର୍ଣ୍ଣଭାବେ ଏକମତ ଥିଲା । ବାଂଲାଦେଶର ସ୍ୱାଧୀନତାର ପଚିଶ ବର୍ଷ ପୂର୍ତ୍ତି ଉପଲକ୍ଷେ ମାନେକ୍‌ସା ଗୋଟିଏ ରେଡ଼ିଓ ସାକ୍ଷାତକାରରେ ଇନ୍ଦିରାଙ୍କ ନେତୃତ୍ୱରେ ଗଭୀର ପ୍ରଶଂସା କରି ସେ ସମୟର "ତିନି ବାହିନୀଙ୍କ ଭିତରେ ଥିବା ଅପୂର୍ବ ସମନ୍ୱୟ ତଥା ସାମରିକ ବାହିନୀ ଏବଂ ପ୍ରଧାନମନ୍ତ୍ରୀଙ୍କ ଭିତରେ ଥିବା ତାଳମେଳର" ଭୂୟସୀ ପ୍ରଶଂସା କରିଥିଲେ ।

ପାକିସ୍ତାନ ଉପରେ ବିଶ୍ୱ ସମୁଦାୟର ଚାପପକାଇ ବାଂଲାଦେଶରେ ଚାଲିଥିବା ଗଣହତ୍ୟାକୁ ବନ୍ଦକରିବା ତଥା ସେଠାରେ କୌଣସି ଏକ ବୁଝାମଣାରେ ପହଞ୍ଚିବାର ପ୍ରୟାସର ପ୍ରାଥମିକତା ଥିଲା ଏଭଳି ଏକ ସାମରିକ ହସ୍ତକ୍ଷେପ ନକରିବା ପଛରେ ଥିବା କାରଣ । କିନ୍ତୁ, ଏହି ଆଶା ଭଙ୍ଗ ହେଲାପରେ ବି ଆମର ସାଧାରଣ ବୁଦ୍ଧି ଆମକୁ ସାଥେ ସାଥେ ଆକ୍ରମଣ ନକରି ଅନ୍ତତଃ ପକ୍ଷରେ ଶୀତଦିନ ଆସିବା ଯାଏଁ ଅପେକ୍ଷା କରିବାକୁ ବାଧକଲା, କାରଣ ଶୀତଦିନରେ ହିମାଳୟର ଗିରିପଥଗୁଡ଼ିକ ସମ୍ପୂର୍ଣ୍ଣଭାବେ ବରଫାବୃତ ହେବାପରେ ଯାଇ ଚୀନ ନିଜ ବନ୍ଧୁ ପାକିସ୍ତାନକୁ କୌଣସି ପ୍ରକାର ସାହାଯ୍ୟ ପଠେଇବାକୁ ଅସମର୍ଥ ହୋଇଥାନ୍ତା ।

ଆମେରିକାର ତତ୍କାଳୀନ ରାଷ୍ଟ୍ରପତି ନିକ୍‌ସନ୍‌ଙ୍କ ଜାତୀୟ ସୁରକ୍ଷା ପରାମର୍ଶଦାତା ହେନରି କିସିଞ୍ଜର ୧୯୭୧ରେ ଭାରତ ପରିଦର୍ଶନରେ ଆସି ଦେଇଥିବା ମନ୍ତବ୍ୟରୁ ସମ୍ଭାବ୍ୟ ଚୀନ

ପଦକ୍ଷେପକୁ ନେଇ ଭାରତ ଉଦ୍‌ବିଗ୍ନ ହୋଇପଡ଼ିଥିଲା । କାରଣ କଥା ପ୍ରସଙ୍ଗରେ ସେ ଯଥେଷ୍ଟ ସଂକେତ ଦେଇଥିଲେ ଯେ ଚୀନ ପକ୍ଷରୁ କୌଣସି ଆକ୍ରମଣ ହେବା ପରିପ୍ରେକ୍ଷୀରେ ଆମେରିକା ଭାରତକୁ ସାହାଯ୍ୟ କରିବନାହିଁ । ନିକ୍‌ସନ୍ - କିସିଞ୍ଜରଙ୍କ ଏହି ପାକିସ୍ତାନ ପ୍ରୀତି ଥିଲା ଭାରତ ପାଇଁ ଏକ ଧକ୍‌କା । ଏହାଠାରୁ ଆହୁରି ବଡ଼ ଧକ୍‌କା ଥିଲା କିସିଞ୍ଜରଙ୍କ ଗୋପନୀୟ ଚୀନ ପରିଭ୍ରମଣ ଏବଂ ଚୀନ - ଆମେରିକା ଭିତରେ ଥିବା ପୂର୍ବ ସମ୍ପର୍କରେ ଘୋର ପରିବର୍ତ୍ତନ ଘଟିବାର ସମ୍ଭାବନା । ଏହି ସମୟରେ ନୂଆଦିଲ୍ଲୀଠାରେ ଭାରତର ବିଦେଶ ସଚିବ ଟି.ଏନ୍. କାଉଲଙ୍କୁ ହେନରି କିସିଞ୍ଜର୍ ଯାହା ବୁଲେଇ ବଙ୍କେଇ କହିଥିଲେ ସେଇ କଥା ସେ ୱାଶିଂଟନ୍‌ରେ ଅବସ୍ଥାପିତ ଭାରତୀୟ ରାଷ୍ଟ୍ରଦୂତ ଏଲ୍‌କେ ଝାଙ୍କୁ ଖୁବ୍ ସ୍ପଷ୍ଟଭାବରେ କହିଦେଲେ ।

ଏହି ନୂତନ ପରିସ୍ଥିତିର ପ୍ରତିକ୍ରିୟା ସ୍ୱରୂପ ଇନ୍ଦିରା ଭାରତ - ସୋଭିଏତ୍ ଶାନ୍ତି, ମୈତ୍ରୀ ଏବଂ ସହଯୋଗର ଚୁକ୍ତିନାମା ନୂଆଦିଲ୍ଲୀଠାରେ ୧୯୭୧ ମସିହା ଅଗଷ୍ଟ ୯ରେ ସ୍ୱାକ୍ଷର କଲେ । ଏହି ଚୁକ୍ତିନାମାକୁ ଆଗକୁ ନେବା ସମ୍ପର୍କରେ ଇନ୍ଦିରା ଏତେ ବେଶୀ ତରତର ବା ବ୍ୟସ୍ତ ନଥିଲେ । କିନ୍ତୁ ଅନ୍ତର୍ଜାତୀୟ କ୍ଷମତା ରାଜନୀତିର ଚେସ୍ ପାଲିରେ ଏଭଳି ଶତ୍ରୁଭାବାପନ୍ନ ଚାଲ ଯୋଗୁଁ ସେ ତରତର ହେଲେ ଏବଂ ଏହି ଚୁକ୍ତିନାମା ଶୀଘ୍ର ସମ୍ପନ୍ନ ହୋଇଯାଉ ବୋଲି ଚାହିଁଲେ । ପ୍ରକୃତରେ ଭାରତର ଜନସାଧାରଣ ବି ଏହାର ସମର୍ଥନ କଲେ କାରଣ ଆମେରିକା, ପାକିସ୍ତାନ ଏବଂ ଚୀନର ମେଣ୍ଟର ଜବାବ ଦେବାପାଇଁ ଏହା ଉଦ୍ଦିଷ୍ଟ ଥିଲା ।

ଇତିମଧ୍ୟରେ ବାଂଲାଦେଶର ଜନତାଙ୍କ ଦ୍ୱାରା ଗଢ଼ାଯାଇଥିବା ମୁକ୍ତି ବାହିନୀ କଠିନତମ ପ୍ରତିବନ୍ଧକ ବିପକ୍ଷରେ ଯୁଦ୍ଧ କରିବାବେଳେ ଭାରତୀୟ ସୀମା ସନ୍ନିକଟ ଅଞ୍ଚଳରେ ସେମାନଙ୍କୁ ଆଶ୍ରୟ ଦିଆଯାଉଥିଲା, ସେମାନଙ୍କୁ ଅସ୍ତ୍ରଶସ୍ତ୍ର ଏବଂ ସେଗୁଡ଼ିକୁ ଚାଳନା କରିବାକୁ ପ୍ରଶିକ୍ଷଣ ପ୍ରଦାନ କରାଯାଉଥିଲା । ଏମାନଙ୍କୁ ସାହାଯ୍ୟ କରିବାର ଦାୟିତ୍ୱ ସାମରିକ ବାହିନୀ ଉପରେ ନ୍ୟସ୍ତ କରାଯାଇ ବର୍ଡ଼ର୍ ସିକ୍ୟୁରିଟି ଫୋର୍ସ ବା ସୀମାସୁରକ୍ଷା ବାହିନୀର ଜବାନମାନଙ୍କ ଉପରେ ରଖାଯାଇଥିଲା, ଯାହା କି ସେମାନେ ଅତି କୁଶଳତାର ସହ ନିର୍ବାହ କରିଥିଲେ ।

ଭାରତୀୟ ଜନତା, ସାଂସଦ ଏପରିକି ମନ୍ତ୍ରୀମାନଙ୍କୁ ବାରମ୍ବାର ଇନ୍ଦିରା ଶାନ୍ତ କରୁଥିଲେ ଯେଉଁମାନେ କି ସରକାରୀ 'ଉଦାସୀନତା'କୁ ନେଇ ବେଳକୁ ବେଳ ଧୈର୍ଯ୍ୟହରା ହୋଇପଡୁଥିଲେ । ବିସ୍ମୟକର ଭାବେ ସାମରିକ ହସ୍ତକ୍ଷେପ ସପକ୍ଷରେ ଦାବି କରୁଥିବା ବ୍ୟକ୍ତିମାନଙ୍କ ଭିତରେ ଥିଲେ ଜଣେ ସମ୍ମାନାସ୍ପଦ ଗାନ୍ଧିବାଦୀ ତଥା ଅହିଂସାର ପୂଜାରୀ ଜୟପ୍ରକାଶ ନାରାୟଣ ବା ଜେପି । ପିଏନ୍ ଧର ଲେଖିଛନ୍ତି ଯେ ଏହି ଗଭୀରଭାବେ ଶ୍ରଦ୍ଧାସ୍ପଦ ବ୍ୟକ୍ତିଙ୍କର ଏଭଳି 'ଅସନ୍ତୁଳନ ବିଚାର ତଥା ଆବେଗିକତା' ଦେଖି ସେ ବିସ୍ମୟାଭୂତ ହୋଇଯାଇଥିଲେ । ତେଣୁ ଜେପି ନିଜ ଶକ୍ତି ଏବଂ ସାମର୍ଥ୍ୟକୁ ଏ ଦିଗରେ ବେଶୀ ଖର୍ଚ୍ଚ ନକରି ପାକିସ୍ତାନ ବିରୁଦ୍ଧରେ ଜନମତ ସୃଷ୍ଟିକରିବା ଦିଗରେ ବ୍ୟୟ କରିବାକୁ କୁହାଯାଇଥିଲା । ବାଂଲାଦେଶକୁ ଏକ ରାଷ୍ଟ୍ରଭାବେ ତୁରନ୍ତ ସ୍ୱୀକୃତି ଦେବାର ଦାବିକୁ ଇନ୍ଦିରା ନିରୁତ୍ସାହିତ କରି କହିଥିଲେ ଯେ ଗୋଟିଏ ଭୁଲ୍

ପଦକ୍ଷେପ, ଏପରି କି ଗୋଟିଏ ଭୁଲ୍ ଶବ୍ଦ, ଆଶାନୁରୂପ ଫଳାଫଳ କଥା ଦୂରେ ଥାଉ, ସମ୍ପୂର୍ଣ୍ଣଭାବେ ବିପରୀତ ପରିଣାମ ସୃଷ୍ଟି କରିପାରେ ।

ଏଇଭଳି ସେ ଏଇ ଘଡ଼ିସନ୍ଧି ମୁହୂର୍ତ୍ତରେ ସେ ତାଙ୍କ ନେତୃତ୍ୱର ପରାକାଷ୍ଠା ଦେଖାଇଥିଲେ । ଏଇ ସମୟତକ ସେ ଶାନ୍ତ,ଦୃଢ଼ ପ୍ରତିଜ୍ଞ ତଥା ପ୍ରେରଣାଦାତ୍ରୀ ଭାବେ ରହିଥିଲେ । ପାକିସ୍ତାନର ଆହ୍ୱାନର ପ୍ରତିକ୍ରିୟା ଭାବେ ସେ ରାଜନୈତିକ, କୂଟନୈତିକ ଏବଂ ସାମରିକ ଆଭିମୁଖ୍ୟର ଗୋଟିଏ ସୁନ୍ଦର ସମନ୍ୱୟ ଆଣିବାରେ ସଫଳ ହୋଇଥିଲେ । ତାଙ୍କ ପ୍ରତିଟି ଚାଲ ଥିଲା ଚମତ୍କାରଭାବେ ସମୟୋପଯୋଗୀ । ପ୍ରତିଟି ସୋପାନରେ ବିରୋଧୀଦଳଙ୍କୁ ସବୁ ବିଷୟରେ ଅବଗତ କରାଇ ସେମାନଙ୍କ ଠାରୁ ସହମତି ହାସଲ କରିବାରେ ସେ ଥିଲେ ସିଦ୍ଧହସ୍ତା ।

ଅଗଷ୍ଟ ଶେଷ ବେଳକୁ ସେ ଏଇ ଉପସଂହାରରେ ପହଞ୍ଚିଥିଲେ ଯେ ବିଶ୍ୱ ସମୁଦାୟକୁ ପ୍ରଭାବିତ କରି ସେମାନଙ୍କ ମତ ପରିବର୍ତ୍ତନ କରାଇବା ହିଁ ତାଙ୍କର ପ୍ରାଥମିକତା ହେବା ଉଚିତ । ତେଣୁ, ସେପ୍ଟେମ୍ବର ମାସ ପ୍ରାରମ୍ଭରେ, ଭାରତ - ରୁଷ ରାଜିନାମା ସ୍ୱାକ୍ଷରିତ ହେବାର ତିନି ସପ୍ତାହ ପରେ ସେ ମସ୍କୋ ଗଲେ ଏବଂ ସେଠାରେ ତାଙ୍କ ବକ୍ତବ୍ୟକୁ ଖୁବ୍ ସମ୍ମାନର ସହ ଶୁଣାଗଲା । ଇନ୍ଦିରାଙ୍କ ଏହି ସୋଭିଏତ୍ ଗସ୍ତର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଦିଗଟି ଥିଲା ଏୟା ଯେ ସେ, ସୋଭିଏତ୍ ରାଷ୍ଟ୍ରପତିଙ୍କ ଠାରୁ ଗୌଣ ଆଉ କେଉଁ ସୋଭିଏତ୍ ନେତାଙ୍କ ସହ ବୁଝାମଣା କରିବାକୁ ମନା କରିଦେଲେ ଏବଂ ସେଇ କାରଣରୁ ଲିଓନିଦ୍ ବ୍ରେଜ୍‌ନେଭ୍‌ଙ୍କୁ ତାଙ୍କ ଛୁଟିକୁ ଅଧାରୁ ରଖି ଫେରିବାକୁ ହେଲା । ଏହାର ଗୋଟିଏ ମାସ ପରେ ସେ ଅଷ୍ଟ୍ରିଆ, ବେଲ୍‌ଜିଅମ୍, ଫ୍ରାନ୍‌ସ୍, ପଶ୍ଚିମ ଜର୍ମାନି, ବ୍ରିଟେନ୍ ଏବଂ ଯୁକ୍ତରାଷ୍ଟ୍ର ଆମେରିକାକୁ ତିନି ସପ୍ତାହର ଏକ ଦ୍ରୁତ ଯାତ୍ରାରେ ବାହାରିଲେ । ଇନ୍ଦିରାଙ୍କ ଏଇ ଭୂମିକାରେ ଅଭିନୟ ଥିଲା ଚମକଦାର ।

## ଚମତ୍କାର କୂଟନୀତି

ଇନ୍ଦିରା ଏସବୁ ରାଷ୍ଟ୍ରର ରାଜଧାନୀରେ କ'ଣ କଲେ ବା କ'ଣ କହିଲେ ସେସବୁ କଥାକୁ ଯଦି ବର୍ଣ୍ଣନା କରାଯାଏ, ତେବେ ତାହା ଅନେକଗୁଡ଼ିଏ ସ୍ଥାନ ନେବ । ତେଣୁ ଅଳ୍ପ କେତେକ ଉଦାହରଣରୁ ଏହା ସ୍ପଷ୍ଟଭାବେ ବୁଝିହେବ । ଉଦାହରଣସ୍ୱରୂପ, ବ୍ରିଟେନ୍‌ର ଚତୁର ଏବଂ ମୃଦୁଭାଷୀ ବିଦେଶ ସଚିବ ସାର୍ ଆଲାନ୍ ଡ଼ଗଲାସ୍ ହୋମ୍ ତାଙ୍କୁ ସିଧାସଳଖ ପଚାରିଲେ, "ଯୁଦ୍ଧ ହେବ କି ?" ନିଜର ନମ୍ର ତଥା ଖୋଲା ଉତ୍ତରଦେବା ଶୈଳୀରେ ଇନ୍ଦିରା ଉତ୍ତର ଦେଲେ, "ଆମେ ପ୍ରଥମେ ଯୁଦ୍ଧ ଚାହିଁବୁ ନାହିଁ ।" ତା'ପରେ ଦୁହେଁ ଅନ୍ୟ ବିଷୟରେ କଥାବାର୍ତ୍ତା ଆରମ୍ଭକଲେ ।

ଯେହେତୁ ପୂର୍ବ ପାକିସ୍ତାନରେ ଘଟୁଥିବା ଘଟନାବଳୀକୁ ନେଇ ବ୍ରିଟେନ୍ ଏବଂ ପାଶ୍ଚାତ୍ୟବାସୀଙ୍କ ସାଧାରଣ ପ୍ରତିକ୍ରିୟା ଏବଂ ଗଣମାଧ୍ୟମସବୁର ମତାମତ ସେଠାକାର ସରକାରଙ୍କ ବକ୍ତବ୍ୟଠାରୁ ଯଥେଷ୍ଟ ପ୍ରତିକ୍ରିୟାଶୀଳ ଥିଲା, ତାର ସୁଯୋଗ ନେଇ ବିବିସିର ଏକ ସାକ୍ଷାତକାରରେ ଇନ୍ଦିରା ସମସ୍ତଙ୍କୁ ଅନ୍ତତଃ ପକ୍ଷେ ଏଇ ବାର୍ତ୍ତା ଦେଲେ ଯେ ତାଙ୍କୁ ସଂଯମ ରଖିବାକୁ ଯେଉଁଭଳି

ଭାବେ ବାରମ୍ବାର କୁହାଯାଉଛି, ତାହା "ଅର୍ଥହୀନ ।" ସେ କହିଲେ, ଦେଶର "ସୁରକ୍ଷା ଏବଂ ସ୍ଥିରତାକୁ ନେଇ ଦେଖାଦେଇଥିବା ବିପଦ ପରିପ୍ରେକ୍ଷୀରେ" ଭାରତ ଯେଉଁ ସଂଯମର ପରିଚୟ ଦେଇଛି ତାହା ଅନ୍ୟ କୌଣସି ଦେଶ ପକ୍ଷରେ ସମ୍ଭବ ହୋଇନଥାନ୍ତା । ତଥାପି, ଯେତେବେଳେ ସାକ୍ଷାତକାର ନେଉଥିବା ବ୍ୟକ୍ତିଜଣକ ବାରମ୍ବାର ସଂଯମ କଥା ଉଠେଇଲେ, ସେତିକିବେଳେ ଇନ୍ଦିରା ଜବାବ ଦେଲେ : "ଯେତେବେଳେ ହିଟ୍‌ଲର୍ ପୂରା ଦମ୍‌ରେ ମାତିଥିଲେ, ସେତେବେଳକୁ ଆପଣମାନେ କାହିଁକି କହିଲେ ନାହିଁ ଯେ ଚାଲ ଆମେ ଚୁପ୍‌ଚାପ୍ ବସିବା ଏବଂ ଜର୍ମାନି ସହିତ ଶାନ୍ତି ବଳବତ୍ତର ରଖିବା । ତେଣିକି ଜ୍ୟୁମାନେ ମଲେ ମରନ୍ତୁ ?"

ଆମେରିକାରେ କିନ୍ତୁ ପରିସ୍ଥିତି ଥିଲା ସମ୍ପୂର୍ଣ ଭାବେ ଭିନ୍ନ । ପାକିସ୍ତାନର ଘାତକ ୟାହ୍ୟା ସରକାର ପ୍ରତି ଅତି ଆଶ୍ଚର୍ଯ୍ୟକର ଭାବେ ଆସକ୍ତ ହୋଇପଡ଼ିଥିବା ଏବଂ ଚୀନ ସହ ନୂତନଭାବେ ଗଢ଼ିଉଠିଥିବା ସମ୍ପର୍କରେ ମୋହିତ ହୋଇପଡ଼ିଥିବା ଆମେରିକାର ରାଷ୍ଟ୍ରପତି ରିଚାର୍ଡ୍ ନିକ୍‌ସନ୍ ପୂର୍ବ ପାକିସ୍ତାନର ଅତ୍ୟାଚାରିତ ଲୋକମାନଙ୍କ ପ୍ରତି ଥିଲେ ଦରଦହୀନ । ଭାରତ ପ୍ରତି ତାଙ୍କର ଟିକିଏ ବି ସମବେଦନା ନଥିଲା । ପରେ ଶାରଦା ପ୍ରସାଦଙ୍କ ଏକ ରିପୋର୍ଟରୁ ସେ ସମ୍ପର୍କରେ ଜଣାପଡ଼େ । ଇନ୍ଦିରା ଗାନ୍ଧି ଆମେରିକା ପହଞ୍ଚିବା ପରେ ହ୍ୱାଇଟ୍ ହାଉସ୍‌ର ଲନ୍‌ରେ ତାଙ୍କୁ ସ୍ୱାଗତ ଜଣାଇବା ଅବସରରେ ନିକ୍‌ସନ୍ କିଛିଦିନ ଆଗରୁ ଓଡ଼ିଶାରେ ହୋଇଥିବା ବାତ୍ୟା ପ୍ରପୀଡ଼ିତମାନଙ୍କ ପ୍ରତି ସମବେଦନା ଜଣାଇଲେ ସିନା, ହେଲେ ପାକିସ୍ତାନର ସାମରିକ ଆତଙ୍କରୁ ରକ୍ଷା ପାଇବାପାଇଁ ପୂର୍ବ ପାକିସ୍ତାନରୁ ଲକ୍ଷ ଲକ୍ଷ ସଂଖ୍ୟାରେ ଭାରତକୁ ପଳାଇ ଆସୁଥିବା ଶରଣାର୍ଥୀମାନଙ୍କ ଦାରୁଣ ଦୁଃଖ ସମ୍ପର୍କରେ ପଦୁଟିଏ ବି କହିଲେ ନାହିଁ । ଏହା ଥିଲା ଇନ୍ଦିରାଙ୍କ ପାଇଁ ଏକ "ସୁବର୍ଣ୍ଣ ସୁଯୋଗ ।" ସେ ନିଜ ଆମେରିକା ଗସ୍ତର ଉଦ୍ଦେଶ୍ୟକୁ ବେଶ୍ ସ୍ପଷ୍ଟ ଉଚ୍ଚାରଣରେ କହି ଆମେରିକା ସରକାରକୁ "ଅପ୍ରସ୍ତୁତ ଅବସ୍ଥାରେ ପକାଇଦେଲେ ।"

୨୦୦୫ ମସିହାରେ ଆମେରିକାର ଗୃହ ବିଭାଗ ୧୯୭୧ର "ଦକ୍ଷିଣ ଏସିଆ ସଂକଟ" ନାମକ ଏକ ନଅଶହ ପୃଷ୍ଠା ସମ୍ବଳିତ ପୁସ୍ତକ ପ୍ରକାଶ କଲା । ତେବେ ଏ ପୁସ୍ତକରେ ଯାହା ଲେଖାଥିଲା, ତାର ଅଧିକାଂଶ ଅଂଶ ଆଗରୁ ବିଭିନ୍ନ ପତ୍ରପତ୍ରିକାରେ ନିବନ୍ଧ ଆକାରରେ, ବିଭିନ୍ନ ପୁସ୍ତକ ଆକାରରେ ତଥା ସେଇ ସମୟର ଗତିବିଧିକୁ ନିକଟରୁ ଦେଖିଥିବା ବ୍ୟକ୍ତିବିଶେଷଙ୍କ ଆତ୍ମଜୀବନୀରେ ପ୍ରକାଶିତ ହୋଇସାରିଥିଲା । ତଥାପି ସଦ୍ୟ ପ୍ରକାଶିତ ଏଇ ପୁସ୍ତକରେ ଏଭଳି ଅନେକ ଚକିତ କରିଦେଲା ଭଳି ସରକାରୀ ତଥ୍ୟ ଥିଲା, ଯାହା ପ୍ରକାରାନ୍ତରେ ଇଙ୍ଗିତ କରୁଥିଲା ଯେ ଆଗରୁ ଯାହାସବୁ ପ୍ରକାଶିତ ହୋଇଛି, ସେସବୁ ତୁଳନାତ୍ମକଭାବେ ମୃଦୁ ବା ମୁଲାୟମ । ଉଦାହରଣସ୍ୱରୂପ, ତାଙ୍କ ହ୍ୱାଇଟ୍ ହାଉସ୍ ସମୟ କାଳ - ଯାହାକୁ ଅନେକ "ହ୍ୱାଇଟ୍ ୱାସ୍" ବା "ଚୂନ ଧଉଳା" ସମୟ ବୋଲି କହନ୍ତି - ଭିତରେ କିସିଞ୍ଜର୍ କହିଥିଲେ ଯେ ନିକ୍‌ସନ୍ - ଗାନ୍ଧି କଥାବାର୍ତ୍ତା ପ୍ରକୃତରେ ଥିଲା "ଦୁଇ କାଳ ହେଉଥିବା କଥାବାର୍ତ୍ତା ସହ ସମାନ ।" ସେ ଆହୁରି କହିଥିଲେ ଯେ ନିକ୍‌ସନ୍ ଏବଂ ଇନ୍ଦିରା ; ଉଭୟ ପରସ୍ପର ସହ "କଦାପି ଖାପ ନ ଖାଇବା ପାଇଁ

ବିଧି ଦ୍ୱାରା ଗଢ଼ାହୋଇଥିଲେ ।" ଏବଂ ଏହା ବି ମାନିଥିଲେ ଯେ କିଛି ନିକ୍ସନ୍ - ଗାନ୍ଧି ବୈଠକପରେ ନିକ୍ସନ ଯେଉଁ ମନ୍ତବ୍ୟ ଦେଉଥିଲେ ତାହା ଛପାହେବା ଯୋଗ୍ୟ ନୁହେଁ । ବର୍ତ୍ତମାନ ଏହି ବର୍ଣ୍ଣନା ପୃଷ୍ଠଭୂମିରେ ଗୃହବିଭାଗ ଦ୍ୱାରା ପ୍ରକାଶିତ ପୁସ୍ତକଟି ସମ୍ପର୍କରେ ବିଚାର କରାଯାଉ । ୧୯୭୧, ନଭେମ୍ବର ୫ରେ ନିକ୍ସନ୍ - ଇନ୍ଦିରାଙ୍କ କଥାବାର୍ତ୍ତା ପରେ ନିକ୍ସନ ଏବଂ କିସିଞ୍ଜରଙ୍କ ମଧ୍ୟରେ ହୋଇଥିବା କଥାବାର୍ତ୍ତା ସମ୍ପର୍କରେ ସେଇ ପୁସ୍ତକରେ ବର୍ଣ୍ଣନା କରାଯାଇଛି ।

ସରକାରୀ ତଥ୍ୟାନୁସାରେ (ପୃଷ୍ଠା ୪୯୯) କିସିଞ୍ଜରଙ୍କ ବକ୍ତବ୍ୟ ଥିଲା, "ଭାରତୀୟମାନେ ତ ଯାହା ହେଲେ ବି 'ବାଷ୍ଟାର୍ଡ୍' (ଜାରଜର ଇଂରାଜୀ ଗାଳି) । ସେମାନେ ସେଠାରେ ଏକ ଯୁଦ୍ଧ ଆରମ୍ଭ କରୁଛନ୍ତି । ସେମାନଙ୍କ ପାଇଁ ପୂର୍ବ ପାକିସ୍ତାନ କୌଣସି ସମସ୍ୟା ନୁହେଁ । ସେ ଆପଣଙ୍କ ସହିତ ପାକିସ୍ତାନକୁ ନେଇ ଯେମିତି କଥାବାର୍ତ୍ତା କଲେ ମୋତେ ତାହା ଆମୋଦ ଦେଉଥିଲା ।" ପୂର୍ବଦିନ ନିକ୍ସନ୍ଙ୍କ ସହ ଇନ୍ଦିରା କରିଥିବା କଥାବାର୍ତ୍ତା ସମ୍ପର୍କରେ ଏହି ବକ୍ତବ୍ୟ ଉଦ୍ଦିଷ୍ଟ ଥିଲା ବୋଲି ସ୍ପଷ୍ଟଭାବେ ଜଣାପଡ଼ିଯାଇଥିଲା । କିସିଞ୍ଜର୍ ଏବଂ ଇନ୍ଦିରାଙ୍କ ମୁଖ୍ୟ ସଚିବ ପିଏନ୍ ହସ୍କରଙ୍କ ଉପସ୍ଥିତିରେ ସେଇଦିନ ଇନ୍ଦିରା, ନିକ୍ସନ୍ଙ୍କ ସହିତ ପଶ୍ଚିମ ପାକିସ୍ତାନ ସମ୍ପର୍କରେ ଆଲୋଚନା କରିଥିଲେ ।

ସେଇ ବୈଠକରେ ଇନ୍ଦିରା ସ୍ପଷ୍ଟଭାବେ କହିଥିଲେ ଯେ ଭାରତ ପାକିସ୍ତାନ ବିରୋଧୀ ଆଭିମୁଖ୍ୟ ଦ୍ୱାରା ପରିଚାଳିତ ନୁହେଁ । ପାକିସ୍ତାନ ବିଧ୍ୱସ୍ତ ହୋଇଯାଉ ବା ସବୁଦିନ ପାଇଁ ଅକର୍ମଣ୍ୟ ହୋଇଯାଉ ; ଏଭଳି ଚିନ୍ତା ଭାରତ ପୋଷଣ କରେନାହିଁ । ବରଂ ଭାରତ ଚାହେଁ ଯେ ସେଇ ଅଞ୍ଚଳରେ ଶାନ୍ତି ବାହାଲ ହେଉ ଏବଂ ଯେମିତି ବି ହେଉ ଗଣ୍ଡଗୋଳିଆ ପରିସ୍ଥିତି ଦୂର ହେଉ । ଯେତେବେଳେ ନିକ୍ସନ୍ ପଚାରିଲେ ଯେ ଏ ସମସ୍ୟାର ସମାଧାନ ତେବେ କ'ଣ ? ତାର ଉତ୍ତରରେ ଇନ୍ଦିରା ଗାନ୍ଧି କହିଥିଲେ, "ସାଂପ୍ରତିକ ପରିସ୍ଥିତି ଯୋଗୁଁ ଭାରତ ଉପରେ ଯେଉଁ ଦାରୁଣ ପ୍ରଭାବ ପଡିବାର ସମ୍ଭାବନା ଅଛି ତାହା ହେଉଛି ଆମ ପାଇଁ ସବୁଠାରୁ ଅଧିକ ଉଦ୍‌ବେଗର କାରଣ । ତାପରେ ସେ କହିଥିଲେ, ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ସଂଦର୍ଭ ହେଉଛି ମୁଜିବଙ୍କ ଭବିଷ୍ୟତ, ଯେ କି ପୂର୍ବ ବଙ୍ଗ ସ୍ୱୟଂଶାସିତ ହେବାର ଇଚ୍ଛାର ପ୍ରତୀକ । (ଯାହ୍ୟା ସେତିକିବେଳେ ବନ୍ଦୀ ଅବସ୍ଥାରେ ଥିବା ମୁଜିବଙ୍କ ବିରୋଧରେ ରାଜଦ୍ରୋହ ଅଭିଯୋଗ ଆଣି ତାଙ୍କ ବିଚାର ଏକ ସାମରିକ କୋର୍ଟ ଦ୍ୱାରା କରାଇବାର ମସୁଧାରେ ଥିଲେ । ଆମେରିକାକୁ ଯେତେବେଳେ କୁହାଗଲା ଯେ ଏହାକୁ ବନ୍ଦ କରାଯାଉ, ସେତେବେଳେ କେବଳ ଏତିକି ଉତ୍ତର ମିଳିଥିଲା ଯେ ମୁଜିବଙ୍କୁ ମୃତ୍ୟୁଦଣ୍ଡ ଦିଆଯିବ ନାହିଁ ।)

ଏହା ସତ୍ତ୍ୱେ ବି ଓଭାଲ୍ ଅଫିସ୍‌ରେ କିସିଞ୍ଜର ଏବଂ ନିକ୍ସନ୍ ବସି କଥାବାର୍ତ୍ତା ହେଉଥିଲାବେଳେ ନିକ୍ସନ୍ କିଭଳି କୌଶଳତାର ସହ ଭାରତୀୟ ପ୍ରଧାନମନ୍ତ୍ରୀଙ୍କ ସହ କଥାବାର୍ତ୍ତା କରି ନିଜ ଉଦ୍ଦେଶ୍ୟ ସାଧନ କରିବାରେ ସଫଳ ହୋଇଛନ୍ତି ସେ ନେଇ ପରସ୍ପରକୁ ବାହାବା

ଦେଇ ଆତ୍ମପ୍ରସାଦ ଲାଭ କରୁଥିଲେ । ସରକାରୀ ରେକର୍ଡ଼ରେ ଉଲ୍ଲେଖ ଅଛି ଯେ କିସିଞ୍ଜର୍ କହିଥିଲେ : "ସେ (ଇନ୍ଦିରା ଗାନ୍ଧି) ଜଣେ କୁତୀ, ଆମେ ଯାହା ଚାହୁଁଥିଲେ ତାହା ପାଇଲେ ।" ନିକ୍ସନ୍ ତାଙ୍କ କଥାରେ ଏକମତ ହୋଇ କହିଲେ, "ସେଇ ବୁଢ଼ୀ ଡ଼ାଆଣୀକୁ ଆମେ ଜିଣିଗଲେ । ଏଭଳି କଦର୍ଯ୍ୟ ଭାଷାର ଅନେକ ଉଦାହରଣ ସେଥିରେ ଅଛି ।

ନିକ୍ସନ୍, ଅଶାଳୀନତା ଏବଂ ସଂକୀର୍ଣ୍ଣତାର ପରିଚୟ ଦେଇ ଇନ୍ଦିରା ଗାନ୍ଧିଙ୍କୁ ତାଙ୍କର ଦ୍ୱିତୀୟ ବୈଠକ ପାଇଁ କୋଡ଼ିଏ ମିନିଟ୍ ଅପେକ୍ଷା କରାଇଦେଇଥିଲେ । ତା ପରେ ସେ ହଠାତ୍ ଧଇଁସଇଁ ହୋଇ ଭିତରକୁ ପଶି ହାତ ବଢ଼ାଇ ଇନ୍ଦିରାଙ୍କୁ ଅଭ୍ୟର୍ଥନା କରିଥିଲେ ଏବଂ ବ୍ୟକ୍ତିଗତ ପରିଚାରକମାନେ ତାଙ୍କୁ ଖବର ଦେଇ ନଥିବାରୁ ବିରକ୍ତ ମଧ୍ୟ ହୋଇଥିଲେ । ଏହି ବୈଠକରେ, ସରକାରୀ ରେକର୍ଡ଼ସ୍ ଯାହା କହେ, ସେମାନେ ଯାବତୀୟ ବିଷୟରେ କଥା ହେଲେ ମାତ୍ର ଅସଲ ଦକ୍ଷିଣ ଏସୀୟ ସମସ୍ୟା ଉପରେ କଥା ହେବାର ସୁଯୋଗ ଜୁଟିଲାନାହିଁ । ଭାରତ - ପାକିସ୍ତାନ ସୀମାରୁ ସୈନ୍ୟ ଅପସାରଣ କରିବାକୁ ନିକ୍ସନ୍ ଦେଇଥିବା ପ୍ରସ୍ତାବକୁ ଇନ୍ଦିରା ଗାନ୍ଧି ଶୁଣିଲେ ନାହିଁ । ଇନ୍ଦିରାଙ୍କ ଦୁର୍ଭେଦ୍ୟ ନିରବତା ଦ୍ୱାରା ବିଧ୍ୱସ୍ତ ହେବାରେ ନିକ୍ସନ୍ ପ୍ରଥମ ବା ଶେଷ ବିଶ୍ୱସ୍ତରୀୟ ନେତା ନଥିଲେ ।

ପୂର୍ବ ରାତିରେ ହ୍ୱାଇଟ୍ ହାଉସ୍‌ର ଭୋଜି ସଭା ସମ୍ପର୍କରେ ଶାରଦା ପ୍ରସାଦ ଯାହା ଲେଖିଛନ୍ତି, ତହିଁରେ ଆଉ କିଛି ଯୋଡ଼ିବାର ଧୃଷ୍ଟତା କରାଯାଇନପାରେ । ଏହାର ଚବିଶ ବର୍ଷ ପରେ 'ଦୂରାନ୍ତର ଏକ ଥଣ୍ଡା ରାତ୍ରି ଭୋଜନ' ନାମକ ଏକ ପ୍ରବନ୍ଧରେ ସେ ଲେଖିଥିଲେ ଯେ ସେଇ ରାତ୍ରି ଭୋଜନଟି ଥିଲା ମୁଁ ଯୋଗ ଦେଇଥିବା ରାଷ୍ଟ୍ର ଭୋଜିମାନଙ୍କ ଭିତରୁ ସବୁଠାରୁ ଥଣ୍ଡା । 'କୂଟନୈତିକ ଟାୱେଲ୍‌କୁ ଚିପୁଡ଼ି ତହିଁରୁ ଗୋଟିଏ ଟୋପା ବି ଆନ୍ତରିକତା ବାହାର କରିବା ନିର୍ବୋଧତା ଥିଲା ।'

ଇନ୍ଦିରା ଗାନ୍ଧିଙ୍କ କୂଟନୈତିକ ଯାତ୍ରା, ଯାହା ମସ୍କୋରୁ ଆରମ୍ଭ ହୋଇ ଆମେରିକାରେ ଶେଷ ହେଲା ; ତାର ପରିଣାମ ହେଲା ଏୟା ଯେ ଆମେରିକାର ରୁକ୍ଷ ରାଷ୍ଟ୍ରପତି ଏବଂ ତାଙ୍କ ବିଶ୍ୱସ୍ତ ଅନୁଚର ଏ କଥା ଧରିପାରି ନଥିଲେ ଯେ ଇନ୍ଦିରା ତାଙ୍କର ବିଚକ୍ଷଣ କୂଟନୈତିକତାର ପରିଚୟ ଦେଇ ବାଂଲାଦେଶ ବ୍ୟାପାରରେ ଆଟ୍‌ଲାଣ୍ଟିକ୍ ହସ୍ତକ୍ଷେପର ସମ୍ଭାବନାକୁ ପୂରାପୂରି ଭାବେ ବେଖାତିର କରିଦେଇଥିଲେ । ୟୁରୋପୀୟ ଦେଶମାନେ 'ନାଟୋ' ଗୋଷ୍ଠୀର ସଦସ୍ୟ ଥିଲେ ମଧ୍ୟ ସେମାନେ ବାଂଲାଦେଶର ଲୋକମାନଙ୍କ ଦୁର୍ଦ୍ଦଶା ପ୍ରତି ସହାନୁଭୂତିଶୀଳ ଥିଲେ ଏବଂ ପାକିସ୍ତାନ ସାମରିକ ବାହିନୀର ନିଷ୍ଠୁରତାକୁ ବରଦାସ୍ତ କରିବା ପରିସ୍ଥିତିରେ ନଥିଲେ । ଆମେରିକା ଏକ ଅନୈତିକ ଏବଂ ସାମରିକଭାବେ ପରାଜିତ ହେବାପାଇଁ ବିଧି ଉଦ୍ଦିଷ୍ଟ ପକ୍ଷର ସାଥୀହୋଇ ଏକୁଟିଆ ହୋଇପଡ଼ିଥିଲା ।

## ବିଜୁଳି ପରି ପ୍ରଚାର

ୟୁରୋପ ଏବଂ ଆମେରିକା ଗସ୍ତ କାଳରେ ଇଣ୍ଡିଆ ଲିଗ୍ ଦ୍ୱାରା ଆୟୋଜିତ ଏକ ସାଧାରଣ ସଭାରେ ଯୋଗଦେଇ ଇନ୍ଦିରା କହିଥିଲେ ଯେ "ମୁଁ ଗୋଟିଏ ଆଗ୍ନେୟଗିରି ଉପରେ ବସିଛି ଏବଂ ମୁଁ ଜାଣିନାହିଁ କେତେବେଳେ ଏହାର ଉଦ୍‌ଗୀରଣ ହେବ ।" ଭାରତକୁ ଫେରିଲାପରେ ସେ ଜାଣିଲେ ଯେ ବିସ୍ଫୋରଣ ହେବାର ସମୟ ନିକଟରେ । ନଭେମ୍ବର ପ୍ରାରମ୍ଭରେ ଯେତେବେଳେ ମୌସୁମୀର ପ୍ରଭାବ କମିଯାଇଥାଏ ପାକିସ୍ତାନ ସାମରିକ ବାହିନୀର କ୍ରୂରତା ତାର ଚରମ ସୀମାରେ ପହଞ୍ଚିଯାଇଥାଏ । ମୁକ୍ତି ବାହିନୀ ତାର କାର୍ଯ୍ୟକଳାପକୁ ତ୍ୱରାନ୍ୱିତ କରି ପୂର୍ବ ପାକିସ୍ତାନର କିଛି ଅଂଶକୁ କବ୍‌ଜାକୁ ନେଇ ଆସିଥାଏ । ସେଇ ସ୍ଥାନସବୁକୁ ବେଦଖଲ କରିବାପାଇଁ ପାକିସ୍ତାନର ଉଦ୍ୟମ ଛୋଟ ଛୋଟ ଯୁଦ୍ଧର କାରଣ ହେଉଥାଏ ଏବଂ ଏ ଯୁଦ୍ଧ ଭିତରୁ ନଭେମ୍ବର ୨୧-୨୨ରେ ଯେଶୋର୍‌ଠାରେ ହୋଇଥିବା ଯୁଦ୍ଧ ସ୍ୱତନ୍ତ୍ର ଗୁରୁତ୍ୱ ରଖେ । କାରଣ, ଗୋଟିଏ ପୂରା ପାକିସ୍ତାନୀ ବ୍ରିଗେଡ୍, ଗୁଳିଗୋଳା, ଟ୍ୟାଙ୍କ୍ ଏବଂ ଲଢୁଆ ବିମାନର ସାହାଯ୍ୟନେଇ ଏକ ବିରାଟ ଆକ୍ରମଣ ଆରମ୍ଭ କରିଦେଲେ, ଯାହା ଏହି ସୀମାନ୍ତ ଅଞ୍ଚଳର ବିଭିନ୍ନ ଦିଗକୁ ବ୍ୟାପିଗଲା ।

ଭାରତ ବୁଝିପାରୁଥିଲା ଯେ ପରିସ୍ଥିତିକୁ ଏଭଳି ଭାବେ ଗତିକରିବାକୁ ଛାଡ଼ିଦେବା ଅର୍ଥ ହେଉଛି ବିପତ୍ତିକୁ ଆମନ୍ତ୍ରଣ କରିବା ଏବଂ ଏ ଦିଗରେ କିଛି ନକରି ଚୁପ୍ ରହିବା ଅର୍ଥ ହେଉଛି ଏହି ସ୍ଥାନକୁ ବାହ୍ୟ ଶକ୍ତିଗୁଡ଼ିକର ଚରାଭୂଇଁ ଭାବେ ଗଢ଼ିଉଠିବାକୁ ଅନୁମତି ଦେବା । ତେଣୁ ଡ଼ିସେମ୍ବର ୪ତାରିଖରେ ପୂର୍ବ ଦିଗରେ ସାମରିକ କାର୍ଯ୍ୟାନୁଷ୍ଠାନ ଆରମ୍ଭ କରିବାର ନିଷ୍ପତ୍ତି ଇନ୍ଦିରା ନେଲେ, ଯଦିଓ ତାଙ୍କ ପଟରୁ ପ୍ରଥମେ ଗୋଟିଏ ସମ୍ପୂର୍ଣ୍ଣ ଯୋଜନାବଦ୍ଧ ଆକ୍ରମଣ ଆରମ୍ଭ କରିବା ପକ୍ଷରେ ସେ ନଥିଲେ । କିନ୍ତୁ, ଇନ୍ଦିରାଙ୍କ ଏହି ଦ୍ୱନ୍ଦ୍ୱକୁ ୟାହ୍ୟାଙ୍କ କାମ ଦୂର କରିଦେଲା । ଡ଼ିସେମ୍ବର ୩ ସୂର୍ଯ୍ୟାସ୍ତ ପୂର୍ବରୁ ୟାହ୍ୟା ଏକ ଆକ୍ରମଣ ଆରମ୍ଭ କରିଦେଲେ, ଯାହାକୁ କୁହାଗଲା ଏକ ଦୁର୍ଭାଗ୍ୟପୂର୍ଣ୍ଣ ଆକ୍ରମଣ । ପାକିସ୍ତାନୀ ବିମାନ ବାହିନୀର ବମ୍ୱରମାନେ ଭାରତର ଅନେକ "ଏଆର୍ ବେସ୍" ବା "ବିମାନ ଘାଟୀ" ଉପରେ ଆକ୍ରମଣ ଆରମ୍ଭ କରିଦେଲେ । ଏହି ଆକ୍ରମଣ ଥିଲା ଅର୍ଥହୀନ ଏବଂ ବାଂଲାଦେଶକୁ ସ୍ୱାଧୀନ କରିବାପାଇଁ ଯେଉଁ ଯୁଦ୍ଧଟିର ଆବଶ୍ୟକତା ଥିଲା ତାକୁ ଉସୁକାଇଲା ଏଇ ଆକ୍ରମଣ । ଭାରତୀୟ ସାମରିକ ବାହିନୀ ପୂର୍ବ ପାକିସ୍ତାନର ଗ୍ରାମାଞ୍ଚଳ ଦେଇ ବିଜୁଳି ବେଗରେ ଅଗ୍ରସର ହେବାକୁ ଲାଗିଲେ । ଭାରତୀୟ ସାମରିକ ନେତୃତ୍ୱ ବୁଦ୍ଧିମତାର ପରିଚୟ ଦେଇ ପାକିସ୍ତାନୀ ବାହିନୀ ଶକ୍ତିଶାଳୀ ଥିବା ବଡ଼ ବଡ଼ ସହର ଉପରେ ଆକ୍ରମଣ ନକରି ଗ୍ରାମାଞ୍ଚଳଗୁଡ଼ିକ ଦେଇ ଆଗକୁ ମାଡ଼ିଚାଲିଲେ ଏବଂ ତାଙ୍କ ସହିତ ଚାଲିଲେ ମୁକ୍ତିବାହିନୀର ଏକ ଲକ୍ଷ ସୈନିକ ।

ଡ଼ିସେମ୍ବର ୬ ସଂଧ୍ୟା ସୁଦ୍ଧା ଜଣାପଡ଼ିଗଲା ଯେ ଭାରତୀୟମାନଙ୍କ ଅଗ୍ରଗତିକୁ ରୋକିବା ଅସମ୍ଭବ ଏବଂ ଢ଼ାକାକୁ ରାସ୍ତା ପୂରାପୂରି ଖୋଲା । ଇନ୍ଦିରା ଗାନ୍ଧି ସେଇଦିନ ହିଁ ପାର୍ଲିଆମେଣ୍ଟରେ ବିପୁଳ କରତାଳି ଏବଂ ସମର୍ଥନ ଭିତରେ ବାଂଲାଦେଶକୁ ଭାରତ ଏକ ସର୍ବଭୌମ ରାଷ୍ଟ୍ରଭାବେ

ସ୍ୱୀକୃତି ଦେଲା ବୋଲି ଘୋଷଣା କଲେ । ପ୍ରତିକ୍ରିୟାରେ ପାକିସ୍ତାନ ତତ୍କ୍ଷଣାତ୍ ଭାରତ ସହିତ ସମସ୍ତପ୍ରକାର କୂଟନୈତିକ ସମ୍ପର୍କ ଛିନ୍ନ କଲା, ଯାହାକି ପୁନଃସ୍ଥାପିତ ହୋଇଥିଲା, ଏହାର ପାଞ୍ଚବର୍ଷ ପରେ ଅର୍ଥାତ୍ ୧୯୭୬ରେ ।

ଡ଼ିସେମ୍ବର ୧୨ବେଳକୁ ବାଂଲାଦେଶରେ ଥିବା ପାକିସ୍ତାନୀ ସୈନ୍ୟ ବାହିନୀର କମାଣ୍ଡରମାନେ ଆତ୍ମସମର୍ପଣ କରିବାକୁ ପ୍ରସ୍ତୁତ ହୋଇଯାଇଥିଲେ । ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ବାଂଲାଦେଶ ବ୍ୟାପାରରେ ଆମେରିକା ତାର 'ମାଷ୍ଟର କାର୍ଡ଼୍'ଟି ଖେଳିଲା । ନିକ୍ସନ୍‌ଙ୍କ ଆଦେଶାନୁସାରେ "ଏନ୍‌ଟେରପ୍ରାଇଜ୍" ନାମକ ଗୋଟିଏ "ଆଣବିକ ଏୟାରକ୍ରାଫ୍ଟ୍ କ୍ୟାରିଅର୍"ର ନେତୃତ୍ୱରେ ଆମେରିକା ତାର ସପ୍ତମ ନୌବେଡ଼ାକୁ ବଙ୍ଗୋପସାଗରକୁ ପଠାଇଲା । ଭାରତ ମଧ୍ୟ ଏହି ଆହ୍ୱାନକୁ ଗ୍ରହଣ କଲା । ଇନ୍ଦିରା ଏବଂ ତାଙ୍କ ଉପଦେଷ୍ଟାମାନେ ସମସ୍ତେ ଏକମତ ଥିଲେ ଯେ ଏହା ହେଉଛି ଆମେରିକାର 'ଅଧିକ ଭୁକା ଏବଂ କମ୍ କାମୁଡ଼ା ।'

ସେ ଯାହାହେଉ ସପ୍ତମ ନୌବେଡ଼ା ବାଂଲାଦେଶ ସନ୍ନିକଟ ହେବାର ପୂର୍ବରୁ, ଡ଼ିସେମ୍ବର ୧୬ ଅପରାହ୍ଣରେ, ପାକିସ୍ତାନୀ ଜେନେରାଲ୍‌ଙ୍କ ଏ ଏ କେ ନିଆଜିଙ୍କ ନେତୃତ୍ୱରେ ୯୩,୦୦୦ ସାମରିକ ଅଧିକାରୀ ଏବଂ ସୈନିକ ଲେଫ୍‌ଟନାଣ୍ଟ୍ ଜେନେରାଲ ଜଗଜିତ୍ ସିଂ ଅରୋରାଙ୍କ ସମକ୍ଷରେ ନିଃସର୍ତ୍ତରେ ଆତ୍ମସମର୍ପଣ କରିଦେଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଏତେ ଅଧିକ ସଂଖ୍ୟାରେ ସୈନିକଙ୍କ ଆତ୍ମସମର୍ପଣର ଘଟନା ଆଉ କେଉଁଠାରେ ଦେଖା ଯାଇନଥିଲା ।

ସେଇ ଅପରାହ୍ଣରେ ଇନ୍ଦିରା "ଏକ ନିସ୍ତବ୍ଧ ଦ୍ୱୀପ" ଭଳି ପ୍ରତୀୟମାନ ହେଉଥିବା ତାଙ୍କ ପାର୍ଲିଆମେଣ୍ଟସ୍ଥିତ ଅଫିସରେ ବସିଥିଲେ । ଜେନେରାଲ ମାନେକ୍‌ସାଙ୍କ ଠାରୁ କିଛି ବାର୍ତ୍ତା ପାଇଁ ସେ ଅପେକ୍ଷା କରି ରହିଥିଲେ । ହେଲେ, ବାର୍ତ୍ତା ଆସିବାରେ ବିଳମ୍ବ ଘଟୁଥିଲା । ଇନ୍ଦିରାଙ୍କ ମୁହଁରେ କୌଣସି ଉତ୍ସୁକତା ବା ଆବେଗର ଚିହ୍ନ ନଥିଲା ଏବଂ ତାଙ୍କ ସାକ୍ଷାତକାର ପାଇଁ କିଛି ଦିନ ଆଗରୁ ଅନୁମତି ନେଇଥିବା ଏକ ସ୍ୱିଡ଼ିସ୍ ଟେଲିଭିଜନ ଦଳକୁ ଭିତରକୁ ଡ଼କାଇଲେ । ସାଢ଼େ ଚାରିଟା ବାଜିବାର ମାତ୍ର ଅଳ୍ପ କିଛି ସମୟପରେ ଜେନେରାଲ ମାନେକ୍‌ସା ଡ଼ାକିଲେ । ଏହି କଥୋପକଥନ ଜମାରୁ ପାଞ୍ଚ ସେକେଣ୍ଡ ପାଇଁ ଚାଲିଲା ଏବଂ ଇନ୍ଦିରା ଗାନ୍ଧି କେବଳ ଗୋଟିଏ ଶବ୍ଦ କହିଥିଲେ ଓକେ ବା ଆଚ୍ଛା । ଏହାପରେ ସେଇ ଟେଲିଭିଜନ ଦଳକୁ ଟିକିଏ ଅପେକ୍ଷା କରିବାକୁ କହି ଇନ୍ଦିରା ଗାନ୍ଧି ପାର୍ଲିଆମେଣ୍ଟ୍ ଭିତରକୁ ପ୍ରାୟ ଦୌଡ଼ିଯାଇ ଘୋଷଣା କଲେ ଯେ ପାକିସ୍ତାନୀ ସୈନିକମାନେ ନିଃସର୍ତ୍ତରେ ଆତ୍ମସମର୍ପଣ କରିଦେଇଛନ୍ତି ଏବଂ "ଏବେ ଢ଼ାକା ହେଉଛି ଏକ ସ୍ୱାଧୀନ ରାଷ୍ଟ୍ରର ରାଜଧାନୀ ।" ତାଙ୍କର ଅବଶିଷ୍ଟ ବକ୍ତବ୍ୟ ଗହଗହ କରତାଳି ଏବଂ ଉଲ୍ଲସିତ ଚିତ୍କାର ଭିତରେ ବୁଡ଼ିଗଲା ।

ତାପରେ ନିଜ କୋଠରିକୁ ଫେରିଆସି ସେ ଶାରଦାପ୍ରସାଦଙ୍କୁ କହିଲେ, "ଏବେ ଆମେ ତୁରନ୍ତ ପଶ୍ଚିମରେ ଯୁଦ୍ଧ ବିରତି ଘୋଷଣା କରିଦେବା ଉଚିତ । ଯଦି, ଆମେ ଆଜି ତାହା ନ କରୁଛେ, କାଲି ବି ତାହା କରିପାରିବା ନାହିଁ ।" ଶାରଦାପ୍ରସାଦଙ୍କ ଭାଷାରେ ଏଭଳି ଉଲ୍ଲାସର

ପରିଣାମ କ'ଣ ହୋଇପାରେ ସେ ନେଇ ଇନ୍ଦିରା ପୂରାପୂରି ସଚେତନ ଥିଲେ ।

ରାତି ଆଠଟାରେ ସେ ପଶ୍ଚିମରେ ଯୁଦ୍ଧ ବିରତି ଘୋଷଣା କଲେ । ତା ପୂର୍ବରୁ ସେ ନିଜର କ୍ୟାବିନେଟ୍ ସାଥୀ ଏବଂ ବିରୋଧୀଦଳର ନେତାମାନଙ୍କ ସହିତ ଏ ନେଇ ଆଲୋଚନା କଲେ । ସ୍ୱାଭାବିକ ଭାବେ ଅନେକ ପଶ୍ଚିମର "ଅସମ୍ପୂର୍ଣ କାମ"କୁ ପୂରା କରିବାର ପକ୍ଷରେ ଥିଲେ ଏବଂ ସେମାନଙ୍କୁ ଉତ୍ତର ଦେଇ ଇନ୍ଦିରା କହିଲେ ଯେ ପୂର୍ବ ପଟେ ବାଂଲାଦେଶର ଲୋକେ ଆମ ସହିତ ଥିଲେ । ହେଲେ, ପଶ୍ଚିମ ପାକିସ୍ତାନରେ ଲୋକେ ଏବଂ ସୈନ୍ୟବଳ ସେମାନଙ୍କ ଘର ପରିବାରକୁ ବଞ୍ଚାଇବା ପାଇଁ ଯୁଦ୍ଧ କରିବେ । ଆମେ ନିଜର ସୈନିକମାନଙ୍କୁ ଏଭଳି ଅଯଥା ଅସୁବିଧା ଭିତରକୁ ପଠାଇବା ଉଚିତ୍ ନୁହେଁ । ଏହାଛଡ଼ା ମାନେକ୍‌ସା ଏବଂ ଜଗ୍‌ଗି ଅରୋରା ମୋର ଏହି ଦୃଷ୍ଟିକୋଣ ସହିତ ସମ୍ପୂର୍ଣଭାବେ ଏକମତ ବୋଲି କହିଛନ୍ତି ।

ଏହି ପରିପ୍ରେକ୍ଷୀରେ କିସିଞ୍ଜରଙ୍କ ବକ୍ତବ୍ୟ ଯେ ଭାରତ ପଶ୍ଚିମ ପାକିସ୍ତାନକୁ ଧ୍ୱଂସ କରିଦେବାର ଉଦ୍ଦେଶ୍ୟ ରଖିଥିଲା ଏବଂ ଉଭୟ ଭାରତ ଏବଂ ସୋଭିଏତ୍ ରୁଷିଆ ଆମେରିକାର ଚେତାବନୀ ଯୋଗୁଁ ଅଟକିଲେ, ଥିଲା ନିତାନ୍ତ ହାସ୍ୟାସ୍ପଦ । ଯୁଦ୍ଧ କେମିତି ବନ୍ଦ ହେଲା ସେ ନେଇ କିସିଞ୍ଜରଙ୍କ ମନ୍ତବ୍ୟ ଗୋଟିଏ ଗୁଇନ୍ଦା ଗପ ସହ ତୁଳନୀୟ ବୋଲି ପି.ଏନ୍. ଧର ବର୍ଣ୍ଣନା କରିଥିଲେ ଏବଂ ଅନ୍ୟମାନେ ଏହାକୁ ଗୋଟିଏ 'ବିରାଟ ମିଛ' ବୋଲି ଆଖ୍ୟା ଦେଇଥିଲେ ।

ନିକ୍‌ସନ୍ - କିସିଞ୍ଜରଙ୍କ ଧାରଣା ତେଣିକି ଯାହା ହେଉଥାଉ ନା କାହିଁକି, ଭାରତରେ କିନ୍ତୁ ଜାରି ରହିଥିଲା ଉତ୍ସବ ଉଲ୍ଲାସର ସମୟ । ୧୯୭୧ ନିର୍ବାଚନ ସମୟରେ ଇନ୍ଦିରାଙ୍କ ପ୍ରତି ଥିବା ପ୍ରଶଂସା ଏବେ ଭକ୍ତିରେ ରୂପାନ୍ତରିତ ହୋଇସାରିଥିଲା । କିଛି ବର୍ଷ ପୂର୍ବର 'ମୂକ କଣ୍ଢେଇ' ଏବେ ପରିଣତ ହୋଇଯାଇଥିଲା ଅପରାଜିତା ଦୁର୍ଗାରେ ଏବଂ ତାଙ୍କୁ ଶକ୍ତିର ଏକ ଅବତାରଭାବେ ବର୍ଣ୍ଣନା କରାଯିବା ଆରମ୍ଭ ହୋଇଯାଇଥିଲା । ଏକ କୃତଜ୍ଞ ଦେଶ ପକ୍ଷରୁ ରାଷ୍ଟ୍ରପତି ତାଙ୍କୁ ଭାରତ ରତ୍ନ ଦ୍ୱାରା ସମ୍ମାନିତ କଲେ । ଲଣ୍ଡନର ଅର୍ଥନୀତିଜ୍ଞମାନେ ତାଙ୍କୁ ଆଖ୍ୟା ଦେଲେ "ଭାରତର ସାମ୍ରାଜ୍ଞୀ" । ଯେଉଁସବୁ ରାଜ୍ୟରେ ୧୯୭୨, ମାର୍ଚ୍ଚରେ ବିଧାନସଭା ନିର୍ବାଚନ ହେବାର ଥିଲା, ସେସବୁ ସ୍ଥାନରେ ତାଙ୍କ ଦଳ ନିରଙ୍କୁଶ ଭାବେ ଜିତିଲା, ଏପରିକି ମାଓବାଦୀମାନଙ୍କ ଗଡ଼ ପଶ୍ଚିମବଙ୍ଗରେ ବି । ସେ ଥିଲେ କ୍ଷମତା ଏବଂ ପ୍ରଭାର ଶୀର୍ଷରେ ।

## ସିମଲା ଚୁକ୍ତିନାମା

ଏଭଳି ଏକ ଉଲ୍ଲାସମୟ ପରିବେଶରେ ଇନ୍ଦିରା କିନ୍ତୁ ସଚେତନ ଥିଲେ ଯେ ଯୁଦ୍ଧରେ ଜିତିବା ପରେ ସବୁଠାରୁ ବଡ଼ ଦାୟିତ୍ୱ ହେଉଛି ଶାନ୍ତି ହାସଲ କରିବା ଏବଂ ଖୁବ୍ ଶୀଘ୍ର ଶାନ୍ତି ହାସଲ କରିବା ଦିଗରେ ସେ ଥିଲେ ଦୃଢ଼ପ୍ରତିଜ୍ଞ । ବଳକା ପାକିସ୍ତାନର ପ୍ରଧାନମନ୍ତ୍ରୀଭାବେ ନିର୍ବାଚିତ ହୋଇ ଜୁଲ୍‌ଫିକର୍ ଅଲ୍ଲୀ ଭୁଟ୍ଟୋ ତାଙ୍କ ରାଷ୍ଟ୍ରର ବିଧ୍ୱସ୍ତ ନୈତିକ ବଳକୁ କୌଣସିମତେ ପୁନର୍ଜୀବିତ କରିବାର ପ୍ରୟାସରେ ଥିଲେ । ଏଇ ପରିପ୍ରେକ୍ଷୀରେ ତୈଳସମ୍ପଦରେ ଭରା ଖାଡ଼ି ଅଞ୍ଚଳର

ମୁସ୍‌ଲିମ୍ ଦେଶମାନଙ୍କ ସହିତ ବନ୍ଧୁତାପୂର୍ଣ୍ଣ ସମ୍ପର୍କରେ ଆବଦ୍ଧ ହେବା ଉପରେ ସେ ଗୁରୁତ୍ୱ ଦେଲେ । କିନ୍ତୁ ଯାହା ତାଙ୍କ କାର୍ଯ୍ୟକ୍ରମ ତାଲିକାର ସବୁଠାରୁ ଉପରେ ଥିଲା, ତାହା ହେଉଛି ପାକିସ୍ତାନ ଦୁଇଭାଗରେ ବିଭାଜିତ ହେଲାପରେ ଭାରତ ସହିତ ତାର ସମ୍ପର୍କ । ସେ ପର୍ଯ୍ୟନ୍ତ ଭାରତର କବଳରେ ଥିବା ୯୩,୦୦୦ ଯୁଦ୍ଧବନ୍ଦୀ ଏବଂ ୫୦୦୦ ବର୍ଗକିଲୋମିଟର ପରିମିତ ସ୍ଥାନକୁ ମୁକ୍ତ କରିବା ଥିଲା ପାକିସ୍ତାନୀ ଅସ୍ମିତା ଏବଂ ନେତୃତ୍ୱର ଆଗ ଧାଡ଼ିରେ ରହିବା ପାଇଁ ତାଙ୍କ ସାମର୍ଥ୍ୟର ସବୁଠାରୁ ବଡ଼ ପରୀକ୍ଷା । କିନ୍ତୁ, ସେ ଏଥି ନେଇ ବି ସଚେତନ ଥିଲେ ଯେ ଭାରତ ତାଙ୍କ ସ୍ଥିତିର ଫାଇଦା ନେଇ ନିହାତି ସ୍ପର୍ଶକାତର କାଶ୍ମୀର ପ୍ରସଙ୍ଗରେ ଏକ ସବୁଦିନିଆ ସମାଧାନ ପାଇଁ ଜିଦି କରିପାରେ ଏବଂ ଏହାକୁ ସମ୍ପୂର୍ଣ୍ଣଭାବେ ଭାରତ ପକ୍ଷରେ ଯିବାକୁ ଦେବା ବି ତାଙ୍କ ପକ୍ଷରେ ସମ୍ଭବ ହେବନାହିଁ । ତେଣୁ, ସେ ବିରଳ ଦମ୍ଭ ଏବଂ ଅବଶ୍ୟ କିଛିଟା ସଫଳତାର ସହ ଏକା ଏକା ଲୋକସମ୍ପର୍କ ଅଭିଯାନରେ ବାହାରିଲେ ଏବଂ ଏକ ବିଜିତ ପଡ଼ୋଶୀ ରାଷ୍ଟ୍ର ଉପରେ ଅନେକ କିଛି ଲଦିଦେବାର ବୋଝ ଯେ ପରବର୍ତ୍ତୀ କାଳରେ ବିପରୀତ ଫଳ ସୃଷ୍ଟି କରିପାରେ, ସେ ନେଇ ସେ ଭାରତରେ କିଞ୍ଚିତ ଜନମତ ସୃଷ୍ଟି କରିବାରେ କିଛିଟା ସଫଳ ହୋଇଥିଲେ । ଇତିମଧ୍ୟରେ ଇନ୍ଦିରା ଏବଂ ଭୁଟ୍ଟୋଙ୍କ ବିଶ୍ୱସ୍ତ ସହକାରୀ ଯଥାକ୍ରମେ ଡିପି ଧର ଏବଂ ଅଜିଜ୍ ଅହମ୍ମଦ୍, ଶୈଳନିବାସ ସିମଳାଠାରେ ଏକ ଶୀର୍ଷ ବୈଠକପାଇଁ ଭୂମି ପ୍ରସ୍ତୁତ କରିବାର ପ୍ରୟାସ କଲେ । ୧୯୭୨ ମସିହା ଜୁନ୍ ମାସର ଶେଷ ଆଡ଼କୁ ଏହା ଅନୁଷ୍ଠିତ ହେଲା । ସିମଳା ଶୀର୍ଷ ସମ୍ମିଳନୀରେ ଯୋଗଦେବା ପାଇଁ ଭୁଟ୍ଟୋ ଯେତେବେଳେ ବାହାରିଲେ ସେତିକିବେଳେ କିଛି ପାକିସ୍ତାନୀ ତାଙ୍କୁ ଟାପରା କରି କହିଥିଲେ ଯେ ଛଅ ବର୍ଷ ଆଗରୁ ଯେଉଁ ଲୋକ ଭାରତ ସହିତ "ସହସ୍ର ବର୍ଷର ଯୁଦ୍ଧ" କଥା କହିଥିଲା, ସେ ଲୋକ ଆଜି ଶାନ୍ତି ପାଇଁ ଦୌଡ଼ୁଛି ।

ସିମଳା ସନ୍ଧି ଥିଲା କଠିନ ଏବଂ ଜଟିଳ । ଜୁଲାଇ ୨ର ସନ୍ଧ୍ୟାବେଳକୁ ଏହା ଘୋଷଣା କରାଗଲା ଯେ ସିମଳା ଚୁକ୍ତିନାମା "ଭାଙ୍ଗିଗଲା ।" କିନ୍ତୁ ତାପରେ ଭୁଟ୍ଟୋ, ଇନ୍ଦିରାଙ୍କ ସହ କିଛି ଏକାନ୍ତ ଆଲୋଚନା ପାଇଁ ଅନୁମତି ଚାହିଁଲେ । ସେଇ କଥାବାର୍ତ୍ତା ଭିତରେ ସିମଳା ଚୁକ୍ତିନାମାକୁ ସ୍ପଷ୍ଟ କରାଗଲା । ତାପରେ ଅଧିକାରୀ ସ୍ତରରେ କିଛି ସୂକ୍ଷ୍ମ ଦିଗକୁ ସଜଡ଼ାଗଲା ଏବଂ ଜୁଲାଇ ୩ର ପ୍ରଥମ ଘଡ଼ିରେ ଏହି ଚୁକ୍ତିନାମାରେ ଦସ୍ତଖତ ହୋଇଗଲା ।

ସିମଳା ଚୁକ୍ତିନାମାର ନିର୍ଯ୍ୟାସ ହେଲା ଇନ୍ଦିରା ଗାନ୍ଧି ଏବଂ ଭୁଟ୍ଟୋଙ୍କ ଭିତରେ ହୋଇଥିବା ଏକ ବ୍ୟକ୍ତିଗତ ତଥା ମୌଖିକ ଚୁକ୍ତି ଯାହା ଅନୁସାରେ କି ଯେଉଁ ରେଖା କାଶ୍ମୀରର ଦୁଇ ତୃତୀୟାଂଶକୁ ଭାରତ ଏବଂ ବାକି ଏକ ତୃତୀୟାଂଶକୁ ପାକିସ୍ତାନ ସହ ରଖି ବିଭାଜନ କରିଛି, ତାହା କାଳକ୍ରମେ ଭାରତ - ପାକିସ୍ତାନ ଭିତରେ ସବୁଦିନିଆ ସୀମାରେଖା ଭାବେ ଗୃହୀତ ହେବ । ଏହି ଚୁକ୍ତିର ମୁଖ୍ୟ ଶବ୍ଦଟି ଥିଲା "କାଳ କ୍ରମେ ।" ଏହି ସର୍ତ୍ତକୁ ଲିଖିତ ସର୍ତ୍ତାବଳୀ ଭିତରେ ଅନ୍ତର୍ଭୁକ୍ତ ନକରିବା ପାଇଁ ଭୁଟ୍ଟୋ ଅନୁରୋଧ କରି ଇନ୍ଦିରାଙ୍କୁ କହିଥିଲେ : "ଆପଣ ମୋ

ଉପରେ ବିଶ୍ୱାସ ରଖନ୍ତୁ ।" ୧୯୪୭-୪୮ର କାଶ୍ମୀର ଯୁଦ୍ଧପରେ ଜାତିସଂଘ ଦ୍ୱାରା ନିର୍ଦ୍ଧାରିତ ଯୁଦ୍ଧ ବିରତି ସୀମାରେଖା ଏବଂ ୧୯୭୧ ଯୁଦ୍ଧରେ ଭାରତ କାଶ୍ମୀରର କିଛି ଅଂଶ ଦଖଲ କଲାପରେ ନୂତନ ସୀମାରେଖାକୁ ବିଚାରକରି ଏକ ଦ୍ୱିପାକ୍ଷିକ ନିୟନ୍ତ୍ରଣରେଖା ସୃଷ୍ଟି କରାଗଲା । "ଉଭୟପକ୍ଷ କାଶ୍ମୀରକୁ ନେଇ ଆପଣା ଆପଣା ମତ ପାର୍ଥକ୍ୟ ସତ୍ତ୍ୱେ" ଏହି ନିୟନ୍ତ୍ରଣ ରେଖାକୁ ସମ୍ମାନ ଦେବାପାଇଁ ଅଙ୍ଗୀକାରବଦ୍ଧ ହେଲେ ।

ପରେ କିନ୍ତୁ ଭୁଟ୍ଟୋ "ନିଜ ରଙ୍ଗ ବଦଳେଇବାରେ ପଟ୍ଟୁ" ଖ୍ୟାତି ମୁତାବକ ସିମଳା ରାଜିନାମାରୁ ଓହରିଯିବାର ସବୁ ଲକ୍ଷଣ ପ୍ରକାଶ କଲେ । ୧୯୯୫, ଏପ୍ରିଲ୍‌ରେ ପିଏନ୍ ଧର ଏକ ଦୁଇ ଅଧ୍ୟାୟ ବିଶିଷ୍ଟ ନିବନ୍ଧ ଟାଇମ୍‌ସ୍ ଅଫ୍ ଇଣ୍ଡିଆରେ ପ୍ରକାଶ କରି ଭୁଟ୍ଟୋଙ୍କ ଗୁପ୍ତ ରାଜିନାମା ପ୍ରସଙ୍ଗକୁ ସର୍ବ ସମକ୍ଷକୁ ଆଣିଲେ । ଏହାର ପ୍ରତିକ୍ରିୟା ସ୍ୱରୂପ ପାକିସ୍ତାନ ତରଫରୁ ଛୁଟିଲା ପ୍ରତିବାଦର ଝଡ଼ । ଜଣେ ଆଲୋଚକ ଏୟା ବି ଲେଖିଲେ, "ଧର ମହାଶୟ, ମନେକରନ୍ତୁ ବି ଆପଣ ଯାହା ଲେଖିଛନ୍ତି ସବୁ ସତ । କିନ୍ତୁ ଏହାଦ୍ୱାରା ଭୁଟ୍ଟୋ ଆପଣଙ୍କ ପ୍ରଧାନମନ୍ତ୍ରୀଙ୍କୁ ବୁଦ୍ଧୁ ବନେଇ ଦେଇନାହାନ୍ତି କି ?" ଏ ସମ୍ପର୍କରେ ଧର କହିଥିଲେ ଯେ ସେ ସମୟରେ କ୍ଷମତାରେ ଥିବା ଏକମାତ୍ର ପାକିସ୍ତାନୀ ଏହା ବିରୋଧରେ ପଦଟିଏ ସୁଦ୍ଧା କହିନଥିଲେ ଏବଂ ସେ ହେଉଛନ୍ତି ପାକିସ୍ତାନର ତତ୍କାଳୀନ ପ୍ରଧାନମନ୍ତ୍ରୀ ବେନଜୀର ଭୁଟ୍ଟୋ । ଜଣେ କିଶୋରୀ କନ୍ୟାଭାବେ ସେ ତାଙ୍କ ବାପାଙ୍କ ସହିତ ସିମଳାକୁ ଆସିଥିଲେ ଏବଂ ଏହି ସନ୍ଧିର ବିଭିନ୍ନ ମୋଡ଼ ବିଷୟରେ ତାଙ୍କୁ ଚୁମ୍ବକରେ ଅବଗତ କରିଦିଆଯାଉଥିଲା ।

ଏହି ଜିଦିଆ ଇନ୍ଦିରା ଯେ କାହିଁକି ଭୁଟ୍ଟୋଙ୍କ କଥାର ପରତେ ଗଲେ, ତାହା ଏକ ଅସମାହିତ ରହସ୍ୟ । କାରଣ, ସିମଳା ଯିବା ପୂର୍ବରୁ ଇନ୍ଦିରା 'ର' (RAW) ମୁଖ୍ୟ ତଥା ତାଙ୍କର ନିତାନ୍ତ ବିଶ୍ୱାସଭାଜନ ଆର୍.ଏନ୍.କାଓଙ୍କୁ କହିଥିଲେ, "ମୁଁ ଶୁଣିଛି ଯେ ଭୁଟ୍ଟୋଙ୍କ ସହିତ କରମର୍ଦ୍ଦନ କଲାପରେ ଜଣେ ନିଜ ଆଙ୍ଗୁଠି ଗଣିନେବା ଦରକାର ।" ଏ କ୍ଷେତ୍ରରେ ବୋଧହୁଏ 'ଭର୍ସାୟଲସ୍ ବ୍ୟାଧି' - କୌଣସି ବିଜିତ ରାଷ୍ଟ୍ରଉପରେ ଅଧିକ ନିଷ୍ଠୁର ହେବା ଉଚିତ୍ ନୁହେଁ - ତା' କାମ ଦେଖାଉଥିଲା ।

ସିମଳା ଚୁକ୍ତିନାମା ହେବାର ମାତ୍ର କିଛି ଦିନ ପରେ ଇନ୍ଦିରାଙ୍କ ବନ୍ଧୁମାନଙ୍କ ଭିତରେ ଥିବା ଧାରଣା ଯେ "ସେ କିଛି ଭୁଲ୍ କରିପାରିବେ ନାହିଁ"ର ଅନ୍ତ ହେବାକୁ ବସିଥିଲା । ଯେତେବେଳେ ଭାରତ ସପକ୍ଷରେ ସବୁ କିଛି ଥିଲା, ସେତିକିବେଳେ ପାକିସ୍ତାନର ଅଳ୍ପ କିଛିର ବିନିମୟରେ ଭାରତ ଅନେକ ବାଟ ରାଜି ହୋଇଯିବା ଘଟନାକୁ ସମସ୍ତେ ସମାଲୋଚନା କରିବା ଆରମ୍ଭ କରିଦେଇଥିଲେ । ଭୁଟ୍ଟୋଙ୍କ ସହିତ ତାଙ୍କ ଗୋପନ ବୁଝାମଣାର କଥା ଆଉ ଇନ୍ଦିରା କାହାକୁ ଖୋଲି କହିପାରୁନଥିଲେ । କିନ୍ତୁ, ଜୁଲାଇ ୩୧ରେ ପାର୍ଲିଆମେଣ୍ଟରେ ହୋଇଥିବା ଗୋଟିଏ ତିକ୍ତ ବିତର୍କରେ ସେ ଜବାବ ଦେଇଥିଲେ, "ମୁଁ କେବଳ ଏତିକି ଜାଣେ ଯେ ମୁଁ ଶାନ୍ତି ପାଇଁ ଛିଡ଼ା ହୋଇଛି ଏବଂ ଶାନ୍ତି ପାଇଁ ହିଁ କାମ କରିବି । କିନ୍ତୁ, ତାହା ଯଦି ସଫଳ ନହେଲା,

ସେଥିପାଇଁ ଆମେ ପ୍ରସ୍ତୁତ । ସମୟ ଆସିଛି ଏବେ ଏସିଆ ତାର ଭାଗ୍ୟକୁ ନେଇ ସଚେତନ ହେବା ଉଚିତ୍ ଏବଂ ଆମମାନଙ୍କ ଭିତରେ ପୁରୁଣା ରାଗ, ରୋଷ ଏବଂ ଅସୂୟା ଯାହା ଥାଉ ନା କାହିଁକି, ଆମେ ନିଜ ଭିତରେ କଳହ ବନ୍ଦକରିବା ଆବଶ୍ୟକ । ବର୍ତ୍ତମାନ ସମୟ ଆସିଛି, ଆମେ ଆମ ଅତୀତକୁ ପୋତିଦେବା ଆବଶ୍ୟକ ।”

ଇନ୍ଦିରାଙ୍କ ଏହି ବକ୍ତବ୍ୟ ପାଇଁ ସମର୍ଥନ ଥିଲା ପ୍ରଚୁର ଏବଂ ବ୍ୟକ୍ତିଗତଭାବେ ଇନ୍ଦିରାଙ୍କ ଲୋକପ୍ରିୟତା ମଧ ପୂର୍ବବତ୍ ଥିଲା ।

## — ୭ —



# ତଳକୁ ତଳକୁ

୧୯୭୨ର ଶେଷ ଭାଗ ଆଡ଼କୁ ଇନ୍ଦିରା ଗାନ୍ଧିଙ୍କ ରାଜନୈତିକ ଭାଗ୍ୟ ପତନମୁଖୀ ହେବା ଆରମ୍ଭ କରିଥିଲା । ଏହାର କାରଣ ଭିତରୁ ଅନେକ କିଛି ତାଙ୍କ ନିୟନ୍ତ୍ରଣରେ ନଥିଲା । କିଛି ଥିଲା ତାଙ୍କ କବ୍‌ଜାରେ, ମାତ୍ର ଦୁର୍ଭାଗ୍ୟବଶତଃ ସେ ସେ ନେଇ କିଛି କଲେନାହିଁ । ଏହା ମଧ୍ୟରୁ ନିଜ ନିୟନ୍ତ୍ରଣ ଭିତରେ ନ ଥିବା ଗୋଟିଏ କାରଣ କିଛିଟା ଏଇଭଳି ଥିଲା । ଧରନ୍ତୁ, ଜଣେ ଉପରକୁ ଉଠି ଉଠି ଶେଷରେ ହିମାଳୟର ଶିଖରରେ ପହଞ୍ଚିଗଲା । ତାପରେ ତା ପାଇଁ ଆଉ କୌଣସି ଶିଖର ଅଧିକାର କରିବାପାଇଁ ବାକି ନଥିବ । ତାପରେ ସବୁ ରାସ୍ତା କେବଳ ତଳକୁ । ଦୁଃଖପୂର୍ଣ୍ଣ ଭାବେ ଇନ୍ଦିରାଙ୍କ ତଳମୁହାଁ ଯାତ୍ରା ଖୁବ୍ ଶୀଘ୍ର ଆରମ୍ଭ ହୋଇଯାଇଥିଲା ।

ଆଉ ଥରେ ଅନାବୃଷ୍ଟି ହେବା ଥିଲା, ତାଙ୍କ ପାଇଁ ତଥା ଦେଶ ପାଇଁ ସବୁଠାରୁ ବଡ଼ ଧକ୍‌କା । ଇନ୍ଦ୍ରଦେବତା ନିଷ୍ଠୁର ହେବାପାଇଁ ଏହାଠାରୁ ଆଉ ଅଧିକ ଖରାପ ସମୟ ହୁଏତ ବାଛିପାରି ନଥାନ୍ତେ । ଶରଣାର୍ଥୀମାନଙ୍କୁ ଖାଦ୍ୟ ଯୋଗାଇ ଯୋଗାଇ ଦେଶର ଭର୍ତ୍ତି ଶସ୍ୟଭଣ୍ଡାର ନିଃଶେଷପ୍ରାୟ ହୋଇଯାଇଥାଏ । ଯୁଦ୍ଧର ଖର୍ଚ୍ଚ ଯୋଗୁଁ ଆମର ବିଦେଶୀ ମୁଦ୍ରା ଭଣ୍ଡାର ଖାଲିହେବା ଉପରେ ଏବଂ ଭାରତର ଭାଗ୍ୟରେ ଥାଏ ଏକ ବଡ଼ ଧରଣର ନିଅଣ୍ଟିଆ ବଜେଟ୍ । ଭାରତ ସ୍ୱାଧୀନ ହେବା ପରଠାରୁ ବୋଧହୁଏ ସବୁଠାରୁ ଅଧିକ ଦରଦାମ୍ ବୃଦ୍ଧି ସେଇ ସମୟରେ ହୋଇଥାଏ ଏବଂ ବିଭିନ୍ନ ବସ୍ତୁର ଦର ଏକା ଥରକେ ଚବିଶ ପ୍ରତିଶତ ବଢ଼ିଯାଇଥାଏ । ଅର୍ଥନୈତିକ ଦୁରବସ୍ଥା ସାଧାରଣତଃ ରାଜନୈତିକ ସଂକଟର କାରଣ ହୁଏ ଏବଂ ଏ କ୍ଷେତ୍ରରେ ଭାରତର ରାଜନୀତିରେ ଥିବା ବିଦ୍ୱେଷ ଯାହା ବାଂଲାଦେଶ ଯୁଦ୍ଧରେ ବିଜୟ ପରଠାରୁ ସୁପ୍ତ ଅବସ୍ଥାରେ ଥିଲା, ହଠାତ୍ ଚେଇଁଉଠି ଅଧିକରୁ ଅଧିକ ଭୀଷଣ ହେବାରେ ଲାଗିଲା ।

ଗୋଟିଏ ବର୍ଷପରେ ଏହା ଏକ ଦାରୁଣ ବିପର୍ଯ୍ୟୟରେ ପରିଣତ ହେଲା, କାରଣ ୧୯୭୩ର ଆରବ - ଇସ୍ରାଏଲ୍ ଯୁଦ୍ଧ ପରବର୍ତ୍ତୀ କାଳରେ ତୈଳ ସଂକଟ ଘନୀଭୂତ ହେବାରେ ଲାଗିଥିଲା । ପେଟ୍ରୋଲ ଦର ଚାରିଗୁଣ ହୋଇଗଲା ଏବଂ ଭାରତର ସଂକଟ ଜର୍ଜରିତ ଅର୍ଥନୀତି ଏଥିରେ ବିଧ୍ୱସ୍ତ ହେବାକୁ ବସିଲା । ଏହି ପରିସ୍ଥିତି ଚାହିଁଲା କିଛି କଡ଼ା କାର୍ଯ୍ୟାନୁଷ୍ଠାନ ଏବଂ 'ଗରିବି ହଟାଓ' ସ୍ଲୋଗାନ୍ ଯାହା କିଛି ପ୍ରତିଶ୍ରୁତି ଦେଇଥିଲା, ସେସବୁ ଏ ଅବସ୍ଥାରେ ପୂରଣ

ହେବାର ସମ୍ଭାବନା ନଥିଲା । ସାହାଯ୍ୟ ପାଇଁ ଆନ୍ତର୍ଜାତିକ ମୁଦ୍ରା ପାଣ୍ଠି ବା ବିଶ୍ୱବ୍ୟାଙ୍କ୍ ବା ପଶ୍ଚିମ ରାଷ୍ଟ୍ରଗୁଡ଼ିକ ପାଖକୁ ଯିବାର ଅର୍ଥ ଥିଲା ନିହାତି ଖରାପ । ଭାରତର ନିୟନ୍ତ୍ରିତ ଆର୍ଥିକ ବ୍ୟବସ୍ଥା ଏବଂ ଲାଇସେନ୍ସ୍ ବ୍ୟବସ୍ଥାକୁ କୋହଳ କରିବାପାଇଁ ସେମାନେ ବାଢୁଥିବା ସର୍ତ୍ତକୁ ମାନିବାର ଅର୍ଥହେଲା ଆହୁରି ଖରାପ ଅବସ୍ଥାକୁ ଡ଼ାକିବା । ବର୍ତ୍ତମାନର ପ୍ରଧାନମନ୍ତ୍ରୀ ମନମୋହନ ସିଂ ସେଇ ସତୁରି ଦଶକରେ ଥିଲେ ଜଣେ ଉଚ୍ଚଦରର ଅର୍ଥନୈତିକ ପରାମର୍ଶଦାତା ଏବଂ ଏହି ସଙ୍କଟମୋଚନ ନିମନ୍ତେ ଉପାୟ ବାହାର କରିବାପାଇଁ ଯେଉଁ ବିଚକ୍ଷଣ ଦଳଟିଏ ଗଢ଼ାହେଲା, ତାର ନେତୃତ୍ୱ ସେ ନେଲେ । ୧୯୮୭ ମସିହାରେ ସେ ମୋତେ କହିଥିଲେ ଯେ ଇନ୍ଦିରାଙ୍କ ସାହସ ତାଙ୍କୁ ଚକିତ କରିଥିଲା । ଯେତେବେଳେ ତାଙ୍କୁ କୁହାଗଲା ଯେ ଏଭଳି କିଛି ପଦକ୍ଷେପ ନେବାକୁ ହେବ ଯାହା କି ତାଙ୍କ ପାର୍ଟି ଦ୍ୱାରା ପ୍ରଚାରିତ ଏବଂ ପ୍ରସାରିତ କାର୍ଯ୍ୟକ୍ରମର ବିପରୀତମୁଖୀ ହେବ ଏବଂ ଏହାଦ୍ୱାରା ସେ "ରାଜନୈତିକ ଭାବେ ହେବେ ଅପ୍ରିୟ", ସେତିକିବେଳେ ତାଙ୍କର ଏକମାତ୍ର ମନ୍ତବ୍ୟ ଥିଲା : ଯାହା କରାଯିବାର ଆବଶ୍ୟକତା ଅଛି, ତାହା ନିଶ୍ଚୟ କରାଯିବ । ତୁମେ ତୁମ କାମ କର, ମୁଁ ରାଜନୀତିର ଯତ୍ନ ନେଉଛି ।

ତାଙ୍କ କଥାକୁ ରକ୍ଷାକରି ସେ ସବୁ ଚାକିରିଧାରୀଙ୍କ ଦରମାରୁ ବାଧ୍ୟତାମୂଳକ ଡ଼ିପୋଜିଟ୍ ତଥା ସରକାରୀ ଖର୍ଚ୍ଚକାଟ ବ୍ୟବସ୍ଥା ଭଳି କିଛି ପଦକ୍ଷେପ ଗ୍ରହଣ କଲେ । ଏହାର ପରିଣାମ ସ୍ୱରୂପ ବେକାରୀ ବଢ଼ିଲା । ଏ ପ୍ରକାର ପରିସ୍ଥିତିରେ ଭାରସାମ୍ୟ ଆଣିବାପାଇଁ ଘରୋଇ କମ୍ପାନୀମାନେ ସେମାନଙ୍କ ଅଂଶୀଦାରମାନଙ୍କୁ ପ୍ରଦାନ କରୁଥିବା ଲାଭାଂଶରେ ମଧ୍ୟ ସେ କଟକଣା ଲଗାଇଲେ । ମାତ୍ର ଯେତେ ଯାହା କଲେ ବି ତାଙ୍କ ଅର୍ଥନୈତିକ ପଲିସି ବିରୋଧରେ ସାଧାରଣ ପ୍ରତିବାଦ ବନ୍ଦ ହେଲାନାହିଁ । ଘରୋଇ କମ୍ପାନୀର ଲାଭାଂଶ ପରିମାଣକୁ କାଟିଦେଲେ ବି ତାହା ଧନୀ ବ୍ୟବସାୟୀ ଗୋଷ୍ଠୀ ପାଇଁ ବେଶି ଫରକ ପଡ଼ିଲାନାହିଁ, କିନ୍ତୁ ଛୋଟ ଚାକିରିଆଙ୍କ ସ୍ୱଳ୍ପ ଦରମାରୁ କାଟିଦିଆଯିବା ଯୋଗୁଁ ସେମାନେ ଆର୍ଥିକ ବୋଝତଳେ ଦବିଗଲେ । ତାଙ୍କ ଦଳର ଅଂଶୀଦାର ବାମପନ୍ଥୀ ତଥା ଅନ୍ୟାନ୍ୟ ଦଳ ଅଭିଯୋଗ ଆଣିଲେ ଯେ ସେ ନିଜ "ଆଦର୍ଶ ଏବଂ ପ୍ରତିଶ୍ରୁତିରୁ ଓହରି ଯାଉଛନ୍ତି" । ଏହି ସମୟରେ ତାଙ୍କ ସଂଶୟାତ୍ମକ ଅବସ୍ଥାର ବିଶଦ ବର୍ଣ୍ଣନାକରିବ, ତାଙ୍କର ଗହମ ବ୍ୟବସାୟକୁ ଜାତୀୟକରଣ କରିବାର ଯୋଜନା ଏବଂ ଅସମ୍ଭାଳ ପରିସ୍ଥିତି ଯୋଗୁଁ ଖୁବ୍ ଶୀଘ୍ର ତହିଁରୁ ଓହରି ଆସିବାର ଘଟନା । ସେ ଗୋଟିଏ ଗୁଆକାଟି ଭିତରେ ପେଶି ହୋଇଗଲା ଭଳି ଥିଲେ ।

ଏଭଳି ବିମର୍ଷକର ପରିସ୍ଥିତିର ମୁକାବିଲା କରିବା ତାଙ୍କ ପାଇଁ ଅଧିକ ସହଜ ହୋଇଥାନ୍ତା ଯଦି ନୂତନ କଂଗ୍ରେସ ଭାବେ ପରିଚିତ ତାଙ୍କ ନିଜ ଦଳ କୌଣସିମତେ ପୁରୁଣା ଦଳଠାରୁ ଅଲଗା ହୋଇଥାନ୍ତା । କେବଳ ତାଙ୍କ ପ୍ରତି ସମ୍ପୂର୍ଣ୍ଣ ବଶମ୍ୱଦତାକୁ ଛାଡ଼ିଦେଲେ ଆଉ କୌଣସି ଗୁଣରେ ତାହା ପୁରୁଣା ଦଳଠାରୁ ଭିନ୍ନ ନଥିଲା । ଏହା ବ୍ୟତୀତ ତାଙ୍କ ସମର୍ଥକମାନେ କୌଣସିମତେ ନିଜ ଚିନ୍ତାଧାରା, କାର୍ଯ୍ୟପ୍ରଣାଳୀ, ଜୀବନଧାରା, କୁତୁରୁପିଆ ସ୍ୱଭାବ ଏବଂ ସର୍ବୋପରି ନିଜପାଇଁ

ଯେ କୌଣସିମତେ ଲାଭ ଆଣିବାର ପ୍ରବୃତ୍ତିରୁ ନିବୃତ୍ତ ହେଉନଥିଲେ । ସେମାନେ ବିଶ୍ୱାସ କରୁଥିଲେ ଯେ ପର୍ଯ୍ୟନ୍ତ ଚାପୁଲୁସି କରି ନିଜ "ମୁଖ୍ୟ ନେତାଙ୍କ" ପ୍ରିୟପାତ୍ର ହୋଇ ରହିପାରିଛ, ସେ ଯାଏଁ କେହି ତୁମକୁ କିଛି କହିପାରିବେ ନାହିଁ ।

ଯେ କୌଣସିମତେ ଦଳକୁ ନିଜ ନିୟନ୍ତ୍ରଣରେ ରଖିବାପାଇଁ ଇନ୍ଦିରାଙ୍କ ପ୍ରୟାସ ଏହି କଳୁଷିତ ପରିସ୍ଥିତିକୁ ଆହୁରି ଖରାପ କରିଦେଲା । ପ୍ରକୃତିଗତ ଭାବେ ନିଜକୁ ସମ୍ପୂର୍ଣ୍ଣ ସୁରକ୍ଷିତ ରଖିବାକୁ ନେଇ ସେ ଥିଲେ ପୂରାପୂରି ଆଚ୍ଛନ୍ନ । ୧୯୭୨ ନିର୍ବାଚନକୁ ବ୍ୟବହାର କରି ସେ ହଟାଇ ଦେଇଥିବା ଚାରି ମୁଖ୍ୟମନ୍ତ୍ରୀ - ମୋହନଲାଲ ସୁଖାଡ଼ିଆ (ରାଜସ୍ଥାନ), ବ୍ରାହ୍ମାନନ୍ଦ ରେଡ୍ଡି (ଆନ୍ଧ୍ର), ଏମ୍‌ଏମ୍ ଚୌଧୁରୀ (ଆସାମ) ଏବଂ ଏସ୍‌ସି ଶୁକ୍ଲା (ମଧ୍ୟପ୍ରଦେଶ) - ପ୍ରତ୍ୟେକଙ୍କର ନିଜ ନିଜ ସ୍ୱାଧୀନ କ୍ଷମତା ଭିତ୍ତି ଥିଲା । ସେମାନଙ୍କ ସ୍ଥାନରେ ସେ ଯେଉଁ ନିଜ ଦ୍ୱାରା ବଛା ଲୋକଙ୍କୁ ରଖିଥିଲେ, ସେମାନଙ୍କୁ ବାରମ୍ବାର ବଦଳାଉଥିଲେ । ଏଭଳି ସମୟରେ ଗୋଟିଏ ପ୍ରସିଦ୍ଧ ଘଟନାରେ ମଧ୍ୟପ୍ରଦେଶ ବିଧାନସଭାର ସମସ୍ତ ୨୮୦ଜଣ ସଦସ୍ୟଙ୍କୁ ଦିଲ୍ଲୀ ଆସି ତାଙ୍କ ସରକାରୀ ବାସଭବନର ଲନ୍‌ରେ ତାଙ୍କୁ ଭେଟିବାକୁ କୁହାଯାଇଥିଲା । ସେମାନେ ସର୍ବ ସମ୍ମତିକ୍ରମେ 'ସେମାନଙ୍କ ମୁଖ୍ୟମନ୍ତ୍ରୀ କଦାଚିତ୍ ଦେଇନଥିବା ଇସ୍ତଫାକୁ ଗ୍ରହଣ କରି ତାଙ୍କ ସ୍ଥାନରେ ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ବଛାଯାଇଥିବା କେନ୍ଦ୍ରମନ୍ତ୍ରୀ ପିସି ସେଠିଙ୍କୁ ମୁଖ୍ୟମନ୍ତ୍ରୀଭାବେ ଗ୍ରହଣ କଲେ । କିଛିଦିନ ପରେ ପୁଣି ସେଠିଙ୍କୁ ନୂଆଦିଲ୍ଲୀରୁ ଡ଼ାକରା ଆସିଲା ଏବଂ ପୁଣି ତାଙ୍କୁ ବାହାର କରାଯାଇ ତାଙ୍କ ସ୍ଥାନରେ ଏସ୍‌ସି ଶୁକ୍ଲାଙ୍କୁ ମୁଖ୍ୟମନ୍ତ୍ରୀଭାବେ ଆସୀନ କରାଗଲା ।

ଏଭଳି ପରିସ୍ଥିତିରେ, ଯେତେବେଳେ କ୍ଷମତାରେ କେତେ ଦିନ ରହିହେବ ଏ ନେଇ କାହାର କୌଣସି ସ୍ପଷ୍ଟଧାରଣା ନଥିଲା, ଭାରତ ପାଇଁ ଅନ୍ତହୀନ ସମସ୍ୟା ହୋଇପଡ଼ିଥିବା ଦୁର୍ନୀତି ତାର ନୂତନ ତଥା ଅତିକାୟ ଆକାର ହାସଲ କରିବାକୁ ଲାଗିଲା । "ପାର୍ଟି ନାମରେ ଚାନ୍ଦା ଆଦାୟ" ଥିଲା ଏଭଳି କାମର ଏକ ଆଙ୍ଗ । କାଳେ ବଡ଼ ବ୍ୟବସାୟୀମାନେ ସେମାନଙ୍କ ନିଜ ଦଳ, ସ୍ୱତନ୍ତ୍ର ପାର୍ଟି (କେଉଁକାଳୁ ଭାଙ୍ଗିଗଲାଣି)କୁ ବଡ଼ ପରିମାଣରେ ଚାନ୍ଦାଭେଦା ଦେବେ, ସେଇ ଭୟରେ ଲାଲବାହାଦୁର ଶାସ୍ତ୍ରୀଙ୍କ ସମୟରେ କଂଗ୍ରେସ ସରକାର ରାଜନୈତିକ ଦଳପାଇଁ ଚାନ୍ଦାଦେବା ବ୍ୟବସ୍ଥାକୁ ବନ୍ଦ କରିଥିଲେ । ଫଳସ୍ୱରୂପ, ରାଜନେତା ଏବଂ ତାଙ୍କୁ ଆର୍ଥିକଭାବେ ସାହାଯ୍ୟ କରୁଥିବା ବ୍ୟକ୍ତିର ସବୁ ଲେଣଦେଣ "କଳା ଟଙ୍କା"ରେ ହିଁ ହେଲା । ଯେଉଁମାନେ ଆତ୍ମସାତ୍ କରିବା କଳାରେ ଧୁରନ୍ଧର ଥିଲେ, ସେମାନଙ୍କ ପାଇଁ ଏହା ଥିଲା ଦୈବୀ ପ୍ରେରିତ । ପ୍ରଥମେ ସେମାନେ ଅଳ୍ପ କିଛି କିଛି ଟଙ୍କା ପକେଟସ୍ଥ କଲେ, କିନ୍ତୁ ପରେ ପରେ ସେମାନଙ୍କ ଭାଗ ବଢ଼ିଲା । ରାଷ୍ଟ୍ରରେ ଏଥିନେଇ କ୍ରୋଧର ବାତାବରଣ ସୃଷ୍ଟିହେଲା । ସେତେବେଳର ସମ୍ମାନାସ୍ପଦ ବିରୋଧୀଦଳ ନେତା ତଥା ପରବର୍ତ୍ତୀ ପ୍ରଧାନମନ୍ତ୍ରୀ ଅଟଳବିହାରୀ ବାଜପେୟୀ ଅଭିଯୋଗ କଲେ ଯେ ପ୍ରଧାନମନ୍ତ୍ରୀଙ୍କ ଚେଲାମାନେ ଅଜସ୍ର କଳାଟଙ୍କା ଉପାର୍ଜନ କରୁଛନ୍ତି । ଇନ୍ଦିରାଙ୍କ ଦଳର ମୁଖ୍ୟ ପାଣ୍ଠି ସଂଗ୍ରହକାରୀ ଲଳିତ ନାରାୟଣ ମିଶ୍ରଙ୍କୁ "ନଗଦ ନାରାୟଣ"

ବୋଲି ଡ଼କାହେଲା । ନେହେରୁଙ୍କ ସମୟରେ ସେ କେବେ ହେଲେବି ପାର୍ଟିର ପାଣ୍ଠିକୁ ସଂଗ୍ରହ କରିବା ବା ବାଣ୍ଟିବା ଆଦି କାମରେ ପଶୁ ନଥିଲେ । କିନ୍ତୁ, ଇନ୍ଦିରାଙ୍କ ନେତୃତ୍ୱ ଶୈଳୀର ଯୁକ୍ତି ଅନୁସାରେ ଟଙ୍କା ନୋଟ୍ ଭରା ସୁଟ୍‌କେଶ୍ ପ୍ରଧାନମନ୍ତ୍ରୀଙ୍କ ଘରକୁ ପଠାଯାଉଥିଲା ।

ସେଇ ସମୟରେ ଚାଲିଥିବା ଏଇ ବିକୃତିକୁ ହୁଏତ ସମସ୍ତେ ଭୁଲିଯାଇ ସାରଚ୍ଛେଣି, କିନ୍ତୁ କୁଖ୍ୟାତ ତୁଲମୋହନ ରାମ ସ୍କାଣ୍ଡାଲ୍‌କୁ ଭୁଲିବା କଷ୍ଟକର । ତୁଲମୋହନ ରାମ ଥିଲେ ଦଳର ଜଣେ ଅନାମଧେୟ ସଦସ୍ୟ । କିନ୍ତୁ ସେ ତାଙ୍କ କିଛି ବରିଷ୍ଠ ନେତା, ପ୍ରମୁଖଭାବେ ଲଳିତ ନାରାୟଣ ମିଶ୍ରଙ୍କ କହିବାନୁସାରେ ଗୋଟିଏ ସନ୍ଦେହାସ୍ପଦ ସଂସ୍ଥାଠାରୁ ଅନ୍ୟାୟୋଚିତ ଭାବେ କିଛି ସାହାଯ୍ୟ ଗ୍ରହଣ କରିଥିଲେ । କିନ୍ତୁ, ଇନ୍ଦିରା ଏବଂ ତାଙ୍କ ଦଳ ବିରୋଧରେ ଏଭଳି ଉତ୍ତେଜନା ପ୍ରକାଶ ପାଉଥିଲା ଯେ ତୁଲମୋହନ ରାମଙ୍କ ସ୍କାଣ୍ଡାଲ୍‌କୁ ନେଇ ଗୋଟିଏ ପୂରା ପାର୍ଲିଆମେଣ୍ଟ ଅଧିବେଶନ ବନ୍ଦ ହୋଇଗଲା । ସାଂସଦମାନେ ଗୃହର ମଧ୍ୟଭାଗକୁ ଯାଇ ହଟ୍ଟଗୋଳ କରିବା ବା ଧାରଣାରେ ବସିବାର ଯେଉଁ କଦର୍ଯ୍ୟ ଅଭ୍ୟାସ ଏବେ ଆମେ ବରାବର ଦେଖୁଛୁ, ଆରମ୍ଭ ହୋଇଥିଲା ସେଇ ଦିନଗୁଡ଼ିକରୁ । କିନ୍ତୁ, ସେଇ ସମୟରେ ପରିସ୍ଥିତିକୁ ସୁଧାରିବେ କ'ଣ, ଇନ୍ଦିରା ଏକ ବିବଦମାନ ମନ୍ତବ୍ୟ ଦେଇଥିଲେ ଯେ "ଦୁର୍ନୀତି ତ ବିଶ୍ୱବ୍ୟାପୀ ।" ଯେହେତୁ ସଂସଦରେ ଏବଂ ଅଧିକାଂଶ ରାଜ୍ୟ ବିଧାନସଭାମାନଙ୍କରେ ତାଙ୍କ ଦଳର ପୂର୍ଣ୍ଣ ସଂଖ୍ୟାଗରିଷ୍ଠତା ଥିଲା, ତେଣୁ ଚିଲ୍ଲେଇବା ବା ପାର୍ଲିଆମେଣ୍ଟକୁ ଅଚଳ କରିଦେବା ଅଥବା ରାସ୍ତାରେ ବିରୋଧ ପ୍ରଦର୍ଶନକରିବା ବ୍ୟତୀତ ସେମାନଙ୍କର ଆଉ ଗତ୍ୟନ୍ତର ନଥିଲା । ଅସନ୍ତୋଷ ଦିନକୁ ଦିନ ବଢୁଥିଲା, ଆର୍ଥିକସ୍ଥିତି ତଥାପି ବି ଦୁର୍ବଳ ଏବଂ ଧର୍ମଘଟ, ଘେରାଉ ଏବଂ ହିଂସା ସେ ସମୟର ଚିତ୍ର ବନିଯାଇଥିଲା । ଇନ୍ଦିରା ଯଦିଓ ହତାଶା ଜର୍ଜରିତ ଏବଂ ଅସନ୍ତୁଷ୍ଟ ଥିଲେ, କିନ୍ତୁ ତ୍ରସ୍ତ ହୋଇନଥିଲେ । ସେ ତାଙ୍କ ଦାୟିତ୍ୱ ପୂର୍ବପରି ଦକ୍ଷତାର ସହ ସଂପାଦନ କରିଚାଲିଥିଲେ । ସେଇ କଷ୍ଟପ୍ରଦ ସମୟରେ ତାଙ୍କର ଗୋଟିଏ ବଡ଼ ଉପଲବ୍ଧି ଥିଲା ଏୟା ଯେ ସେ ପରିବେଶକୁ ନେଇ ହୋଇଥିବା ଜାତିସଂଘ ପକ୍ଷରୁ ଆହୂତ ହୋଇଥିବା ଷ୍ଟକ୍‌ହୋମ୍ ସମ୍ମିଳନୀରେ ମୁଖ୍ୟବକ୍ତା ଭାବେ ଯୋଗ ଦେଇଥିଲେ ।

## ସବୁଜତମ ପ୍ରଧାନମନ୍ତ୍ରୀ

ସୁନ୍ଦରଭାବେ ଲେଖା ହୋଇଥିବା ତଥା ବିପୁଳ ପ୍ରଶଂସା ଲାଭ କରିଥିବା ତାଙ୍କ ଅଭିଭାଷଣରେ ଇନ୍ଦିରା ପ୍ରକୃତି ଏବଂ ପରିବେଶକୁ ନେଇ ତାଙ୍କ ମତାମତ ଉପସ୍ଥାପନ କରି କହିଥିଲେ ଯେ "ଏକକ ବିଶ୍ୱ ଗୁରୁତ୍ୱ" ଦାବି କରୁଥିବା ସମସ୍ୟା ଭିତରୁ ଏଇ ସମସ୍ୟା ଅନ୍ୟତମ । ସେ ଏ କଥା ପ୍ରକାଶ କରିବାକୁ କୁଣ୍ଠାବୋଧ କରିନଥିଲେ ଯେ ବିକଶିତ ରାଷ୍ଟ୍ରମାନେ ବାରମ୍ବାର ପରିବେଶଜନିତ ସମସ୍ୟା ଏବଂ କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟା ପ୍ରସଙ୍ଗ ଉଠାଇ ଏହି ଦରିଦ୍ର ରାଷ୍ଟ୍ରମାନଙ୍କର ବିକାଶ ପ୍ରକ୍ରିୟାରେ ବାଧା ସୃଷ୍ଟି କରିବାକୁ ଚେଷ୍ଟା କରୁଛନ୍ତି । ସେ କହିଥିଲେ ଯେ ମନେରଖିବା ଉଚିତ

ଯେ ପରିବେଶ ସଂରକ୍ଷଣ ହେଉଛି ଧନୀ ଏବଂ ଦରିଦ୍ର ଉଭୟଙ୍କ ପାଇଁ ଗୁରୁତ୍ୱପୂର୍ଣ୍ଣ । ସେ ସେଠାରେ ଉପସ୍ଥିତ ବିଭିନ୍ନ ଦେଶର ପ୍ରତିନିଧିମାନଙ୍କୁ ଉଦ୍‌ବୋଧନ ଦେଇ କହିଥିଲେ ଯେ ମାନବ ସମାଜ ନିଜ ପରିସ୍ଥିତିକୁ ହୃଦୟଙ୍ଗମ କରିଥିବା ଏବଂ ଏହି ପୃଥିବୀର ଅସ୍ଥାୟୀ ବାସିନ୍ଦାଭାବେ ନିଜକୁ ସୁରକ୍ଷିତ ରଖିବାକୁ ଚାହୁଁଥିବାର ଇଚ୍ଛାର ପ୍ରତୀକ ହେଉଛି ଏଇ ସମ୍ମିଳନୀ । ଏହି ଅଭିଭାଷଣକୁ ସେ ଅଥର୍ବ ବେଦର ଏକ ଶ୍ଳୋକରେ ସମାପ୍ତ କରିଥିଲେ । ସେଇ ଶ୍ଳୋକଟି ଥିଲା ପୃଥିବୀ ପାଇଁ ଏକ ମନ୍ତ୍ର ଯାହାର ଭାବାର୍ଥ ଥିଲା - ମୁଁ ଯାହା ତୁମଠାରେ ଖୋଳୁଛି, ତାହା ଶୀଘ୍ର ପୂରଣ ହୋଇଯାଉ / ମୁଁ ତୁମର ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ବା ହୃଦୟର କ୍ଷତି ନ ପହଞ୍ଚାଏ ।

ଏଇ କାରଣରୁ ୨୦୦୫, ଅଗଷ୍ଟ୩୦ରେ 'ଦ ହିନ୍ଦୁ' ଖବରକାଗଜ ପରିବେଶ ଉପରେ ଲେଖିଥିବା ଗୋଟିଏ ଭାବପୂର୍ଣ୍ଣ ସଂପାଦକୀୟରେ ଲେଖିଥିଲା ଯେ "ସବୁଜ ଏକ ବଡ଼ ଧରଣର ନିଅଣ୍ଟିଆ ବଜେଟ୍ ପ୍ରଧାନମନ୍ତ୍ରୀ"ମାନଙ୍କ ଜାତି ଅଧୁନା ଲୁପ୍ତପ୍ରାୟ ଏବଂ ତା ସହିତ ଆହୁରି ଲେଖିଥିଲା ଯେ "ତାଙ୍କର ଯାହା କିଛି ଦୋଷ ଦୁର୍ବଳତା ନଥାଉ ବା କାହିଁକି, ଭାରତର ପ୍ରଥମ ସବୁଜ ପ୍ରଧାନମନ୍ତ୍ରୀଭାବେ ତାଙ୍କର ଗୁଣାବଳୀକୁ ଗୁରୁତ୍ୱ ଦେବା ଉଚିତ୍ ।" "ଜଣେ ସଚ୍ଚା ପ୍ରକୃତି ପ୍ରେମୀ" ଭାବେ ସେ ଗଛ କାଟୁଥିବା କାଠ ମାଫିଆଙ୍କୁ ବିରୋଧ କରିଥିଲେ, ବନ୍ଧୁକ ଧରି ଶିକାରରେ ମାତିଥିବା ରାଜାପୁଅମାନଙ୍କୁ ଲଗାମ ଦେବାପାଇଁ ଶିକାରକୁ ନିଷେଧ କରିଥିଲେ, "ପ୍ରୋଜେକ୍ଟ ଟାଇଗର୍"ର ଗଠନ କରିଥିଲେ, ଭାରତୀୟ ବନ୍ୟପ୍ରାଣୀ ବୋର୍ଡ୍‌ରେ ନୂତନ ଜୀବନ ସଂଚାର କରିଥିଲେ ଏବଂ ପଶମର ବାଣିଜ୍ୟ ବନ୍ଦ କରିଥିଲେ । ଯେଉଁ ବଣଗୁଡ଼ିକ ବିପଦଗ୍ରସ୍ତ ହୋଇପଡ଼ିଥିଲା ସେଗୁଡ଼ିକୁ ଅଭୟାରଣ୍ୟ ବା ନ୍ୟାସନାଲ ପାର୍କ ଭାବେ ଘୋଷଣା କଲେ । ପରିବେଶକୁ ସଂରକ୍ଷଣ କରିବା ଦିଗରେ ତାଙ୍କର ଅତୁଳନୀୟ ଅବଦାନକୁ ବର୍ଣ୍ଣନା କରିସାରିବା ପରେ ସେଇ ଖବରକାଗଜ ତାଙ୍କୁ "ସବୁଜ ପ୍ରଧାନମନ୍ତ୍ରୀ" ଭାବେ ଅଭିହିତ କରିଥିଲା । ସେଇ ଖବରକାଗଜଟି ଦୁଃଖ ପ୍ରକାଶ କରିଥିଲା ଯେ ୧୯୯୧ ପରଠାରୁ କୌଣସି ପ୍ରଧାନମନ୍ତ୍ରୀ ନୀତିଗତ ଭାବେ ହେଉ ବା ବ୍ୟକ୍ତିଗତ ଆଗ୍ରହ ଯୋଗୁଁ ହେଉ ପରିବେଶ ସଂରକ୍ଷଣକୁ ଅଧିକ ଗୁରୁତ୍ୱ ଦେଇନାହାନ୍ତି । ସେମାନଙ୍କ ମଧ୍ୟରୁ କେତେକ ସ୍ପଷ୍ଟଭାବେ "ସବୁଜ ବିରୋଧୀ" ବୋଲି କହିଲେ ଭୁଲ୍ ହେବନାହିଁ । ସେଇ ଖବରକାଗଜ ଏ କଥା କହିନଥିଲା ଯେ ଇନ୍ଦିରା, ପ୍ରସିଦ୍ଧ ପକ୍ଷୀ ବିଶାରଦ ସଲିମ ଅଲ୍ଲୀଙ୍କ ସହ ନିୟମିତ ପତ୍ର ବିନିମୟ ଦ୍ୱାରା ସମ୍ପର୍କରେ ଥିଲେ । ଷ୍ଟକ୍‌ହୋମ୍‌କୁ ଯିବା ପୂର୍ବରୁ ସେ ଅଲ୍‌ଭିନ୍ ଟଫ୍‌ଲର୍‌ଙ୍କ ପୁସ୍ତକ "ଫ୍ୟୁଚର୍ ସକ୍"କୁ ଆମୂଳଚୂଳ ପଢ଼ିଥିଲେ । ଯେତେବେଳେ ଏ କଥା ପ୍ରଘଟ ହୋଇଗଲା, ଭାରତର ବହି ଦୋକାନମାନଙ୍କରେ ଯେତିକି ଟଫ୍‌ଲର୍‌ଙ୍କ ପୁସ୍ତକ ଥିଲା ସବୁଯାକ ସାଙ୍ଗେ ସାଙ୍ଗେ ବିକ୍ରି ହୋଇଗଲା ।

ସ୍ୱିଡ଼େନ୍‌ର ରାଜଧାନୀରେ ତାଙ୍କ ସମ୍ମାନାର୍ଥେ ଆୟୋଜିତ ଭୋଜି ସଭାରେ ଏକ କ୍ଷୁଦ୍ର ଅଭିଭାଷଣ ଦେବା ଅବସରରେ ସେ ଅତି ନମ୍ରତାର ସହିତ ଗନ୍ନାର ମିରଡ଼ାଲ୍‌ଙ୍କ ଉକ୍ତି ଯେ ଭାରତ ଗୋଟିଏ "ନରମ ରାଷ୍ଟ୍ର"କୁ କାଟିଦେଇଥିଲେ । ସେଇ ଭୋଜିରେ ଉପସ୍ଥିତ ଥିବା ଏବଂ

ଇନ୍ଦିରାଙ୍କ ଅର୍ଥନୈତିକ ଉପଦେଷ୍ଟା ଅଶୋକ ପାର୍ଥସାରଥୀଙ୍କ ସହିତ ଖାଉଥିବା ଗନ୍ନାର ମିର୍‌ଡ଼ାଲ୍‌ଙ୍କ ଆଡ଼କୁ ଚାହିଁ ସେ କହିଥିଲେ, "ଭାରତ ଯେଉଁଭଳି ଭାବେ ବାଂଲାଦେଶର ସମସ୍ୟାର ମୁକାବିଲା କଲା, ତାକୁ ବିଚାରକଲେ ଭାରତକୁ ଏକ "ନରମ ରାଷ୍ଟ୍ର" ବୋଲି କହିବା ଅନୁଚିତ୍ ।" କିନ୍ତୁ ଏ କଥା ଶୁଣି ମିର୍‌ଡାଲ୍ କୁଆଡ଼େ ପାର୍ଥସାରଥୀଙ୍କୁ କହିଥିଲେ ଯେ ପ୍ରଧାନମନ୍ତ୍ରୀଙ୍କ ଏଭଳି ମନ୍ତବ୍ୟ ସତ୍ତ୍ୱେ ସେ ତାଙ୍କ ମତରୁ ଓହରୁ ନାହାନ୍ତି । ପରେ ଯେତେବେଳେ ପାର୍ଥସାରଥୀ ଏ କଥା ଇନ୍ଦିରାଙ୍କୁ କହିଥିଲେ, ସେତିକିବେଳେ ଇନ୍ଦିରା ପ୍ରତ୍ୟୁତ୍ତରରେ କହିଥିଲେ, "ଆମକୁ ବିରୋଧ କରୁଥିବା ପାଶ୍ଚାତ୍ୟବାସୀମାନଙ୍କ ଭିତରୁ ଯେଉଁମାନେ ଆମର ବନ୍ଧୁ ସେମାନଙ୍କ ମାନସିକତାକୁ ଆମେ କେମିତି ବା ବଦଳାଇପାରିବା ?"

ଯେଉଁ ଭୀଷଣ ମରୁଡ଼ି ଏକକୋଟି ଅଣୀଲକ୍ଷ ଲୋକଙ୍କୁ କଲବଲ କରୁଥିଲା ତାହା ୧୯୭୩ରେ ଦ୍ୱିତୀୟ ବର୍ଷରେ ପଦାର୍ପଣ କଲା ଏବଂ ଅପେକ୍ଷାକୃତଭାବେ କମ୍ ଆକାରରେ ୧୯୭୪ ଏବଂ ୧୯୭୫ରେ ମଧ୍ୟ ଲାଗିରହିଥିଲା । ଅନେକ ସ୍ଥାନରେ ଶୋଭାଯାତ୍ରା, ଧର୍ମଘଟ ଏବଂ ପୁଲିସ୍ ସହ ସଂଘର୍ଷଜନିତ ହିଂସାକାଣ୍ଡମାନ ଘଟୁଥିଲା । ମୁଁ ରହୁଥିବା ବମ୍ବେ ନଗରୀରେ ୧୯୭୨-୭୩ରେ ୧୨୦୦୦ ଧର୍ମଘଟ, ଧାରଣା ଏବଂ ତାଲାବନ୍ଦ ହୋଇଥିଲା । ଉତ୍ତରପ୍ରଦେଶରେ 'ପ୍ରୋଭିନ୍‌ସିଆଲ୍ ଆର୍ମଡ୍ କନଷ୍ଟେବୁଲ୍ରି' ବା ଆଞ୍ଚଳିକ ସଶସ୍ତ୍ର କନେଷ୍ଟବଳ ବାହିନୀରେ ବିଦ୍ରୋହ ଦେଖାଦେଲା । ଏ ପରିସ୍ଥିତିକୁ ସମ୍ଭାଳିବା ପାଇଁ ସାମରିକ ବାହିନୀକୁ ଡ଼ କାଗଲା । ତେର ଜଣ ସାମରିକ ଜୱାନ୍ ଏବଂ ୨୨ଜଣ ପିଏସି ଧର୍ମଘଟକାରୀଙ୍କ ମୃତ୍ୟୁ ଏବଂ ଶତାଧିକ ଆହତ ହେବାପରେ ଯାଇ ଘଟନା ନିୟନ୍ତ୍ରଣକୁ ଆସିଲା ।

## ବିଚାରବିଭାଗ ସହିତ ଟଣାଓଟରା

ଏହି ବିମର୍ଷକର ପରିବେଶରେ ବହୁଦିନରୁ ଆଶଙ୍କା କରାଯାଉଥିବା ଇନ୍ଦିରା ସରକାର ଏବଂ ଉଚ୍ଚତର ନ୍ୟାୟାଳୟ ଭିତରେ ଟଣାଓଟରା ପରିସ୍ଥିତି ଗୋଟିଏ ଚରମ ଅଧ୍ୟାୟରେ ଆସି ପହଞ୍ଚିଲା । ଆଗରୁ କୁହାଯାଇଛି ଯେ ୧୯୭୧ରେ ନାଗରିକମାନଙ୍କ ମୌଳିକ ଅଧିକାରକୁ ସଂକୋଚନ କରିବାର କ୍ଷମତା ପାର୍ଲିଆମେଣ୍ଟକୁ ପୁନଶ୍ଚ ପ୍ରଦାନ କରିବାପାଇଁ ସେ ସମ୍ବିଧାନରେ ସଂଶୋଧନ ଆଣିଥିଲେ ଏବଂ ବ୍ୟାଙ୍କ୍ ଜାତୀୟକରଣ ତଥା ରାଜକୁମାରମାନଙ୍କ 'ପ୍ରାଇଭି ପର୍ସ'କୁ ଉଚ୍ଛେଦ କରିବା ନେଇ ଆଇନଗତ ଜଟିଳତାକୁ ଭ୍ରୂକ୍ଷେପ କରିନଥିଲେ । ସଙ୍ଗେ ସଙ୍ଗେ ଏହା ବିରୋଧରେ ସୁପ୍ରିମ କୋର୍ଟ୍‌ରେ ମାମଲା ଦାୟର କରାଯାଇଥିଲା । ଏହି ପ୍ରସଙ୍ଗର ସମର୍ଥନ ଏବଂ ବିରୋଧରେ ସାଧାରଣରେ ଏଭଳି ଆବେଗ ପ୍ରକାଶ ପାଇଥିଲା ଯେ ତତ୍କାଳୀନ ମୁଖ୍ୟ ବିଚାରପତି ଏସ୍‌ଏମ୍ ସିକ୍ରି ସୁପ୍ରିମ କୋର୍ଟର ତେର ଜଣିଆ ବିଚାରପତିଙ୍କୁ ନେଇ ଗୋଟିଏ ଖଣ୍ଡପୀଠ ଗଠନ କରିଥିଲେ । ସେମାନେ ମଧ୍ୟ ସେମାନଙ୍କ ଭିତରେ ଏକା ଭାବରେ ବିଭାଜିତ ଥିଲେ ଏବଂ ୧୯୭୩ ଫେବ୍ରୁଆରିରେ ସେମାନେ ୭-୬ ବହୁମତରେ ସେମାନଙ୍କ ବିଚାର ଶୁଣାଇଲେ । ମତଭେଦର

ଏହି ମାର୍ଜିନ୍ ଏହାଠାରୁ ଆଉ ପତଳା ହୋଇପାରି ନଥାନ୍ତା । ଏହି ନିଷ୍ପତ୍ତିରେ କୁହାଗଲା ଯେ ସମ୍ବିଧାନର "ଅନିବାର୍ଯ୍ୟ ଗୁଣ"ଗୁଡ଼ିକୁ କୌଣସି ପ୍ରକାରେ ନଷ୍ଟ ନକରି ପାର୍ଲିଆମେଣ୍ଟ ସମ୍ବିଧାନର ସବୁକିଛି ପରିବର୍ତ୍ତନ କରିପାରିବେ ଏବଂ ଏ କ୍ଷେତ୍ରରେ କ'ଣ ଅନିବାର୍ଯ୍ୟ ବା କ'ଣ ଅନିବାର୍ଯ୍ୟ ନୁହେଁ, ତାର ନିଷ୍ପତ୍ତି ନେବାର ଅଧିକାର କେବଳ କୋର୍ଟ୍‌ର ରହିଲା ।

ଯଦିଓ ଏହାକୁ ଅଧିକାଂଶ ଲୋକ ଇନ୍ଦିରାଙ୍କ "ପରାଜୟ" ଭାବେ ଦେଖିଲେ, ଇନ୍ଦିରା କିନ୍ତୁ ଏହାକୁ ମାନିନେଲେ । ଇନ୍ଦିରାଙ୍କ ସମର୍ଥକମାନେ କହିଲେ ଯେ ନିର୍ବାଚନରେ ମୂଳପୋଛ ହୋଇଯାଇଥିବା ବିରୋଧୀଦଳ ଏବଂ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ବିଚାର ବିଭାଗକୁ "ହାତବାରିସୀ କରି ପାର୍ଲିଆମେଣ୍ଟ ଏବଂ ପ୍ରଧାନମନ୍ତ୍ରୀଙ୍କ ଉପରେ ଆକ୍ରମଣ" କରିଛନ୍ତି । ବିରୋଧୀ ଦଳ, ବିଚାର ବିଭାଗ ସହିତ ସଂଶ୍ଳିଷ୍ଟ ଅଧିକାଂଶ ଏବଂ ପ୍ରାୟ ସମସ୍ତ ଖବରକାଗଜ ଏହାକୁ ସ୍ୱାଗତ ଜଣାଇଲେ ଏବଂ ଏହାକୁ ଇନ୍ଦିରାଙ୍କ ସ୍ୱେଚ୍ଛାଚାରିତା ପାଇଁ ଏକ ଦରକାରୀ ବ୍ରେକ୍‌ଭାବେ ଅଭିହିତ କଲେ । ଉଭୟ ପକ୍ଷରୁ ଗରମାଗରମ ଭାଷଣବାଜି ଚାଲିଲା ଏବଂ ରାଷ୍ଟ୍ରର ପରିବେଶ ବେଶ୍ ଉଷ୍ମ ହୋଇଗଲା ।

ସିକ୍ରିଙ୍କ ଅବସର ଗ୍ରହଣର ମାତ୍ର ଗୋଟିଏ ଦିନ ପୂର୍ବରୁ ସୁପ୍ରିମ କୋର୍ଟ୍ ତାର ଯୁଗାନ୍ତକାରୀ ରାୟ ଶୁଣାଇଲା । ଯଦି ନେହେରୁଙ୍କ ସମୟରୁ ଚାଲିଆସିଥିବା ପ୍ରଥାକୁ ଅନୁସରଣ କରାଯାଇଥାନ୍ତା ତେବେ ମୁଖ୍ୟ ବିଚାରପତିଙ୍କ ଅବସରପରେ ସବୁଠାରୁ ବରିଷ୍ଠ ବିଚାରପତି ହିଁ ସେଇ ସ୍ଥାନରେ ଅବସ୍ଥାପିତ ହୋଇଥାନ୍ତେ,ଏ କ୍ଷେତ୍ରରେ ଜେଏମ୍ ସେଲାଟ୍ ସିକ୍ରିଙ୍କ ସ୍ଥାନ ନେଇଥାନ୍ତେ । କିନ୍ତୁ, ସରକାରଙ୍କ ବିରୋଧରେ ରାୟ ଦେଇଥିବା ବିଚାରପତିମାନଙ୍କ ଭିତରୁ ସେ ଥିଲେ ଅନ୍ୟତମ । ତେଣୁ ତିନିଜଣ ସିନିଅର୍ ବା ବରିଷ୍ଠତର ବିଚାରପତିଙ୍କୁ ଅତିକ୍ରମ କରି ଜଷ୍ଟିସ୍ ଏଏନ୍ ରାୟଙ୍କୁ ମୁଖ୍ୟ ବିଚାରପତି ଭାବେ ଇନ୍ଦିରା ବାଛିଲେ । ଯେଉଁ ଛଅଜଣ ବିଚାରପତି ସରକାରଙ୍କ ସପକ୍ଷରେ ରାୟ ଦେଇଥିଲେ ସେମାନଙ୍କ ମଧ୍ୟରେ ରାୟ ଥିଲେ ସବୁଠାରୁ ବରିଷ୍ଠ । ଏହି ଘୋଷଣା ଦେଶକୁ ଏକ ବଜ୍ର ଭଳି ଆଘାତ ଦେଲା । ଯେଉଁ ତିନିଜଣ ବିଚାରପତିଙ୍କୁ ନଜରଅନ୍ଦାଜ କରିଦିଆଯାଇଥିଲା, ସେମାନେ ଇସ୍ତଫା ଦେଇଦେଲେ । ଇନ୍ଦିରାଙ୍କ ବିରୋଧୀମାନେ ଚିତ୍କାର କଲେ ଯେ ବିଚାରବିଭାଗକୁ ଅକ୍ତିଆର କରିବାପାଇଁ ଇନ୍ଦିରା ସବୁ ସୁସ୍ଥ ପରମ୍ପରାକୁ ଭାଙ୍ଗିରୁଜି ପବନକୁ ଫିଙ୍ଗିଦେଲେ । ପ୍ରଖ୍ୟାତ ଓକିଲ ଏବଂ ପ୍ରାୟ ସବୁ ବଡ଼ ବଡ଼ ଖବରକାଗଜ ଯଦିଓ ତାଙ୍କ ପ୍ରତି ଆକ୍ରମଣାତ୍ମକ ଆଭିମୁଖ୍ୟ ନେଇନଥିଲେ ତଥାପି "ବିଚାର ବିଭାଗର ସ୍ୱାଧୀନତା ଧ୍ୱଂସ ପାଇଥିବା" ସଂଦର୍ଭକୁ ନେଇ ଦୁଃଖ ପ୍ରକାଶ କରିଥିଲେ ।

ବିଚାରବିଭାଗକୁ ନେଇ ଚାଲିଥିବା ପାଟିତୁଣ୍ଡ ହୋ ହଲ୍ଲା ଭିତରେ ଆହ୍ଲାବାଦର ଗୋଟିଏ ଛୋଟ କୋଠରି ଭିତରେ ଚାଲିଥିବା ଏକ ବିଚାର ପ୍ରତି କେହି ନଜର ଦେଇନଥିଲେ । ଘଟନାଟି ହେଉଛି ରାଜ ନାରାୟଣ ନାମକ ବିଦୂଷକ ସ୍ୱଭାବର ଜଣେ ସମାଜବାଦୀ ନେତା ୧୯୭୧ ନିର୍ବାଚନରେ ଇନ୍ଦିରାଙ୍କ ବିରୋଧରେ ପ୍ରତିଦ୍ୱନ୍ଦ୍ୱିତା କରି ବିଶାଳ ବ୍ୟବଧାନରେ ପରାଜିତ

ହୋଇଥିଲେ । ସେ ଇନ୍ଦିରାଙ୍କ ବିରୋଧରେ ଗୋଟିଏ ନିର୍ବାଚନ ମାମଲା ରୁଜୁ କରିଥିଲେ । ଆମ ଦେଶର ବିଚାର ବିଭାଗର ସ୍ୱଭାବ ସୁଲଭ ମନ୍ଥର ଗତିରେ ଏକ ମାମଲାର ଶୁଣାଣି ଚାଲିଥିଲା । ଏହାର ଶୁଣାଣି ଚାଲିଥିବାବେଳେ ଦୁଇଜଣ ବିଚାରପତି ଅବସର ନେଇଯାଇଥିଲେ । ତୃତୀୟ ବିଚାରପତି ଜଗମୋହନ ସିହ୍ନା ଖୁବ୍ ଆରାମରେ ଧୀରେ ଧୀରେ ସବୁ ସାକ୍ଷ୍ୟପ୍ରମାଣ ଗ୍ରହଣ କରୁଥିଲେ ।

## ଜୟପ୍ରକାଶ ଆନ୍ଦୋଳନର ନବ ନିର୍ମାଣ

ଯଦିଓ ୧ ୯ ୭ ୨ ଏବଂ ୧ ୯ ୭୩ର ପରିସ୍ଥିତି ଥିଲା ଗୋଳମାଳିଆ, ତଥାପି ୧ ୯ ୭ ୪ର ଆରମ୍ଭରେ ଯେଉଁ ଧରଣର ପରିସ୍ଥିତି ଆସି ଉପନୀତ ହେଲା, ତା ସମ୍ମୁଖରେ ଏ ଗୁଡ଼ିକ ନଗଣ୍ୟ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ବିଡ଼ମ୍ବନାର ବିଷୟ ହେଉଛି ଏଭଳି ଗୋଳମାଳିଆ ପରିସ୍ଥିତିର କାରଣ ଥିଲା ଇନ୍ଦିରାଙ୍କ ନିଜ ଦଳ, ବିଶେଷତଃ ଗୁଜରାଟ କଂଗ୍ରେସ ଦଳ, ଯାହା ଥିଲା ମୋରାରଜୀ ଦେଶାଇ ଏବଂ ପୁରୁଣା କଂଗ୍ରେସର ଗଡ଼ । ଅନ୍ୟସବୁ ପ୍ରଦେଶ ଭଳି ଏଠାରେ ମଧ ଇନ୍ଦିରା ମୁଖ୍ୟମନ୍ତ୍ରୀ ଭାବେ ଜଣେ ବିଶ୍ୱସ୍ତ ନେତା ଘନଶ୍ୟାମ ଓଝାଙ୍କୁ ମନୋନୀତ କରିଥିଲେ । ଓଝା ଥିଲେ ଜଣେ ସମ୍ମାନାସ୍ପଦ ଅଥଚ ପ୍ରଭାବହୀନ ବ୍ୟକ୍ତିତ୍ୱ । କିନ୍ତୁ ଯାହା ଦେଖାଯାଉଥିଲା ଗୁଜୁରାଟରେ ଇନ୍ଦିରାଙ୍କ କଥା ବେଶୀ ଚାଲୁନଥିଲା, ଯଦିଓ ତାଙ୍କ ବିରୋଧୀମାନେ ତାଙ୍କୁ ନିର୍ମମ ଏକଛତ୍ରବାଦୀ ଭାବେ ଚିତ୍ରଣ କରୁଥିଲାବେଳେ ସମସ୍ୱରରେ ତାଙ୍କ ସମର୍ଥକମାନେ ତାଙ୍କୁ "ନିର୍ବିବାଦୀୟ ନେତା" ଭାବେ ଗ୍ରହଣ କରୁଥିଲେ । ଏହି ସମୟରେ ଚିମନ ଭାଇ ପଟେଲ୍ ନାମକ ଜଣେ ଉଚ୍ଚାଭିଳାଷୀ ତଥା ଚତୁର ନେତା ଓଝାଙ୍କୁ ଗାଦିଚ୍ୟୁତ କରି ନିଜେ ମୁଖ୍ୟମନ୍ତ୍ରୀ ହେଲେ । ଇନ୍ଦିରା ଭୀଷଣଭାବେ କୁପିତ ହେଲେ ସିନା ଉତ୍ତରପ୍ରଦେଶ ଏବଂ ଓଡ଼ିଶାରେ ନିର୍ବାଚନ ହେବାକୁ ଥିବା ଦୃଷ୍ଟିରୁ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେନାହିଁ । ଚିମନଭାଇ ତାଙ୍କ ପ୍ରିୟ ହେବାପାଇଁ ସେ ସମୟ ପାଇଁ ଆବଶ୍ୟକ ମୋଟା ଅଙ୍କର ନିର୍ବାଚନ ପାଣ୍ଠି ଯୋଗାଡ଼ କରିବାର ପ୍ରତିଶ୍ରୁତି ଦେଲେ । ସେଇଥିପାଇଁ ସେ ଗୁଜରାଟର "ତେଲ - ସମ୍ରାଟ୍"ମାନଙ୍କୁ ଭେଟିଲେ । ସେମାନେ ମୋଟା ଅଙ୍କର ପଇସା ଦେବାକୁ ଖୁସିରେ ରାଜିହେଲେ କିନ୍ତୁ ପ୍ରତିବଦଳରେ ବାଦାମତେଲ ଦର ବଢ଼ାଇବାକୁ ଚାହିଁଲେ । ଏହି ବାଦାମତେଲ ଥିଲା ଗୁଜରାଟ ରୋଷେଇର ମୁଖ୍ୟ ଉପାଦାନ ।

ଯେତେବେଳେ ଅଭାବ ତୀବ୍ର ଏବଂ ସବୁ ଦ୍ରବ୍ୟର ଦରଦାମ ଆକାଶଛୁଆଁ, ସେଇ ସମୟରେ ଏଭଳି ଆଉ ଏକ ଦରବୃଦ୍ଧି ହେବା ପେଟ୍ରୋଲରେ ନିଆଁ ମାରିବା ଭଳି ହେଲା । ସାଧାରଣ ଜନତାଙ୍କ ଚାପା କ୍ରୋଧ ବିସ୍ଫୋରକ ରୂପନେଲା ଏବଂ ଛାତ୍ରମାନେ ଏହାର ନେତୃତ୍ୱ ନେବାପାଇଁ ରାସ୍ତାକୁ ଓହ୍ଲାଇ ଆସିଲେ । ଯଦିଓ ରାଜ୍ୟ ବିଧାନସଭାରେ କଂଗ୍ରେସର ଦୁଇ ତୃତୀୟାଂଶ ନିରଙ୍କୁଶ ସଂଖ୍ୟାଗରିଷ୍ଠତା ଥିଲା ତଥାପି ଲୋକ ଚାହିଁଲେ ଚିମନଭାଇ - ସେତେବେଳେ ସେ "ଚିମନ୍ ଚୋର" ବୋଲି ନୂଆ ଡ଼ାକ ନାମଟିଏ ପାଇଥିଲେ - ସରକାରକୁ ତୁରନ୍ତ ବରଖାସ୍ତ

କରାଯାଉ ଏବଂ ବିଧାନସଭାକୁ ଭାଙ୍ଗି ଦିଆଯାଉ । ଇତିମଧ୍ୟରେ, ଦୁର୍ନୀତି ବିରୋଧରେ ଆରମ୍ଭ ହୋଇଥିବା ଏହି ଆନ୍ଦୋଳନ "ନବ ନିର୍ମାଣ" (ପୁନରୁତ୍ଥାନ) ଆନ୍ଦୋଳନରେ ପରିଣତ ହୋଇଯାଇଥିଲା ।

ପଟେଲଙ୍କ ବିରୋଧରେ ସାଧାରଣରେ କ୍ରୋଧ - ସଙ୍ଗେ ସଙ୍ଗେ ତାଙ୍କୁ ବାହାର କର - ଏଭଳି ସ୍ତରରେ ପହଞ୍ଚିଥିଲା ଯେ ଗୋଟିଏ ପୂରା ସପ୍ତାହ ଗୁଜରାଟ ପୂରାପୂରି ଭାବେ ଅରାଜକ ଅବସ୍ଥାରେ ରହିଲା । ଅହମ୍ମଦାବାଦ ସମେତ ୧୦୫ଟି ଛୋଟ ଏବଂ ବଡ଼ ସହରରେ କର୍ଫ୍ୟୁ ଲାଗିଲା । ଏହି ଗଣ୍ଡଗୋଳର ଧୂଳି ବସିଆସିଲା ବେଳକୁ ୧୦୩ଜଣଙ୍କ ମୃତ୍ୟୁ ଘଟି ସାରିଥିଲା, ୩୦୦ ଆହତ ହୋଇଥିଲେ ଏବଂ ୮୦୦୦ ଗିରଫ ହୋଇସାରିଥିଲେ । ଉଦ୍ଧ୍ୟକ୍ତ ଜନତା ଧମକ ଦେଇ ବିଧାନସଭାର ସଭ୍ୟମାନଙ୍କୁ ଇସ୍ତଫା ଦେବାକୁ ବାଧ କରୁଥିବାରୁ ଇନ୍ଦିରା ଗାନ୍ଧି ଅନ୍ୟୋନପାୟ ହୋଇ ବିଧାନସଭାକୁ ଭାଙ୍ଗିଦେଇଥିଲେ ।

ଏଭଳି ଏକ ହତାଶାଜନକ ପରିବେଶର ପୃଷ୍ଠଭୂମିରେ ସମ୍ମାନାସ୍ପଦ ଗାନ୍ଧିବାଦୀ ନେତା ଜୟପ୍ରକାଶ ନାରାୟଣ ଇନ୍ଦିରା ଏବଂ ତାଙ୍କ ଶାସନ କରିବାର ଶୈଳୀର ବିରୋଧକରି ଏହି ଆନ୍ଦୋଳନକୁ ଡ଼େଇଁପଡ଼ିଲେ । ସେ ଥିଲେ ଜଣେ ଖ୍ୟାତନାମା ସ୍ୱାଧୀନତା ସଂଗ୍ରାମୀ ଏବଂ ୧୯୪୨ "ଭାରତ ଛାଡ଼" ଆନ୍ଦୋଳନରେ ବେଶ୍ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଥିଲେ । ଆଦ୍ୟ ପଚାଶ ଦଶକରେ ନେହେରୁ ତାଙ୍କୁ ଉପପ୍ରଧାନମନ୍ତ୍ରୀ ପଦବୀରେ ଆସୀନ ହେବାପାଇଁ ଆମନ୍ତ୍ରଣ କରିଥିଲେ, କିନ୍ତୁ ଜେପି ତାଙ୍କୁ ପ୍ରତ୍ୟାଖାନ କରିଥିଲେ ଏବଂ ପରେ ପରେ ସକ୍ରିୟ ରାଜନୀତିରୁ ମଧ୍ୟ ବିଦାୟ ନେଇଯାଇଥିଲେ ।

ପାରମ୍ପରିକ ଭାବେ ଆମ ଦେଶ ବୈରାଗ୍ୟର ବିଚାରକୁ ଉଚ୍ଚ ଆସନ ଦେଉଥିବାରୁ ଜେପି ଗୋଟିଏ ସନ୍ଥର ମର୍ଯ୍ୟାଦା ପାଇଥିଲେ । ଇନ୍ଦିରାଙ୍କ ପରି ଜେପିଙ୍କର ମଧ୍ୟ ଥିଲା ଆକର୍ଷଣୀୟ ବ୍ୟକ୍ତିତ୍ୱ । କିନ୍ତୁ, ବେଳେବେଳେ ସେ ଅତି ସରଳଭାବେ ଅନ୍ୟମାନଙ୍କ କଥାକୁ ବିଶ୍ୱାସ କରିଯାଉଥିଲେ । ଉଦାହରଣସ୍ୱରୂପ ପାକିସ୍ତାନୀ ସାମରିକ ଏକଛତ୍ରବାଦୀ ଶାସକ ଫିଲ୍ଡ଼୍ ମର୍ଶାଲ୍ ଜେନେରାଲ୍ ଆୟୁବ୍ ଖାନ୍‌ଙ୍କ ଦ୍ୱାରା ପାକିସ୍ତାନରେ 'ମୌଳିକ ଗଣତନ୍ତ୍ର' ପ୍ରତିଷ୍ଠା ହୋଇଛି ବୋଲି ଶୁଣି ତାଙ୍କୁ ସ୍ୱାଗତ କରିବା ସହ ତାର ଉଚ୍ଚ ପ୍ରଶଂସା କରିଥିଲେ । ସେଇଭଳି ଆଗରୁ କୁହାଯାଇଛି ଯେ ବାଂଲାଦେଶ ସଙ୍କଟ ସମୟରେ ସେ ପିଲାଳିଆ ଭାବେ ତତ୍‌କ୍ଷଣାତ୍ ସାମରିକ ହସ୍ତକ୍ଷେପର ଦାବି କରିଥିଲେ । ଗୁଜରାଟରେ ରାଷ୍ଟ୍ରପତି ଶାସନ ଜାରି କରିବାକୁ ଇନ୍ଦିରା ବାଧ ହେବାର ଦୁଇଦିନ ପରେ ଜେପି ଅହମ୍ମଦାବାଦରେ ପହଞ୍ଚି ଘୋଷଣା କଲେ ଯେ "ନବ ନିର୍ମାଣ"ର ଏଇ ସଫଳ ଢ଼ାଞ୍ଚା ଦ୍ୱାରା ଅନୁପ୍ରେରିତ ହୋଇ ସେ ଏଭଳି ପରିସ୍ଥିତି ଭାରତର ଅନ୍ୟାନ୍ୟ ରାଜ୍ୟରେ ମଧ୍ୟ ସୃଷ୍ଟି କରିବାର ପ୍ରୟାସ କରିବେ ଏବଂ ଏହାର ଆରମ୍ଭ କରିବେ ନିଜ ରାଜ୍ୟ ବିହାରରୁ ।

ସମୟ ଥିଲା ଯେତେବେଳେ ଇନ୍ଦିରା ଜେପିଙ୍କ ବ୍ୟକ୍ତିତ୍ୱକୁ ସମ୍ମାନ କରୁଥିଲେ, ତାଙ୍କ ମତାମତକୁ ନୁହେଁ । ସେ ଜେପିଙ୍କୁ "ଗୋଳମାଳର ପୋଥି ପଣ୍ଡିତ" ବୋଲି ଆଖ୍ୟା ଦେବାରେ

କାର୍ପଣ୍ୟ କଲେନାହିଁ ଏବଂ ତାଙ୍କ ପାଇଁ ରାଜନୀତି "ଅସମ୍ଭବର କଳା" ବୋଲି କହିଲେ । ଜେପି କିନ୍ତୁ ବୁଝିସାରିଥିଲେ ଯେ "ମସ୍କୋର ପ୍ରଭାବରେ ସମ୍ପୂର୍ଣ୍ଣଭାବେ ପ୍ରଭାବିତ" ହୋଇ ଇନ୍ଦିରା "କର୍ତ୍ତୃତ୍ୱବାଦୀ" ହୋଇଯାଇଛନ୍ତି ଏବଂ ଏହା "ଗଣତନ୍ତ୍ରର ମୂଲ୍ୟବୋଧକୁ ନଷ୍ଟ କରିଦେବାର ଯଥେଷ୍ଟ ଆଶଙ୍କା ରହିଛି ।" ୧୯୭୪ର ପ୍ରାରମ୍ଭ ବେଳକୁ ଜେପିଙ୍କ ନୈତିକ ଆଦର୍ଶର ପ୍ରଭାବ ଥିଲା ଉଚ୍ଚରେ ଏବଂ ଇନ୍ଦିରାଙ୍କ ପ୍ରଭାବ ଅବକ୍ଷୟିଷ୍ଣୁ ହୋଇଯାଇଥିଲା । ତେଣୁ ଇନ୍ଦିରାଙ୍କ ବିରୋଧରେ ଯେଉଁ ଜାତୀୟ ଆବେଗ ପୁଞ୍ଜିଭୂତ ହେଉଥିଲା ଏବେ ଜେପିଙ୍କ ନିକଟରେ ଠୁଳ ହେବାକୁ ଲାଗିଲା । ଏହାଛଡ଼ା ବିଭିନ୍ନ ସ୍ଥାନରେ ହେଉଥିବା ଦିଗହୀନ ଏବଂ ଅସଂଗଠିତ ବିରୋଧକୁ ଏକଜୁଟ ଏବଂ ଶକ୍ତିଶାଳୀ, ଯଦିଓ ଏକୀଭୂତ ନୁହେଁ, କରିବାରେ ଜେପି ବେଶ୍ ସମର୍ଥ ହେଲେ ।

ଗୁଜରାଟ ଭଳି ବିହାରରେ ମଧ୍ୟ ଜେପି ଆନ୍ଦୋଳନର ପ୍ରମୁଖ ଦାବି ଥିଲା ରାଜ୍ୟ ସରକାରର ବରଖାସ୍ତ ଏବଂ ବିଧାନସଭାର ଭଙ୍ଗ ଯଦିଓ ଏହି ଆନ୍ଦୋଳନର ଲକ୍ଷ୍ୟ ଥିଲା "ନବ ନିର୍ମାଣ" ଠାରୁ ମଧ୍ୟ ଆହୁରି ମହତ୍ତର । ସେ ଏହାକୁ କହିଲେ, "ସମ୍ପୂର୍ଣ୍ଣ କ୍ରାନ୍ତି" ମାତ୍ର ଏହି ଉପପାଦ୍ୟଟି କ'ଣ ତାକୁ ସମ୍ପୂର୍ଣ୍ଣଭାବେ ବୁଝାଇବାର ପ୍ରଯତ୍ନ କରିନଥିଲେ । ଏ ପ୍ରସଙ୍ଗରେ ସବୁଠାରୁ ଗର୍ହିତ କଥା ଥିଲା ଏ'ୟା ଯେ ମହାତ୍ମା ଗାନ୍ଧିଙ୍କ ଏହି ପଟ୍ଟଶିଷ୍ୟ ଏବଂ ଅହିଂସାର ଅନ୍ୟତମ ପୂଜାରୀ ଜେପି ଏହି ଆନ୍ଦୋଳନ ବେଳେ ହୋଇଥିବା ହିଂସାକାଣ୍ଡକୁ ସମର୍ଥନ କରୁଥିଲେ । ଅନେକ ବିଶିଷ୍ଟ ବ୍ୟକ୍ତି ଏବଂ ଖବରକାଗଜ ଜେପିଙ୍କ ଏହି ଆଚରଣର ସମ୍ଭାବ୍ୟ ବିପଦ ସମ୍ପର୍କରେ ଚେତେଇ ଦେଇଥିଲେ । ଟାଇମ୍ସ୍ ଅଫ୍ ଇଣ୍ଡିଆର ପ୍ରସିଦ୍ଧ ସମ୍ପାଦକ ଶ୍ୟାମ ଲାଲ ଗୋଟିଏ ପ୍ରବନ୍ଧରେ ଲେଖିଥିଲେ ଯେ ଜେପି ଏଭଳି "ଏକ ରାଜନୈତିକ ପରିବେଶ ସୃଷ୍ଟି କରୁଛନ୍ତି ଯାହା ଏକ ବିପ୍ଳବ ବଦଳରେ ସୃଷ୍ଟି କରିବ ଅରାଜକତା" । ସମ୍ମାନାସ୍ପଦ ଖବରକାଗଜ ଦ ହିନ୍ଦୁ ତାର ସମ୍ପାଦକୀୟରେ ଲେଖିଥିଲା ଯେ ମୁଖ୍ୟଧାରାର ରାଜନୀତି ଠାରୁ ଦୂରେଇ ରହି ଏବଂ ଏହାକୁ ଠିକଣା ବାଟରେ ପରିଚାଳନା କରାଇବାର ଦାୟିତ୍ୱକୁ "ଏଡ଼ାଇ ଯାଇଥିବା" ଜେପି "ବର୍ତ୍ତମାନ ଭୁଲ ଦରଜା ବାଟଦେଇ ଘରେ ପଶିବାକୁ ଚେଷ୍ଟା କରୁଛନ୍ତି ଏବଂ ସମସ୍ତଙ୍କ ଉପରେ ଏହାର ଛାତଟିକୁ ଗଳାଇଦେବାର ଚେଷ୍ଟାରେ ଅଛନ୍ତି" । କିନ୍ତୁ, ଏସବୁ ପରାମର୍ଶ ବା ସମାଲୋଚନାକୁ ଜେପି ଗ୍ରହଣ କରୁନଥିଲେ କି ରାଜନୈତିକ ଭାବେ ସକ୍ରିୟ ଏବଂ ସଦା ମୁଖର ମଧ୍ୟବିତ୍ତ ବର୍ଗ ଗ୍ରହଣ କରୁନଥିଲା । ଏସବୁ ସତ୍ତ୍ୱେ ଇନ୍ଦିରା ଏବଂ ତାଙ୍କ ପ୍ରତିନିଧିତ୍ୱରେ ପରିଚାଳିତ "ବ୍ୟାପକ ଦୁର୍ନୀତି" ଓ "ଗଣତନ୍ତ୍ରର ଅବକ୍ଷୟ" ପ୍ରତି ଜେପି ଆରମ୍ଭ କରିଥିବା "କ୍ରୁସେଡ୍" ସପକ୍ଷରେ ଜନ ସମର୍ଥନ ଦିନକୁ ଦିନ ବୃଦ୍ଧି ପାଉଥିଲା ।

ସେ ଯାହାହେଉ, ବିହାରରେ ଜେପିଙ୍କ ଆନ୍ଦୋଳନ ଗୁଜରାଟର ନବ ନିର୍ମାଣଠାରୁ ଦୁଇଟି ପ୍ରମୁଖ କାରଣ ଯୋଗୁଁ ଭିନ୍ନ ରୂପ ନେଉଥିଲା । ପ୍ରଥମଟି ଥିଲା ଏୟା ଯେ ଗୁଜରାଟରେ ଏହି ଆନ୍ଦୋଳନ ଥିଲା ସ୍ୱତଃସ୍ଫୂର୍ତ୍ତ ଏବଂ କୌଣସି ରାଜନୈତିକ ସମ୍ପର୍କ ନଥିବା ଛାତ୍ର ସମାଜ ଦ୍ୱାରା ଏହି ଆନ୍ଦୋଳନ ଗଢ଼ିଉଠିଥିଲା । ଅବଶ୍ୟ ପରେ ପରେ ରାଜନୈତିକ ଦଳଗୁଡ଼ିକ ଏହି

ବାଙ୍ଗାଦଳରେ ସାମିଲ ହୋଇଗଲେ । କିନ୍ତୁ, ବିହାରରେ ରାଜନୈତିକ ଦଳଗୁଡ଼ିକ ଇନ୍ଦିରାଙ୍କ ବିରୁଦ୍ଧରେ ଏକତ୍ର ହୋଇଗଲେ ଏବଂ ଇନ୍ଦିରା ଓ ତାଙ୍କ କଂଗ୍ରେସ ସଙ୍ଗେ ସଙ୍ଗେ ବିପରୀତ ଚାଲ ଚଲାଇବାକୁ ସଜିଲ ହୋଇଗଲା । ଏପରି କି ଏହିସବୁ ଦଳର କ୍ୟାଡର୍‌ମାନେ, ମୁଖ୍ୟତଃ ଭାରତୀୟ ଜନସଂଘ (ଭାରତୀୟ ଜନତା ପାର୍ଟିର ପ୍ରାରମ୍ଭିକ ରୂପ) ଏବଂ ଏହାର ମୂଳ ଦଳ ରାଷ୍ଟ୍ରୀୟ ସ୍ୱୟମ୍ ସେବକ ସଂଘ (ଆର୍‌ଏସ୍‌ଏସ୍) ଇନ୍ଦିରା ବିରୋଧୀ ଏଇ ଆନ୍ଦୋଳନରେ ହିଂସା ପୂରାଇବାକୁ ଲାଗିଲେ । ଏହା ପଛରେ ଥିବା କାରଣଟି ଥିଲା ଏୟା ଯେ ଗୁଜରାଟର ନବନିର୍ମାଣ ଆନ୍ଦୋଳନ ଯେତେବେଳେ ପୂରା ତୁଙ୍ଗରେ ଥିଲା ସେତିକିବେଳେ ହୋଇଥିବା ୟୁପି ଏବଂ ଓଡ଼ିଶା ବିଧାନସଭା ନିର୍ବାଚନରେ ବି ଇନ୍ଦିରାଙ୍କ କଂଗ୍ରେସ ଜୟଯୁକ୍ତ ହୋଇଥିଲା । ଏଥିରେ ବିରୋଧୀ ଦଳଗୁଡ଼ିକ ହତାଶ ହୋଇପଡ଼ିଥିଲେ ଏବଂ ସବୁବେଳେ କଳିଗୋଳରେ ଲିପ୍ତ ରହୁଥିବା ବତକ ଦଳ ଭଳି ଏହି ବିରୋଧୀ ଦଳଗୁଡ଼ିକ ସେମାନଙ୍କ କଳହ ଛାଡ଼ି ଜେପିଙ୍କ ଛତା ତଳେ ଏକାଠିହୋଇ ଇନ୍ଦିରାକୁ ବହିଷ୍କାର କରିବାର ଲକ୍ଷ୍ୟରେ ସଫଳ ହେବାର ଆଶା ପୋଷଣ କରୁଥିଲେ ।

ଦ୍ୱିତୀୟ କଥାଟି ହେଉଛି ବିହାରର ଗୋଳମାଳରେ ଇନ୍ଦିରା ବି ନିଜ ଗୋଡ଼ ପୂରାଇଲେ, ଯାହା କି ଗୁଜରାଟରେ ସେ କରିନଥିଲେ । ବିଧାନସଭାରେ ତାଙ୍କ ଦଳର ଅଭୂତପୂର୍ବ ସଂଖ୍ୟାଗରିଷ୍ଠତା ଥିଲା । ତେଣୁ ଗୁଜରାଟରେ ସେ ଯେଉଁ "ଭୁଲ" କରିଥିଲେ, ତାର ପୁନରାବୃତ୍ତି ବିହାରରେ କରିବାକୁ ସେ ଚାହୁଁନଥିଲେ । ବିଧାନସଭା ସଦସ୍ୟମାନଙ୍କୁ ଭୟ ପ୍ରଦର୍ଶନ ପୂର୍ବକ ଇସ୍ତଫା ଦେବାକୁ ବାଧ କରାଯାଉଥିବାର ପଦକ୍ଷେପକୁ ସେ ହେବାକୁ ଦେଇନଥିଲେ କାରଣ ଇସ୍ତଫା ଦେବାକୁ ଚାହୁଁଥିବା ସଦସ୍ୟ ବାଚସ୍ପତିଙ୍କୁ ଭେଟି ସ୍ୱତଃସ୍ଫୁର୍ତ୍ତ ଭାବେ ସେ ଇସ୍ତଫା ଦେବାକୁ ଚାହୁଁଛନ୍ତି ନା ନାହିଁ ସେ ସମ୍ପର୍କରେ ସ୍ପଷ୍ଟୀକରଣ ଦେବାପରେ ଯାଇ ତାଙ୍କ ଇସ୍ତଫା ଗ୍ରହଣ କରାଯିବାର ପ୍ରଥା ସେଠାରେ ଆରମ୍ଭ କରାଗଲା ।

କିନ୍ତୁ, ତାଙ୍କର ଏହି ଦୃଢ଼ତାକୁ ଗଭୀରଭାବେ ଆଘାତ ପହଞ୍ଚିଲା ତାଙ୍କ ସାନ ଏବଂ ପ୍ରିୟତମ ପୁଅ ସଂଜୟଙ୍କ ଠାରୁ, ଯେ କି ଭାରତର "ଜନସାଧାରଣଙ୍କ ପାଇଁ ମୋଟର କାର୍" ତିଆରି କରିବାର ପ୍ରକଳ୍ପ ଆରମ୍ଭକଲେ ଏବଂ ଯଦ୍ୱାରା କି ପ୍ରଧାନମନ୍ତ୍ରୀଙ୍କ ଦୁଆର ମୁହଁକୁ ଦୁର୍ନୀତି ଏବଂ ପ୍ରିୟାପୀତି ତୋଷଣର ଅଭିଯୋଗର ସୁଅ ଛୁଟିଲା ।

## ସଞ୍ଜୟ ଏବଂ ତାଙ୍କ ମାରୁତି

୧୯୬୯ ମସିହାରେ ଯେତେବେଳେ ଗୋଟିଏ ସମ୍ପୂର୍ଣ୍ଣଭାବେ ଭାରତୀୟ ଏବଂ ସାଧାରଣ ଲୋକଙ୍କ ବ୍ୟବହାର ପାଇଁ ଉଦ୍ଦିଷ୍ଟ ମାରୁତି ନାମକ ଏକ ଶସ୍ତା କାର୍ ତିଆରି କରିବାର ପ୍ରକଳ୍ପ କଥା ଚିନ୍ତା କରାଗଲା ସେତେବେଳକୁ ଏଥି ନିମନ୍ତେ ଡ଼ଜନେ ସରିକି ଆସିଥିବା ଆବେଦନ ପତ୍ର ଭିତରେ ତେଇଶ ବର୍ଷ ବୟସ୍କ ସଞ୍ଜୟଙ୍କ ଆବେଦନ ପତ୍ର ଥିଲା ଗୋଟିଏ । ଯଦିଓ କାର୍ ପ୍ରତି ତାଙ୍କର ଆସକ୍ତି ଥିଲା ସାଂଘାତିକ ଭାବେ ଅଧିକ ତଥାପି ଏହି ବିଶାଳ ପ୍ରକଳ୍ପକୁ ସାକାର କରିବାପାଇଁ

ତାଙ୍କ ଯୋଗ୍ୟତାକୁ ନେଇ ରହିଥିଲା ପ୍ରଶ୍ନବାଚୀ । ସେ ଡୁନ୍ ସ୍କୁଲରୁ ଅଧାରୁ ପାଠ ଛାଡ଼ିଥିଲେ । ତାଙ୍କୁ ଭଲ ଲାଗୁଥିବା ବିଦ୍ୟାରେ ପାରଦର୍ଶିତା ହାସଲ କରିବାକୁ ତାଙ୍କ ମା' ତାଙ୍କୁ ଇଂଲଣ୍ଡର ରୋଲ୍ସ୍ ରଏସ୍ କମ୍ପାନୀକୁ ପଠାଇଥିଲେ ମଧ୍ୟ ସେ ସେଠାରେ ବି ଅଧା ବିଦ୍ୟା ହାସଲ କରିଥିଲେ । କିନ୍ତୁ, ଏହା ସତ୍ତ୍ୱେ ବି ଭାରତର ହେନରି ଫୋର୍ଡ୍ ହେବାର ତାଙ୍କ ଅଭିଳାଷରେ ଭଟ୍ଟା ପଡ଼ି ନଥିଲା । ତେଣୁ ପଚାଶ ହଜାର କାର୍ ତିଆରି କରିବାର ପ୍ରକଳ୍ପ ପାଇଁ ଡ଼ଜନେ ଆବେଦନକୁ ଖାରଜକରି ଯେତେବେଳେ ସଞ୍ଜୟଙ୍କୁ ଲାଇସେନ୍ସ୍ ମିଳିଲା, ସେତିକିବେଳେ ସ୍ୱାଭାବିକ ଭାବେ ଅସନ୍ତୋଷ ସୃଷ୍ଟିହେଲା ।

ଏ ସଂକ୍ରାନ୍ତ ସମସ୍ତ ସମାଲୋଚନାକୁ ଇନ୍ଦିରା ଗାନ୍ଧି ସମ୍ପୂର୍ଣ୍ଣଭାବେ ନଜରଅନ୍ଦାଜ କରିଦେଲେ । ମାରୁତିକୁ ନେଇ ସମାଲୋଚନା ଆହୁରି ଜୋର୍‌ଦାର୍ ହେଲା, ଯେତେବେଳେ ହରିଆଣାର ମୁଖ୍ୟମନ୍ତ୍ରୀ ବଂଶୀଲାଲ ବଜାର ଦରଠାରୁ କମ୍ ମୂଲ୍ୟରେ ୨୯୦ ଏକର ପରିମିତ ଜାଗା ଅଧିଗ୍ରହଣ କଲେ ଏବଂ ସେ ପ୍ଲାନଟି ଏକ ସାମରିକ କାରଣରୁ ନିଷିଦ୍ଧାଞ୍ଚଳ ବୋଲି ଘୋଷିତ ହୋଇଥିବା ସତ୍ତ୍ୱେ ବି ଏଭଳି ପଦକ୍ଷେପ ନିଆଗଲା । ଏତେବେଳକୁ ଇନ୍ଦିରା ସଞ୍ଜୟଙ୍କ ପାଇଁ ଅନ୍ଧ ହୋଇଯାଇଥିଲେ । ସଞ୍ଜୟଙ୍କ ପ୍ରତି ହେଉଥିବା ଟିକିଏ ବି ସମାଲୋଚନାକୁ ଗ୍ରହଣ କରିବା ପରିସ୍ଥିତିରେ ସେ ନଥିଲେ । ଏପରି କି ଯେତେବେଳେ ଜଣାପଡ଼ିଲା ଯେ ଗୋଟିଏ ବି କାର୍ କାରଖାନାର "ଆସେମ୍ବ୍ଲିଲାଇନ୍"ରୁ ବାହାରିବା ପୂର୍ବରୁ ଭାରତର ବିଦେଶ ବାଣିଜ୍ୟ ମନ୍ତ୍ରୀ ତଥା ଦଳର ମୁଖ୍ୟ ପାଣ୍ଠି ଯୋଗାଡ଼କାରୀ ଏଲ୍‌ଏନ୍ ମିଶ୍ରଙ୍କ ସହ ମିଶି ସଞ୍ଜୟ କିଛି ବ୍ୟବସାୟୀମାନଙ୍କୁ ଫୁସୁଲାଇ ମାରୁତି କାରର ଡ଼ିଲରସିପ୍ ପାଇଁ ରାଜିକରାଇ ମୋଟା ଅର୍ଥ ଆଦାୟ କରିଛନ୍ତି, ସେତେବେଳେ ବି ଇନ୍ଦିରା ଚୁପ୍ ରହିଥିଲେ । ଇନ୍ଦିରା ଗାନ୍ଧିଙ୍କ ପରମ ବନ୍ଧୁ ତଥା ପରବର୍ତ୍ତୀ କାଳରେ ତାଙ୍କ ଜୀବନୀ ଲେଖକ ପୁପୁଲ ଜୟକର୍ ମଧ୍ୟ ଲେଖିଥିଲେ ଯେ ସଞ୍ଜୟ ଥିଲେ ଅପରିଣାମଦର୍ଶୀ ଏବଂ ଅନେକ ପରିମାଣର ଟଙ୍କାକୁ ସେ ବାଜେ ଖର୍ଚ୍ଚରେ ବ୍ୟୟ କରିଥିଲେ । ତାଙ୍କ ମା'ଙ୍କ ପାଇଁ ସଞ୍ଜୟଙ୍କ ଦ୍ୱାରା ସମସ୍ୟା ସୃଷ୍ଟିହେବାର ଏହା ଥିଲା ଆରମ୍ଭ ମାତ୍ର । କିନ୍ତୁ, ଜୟକର, ଅନ୍ୟମାନଙ୍କ ଠାରୁ ବେଶି ଭଲଭାବେ ଜାଣିଥିଲେ ଯେ ଏହି ଯୁବକଙ୍କ ସମ୍ପର୍କରେ ତାଙ୍କ ମା'ଙ୍କୁ ଗୋଟିଏ ବି ଅପ୍ରିୟ ଶବ୍ଦ କହିବା ଅର୍ଥ ହେଉଛି ବିପଦକୁ ଆମନ୍ତ୍ରଣ କରିବା । ପିଏନ୍ ହସ୍କରଙ୍କ ଭଳି ଜଣେ ପ୍ରଭାବଶାଳୀ ଏବଂ ସମ୍ମାନାସ୍ପଦ ଉପଦେଷ୍ଟା ଯେତେବେଳେ ପ୍ରକାଶ କରିଦେଲେ ଯେ ପ୍ରଧାନମନ୍ତ୍ରୀଙ୍କ ନିବାସରେ ରହି ସଞ୍ଜୟ ବ୍ୟାବସାୟିକ କାର୍ଯ୍ୟକଳାପରେ ଜଡ଼ିତ ହେବା ଉଚିତ ହେଉନାହିଁ, ସେତେବେଳେ ସେ ସଙ୍ଗେ ସଙ୍ଗେ ଇନ୍ଦିରାଙ୍କ ଶୁଭ ନଜରରୁ ତଳେ ପଡ଼ିଯାଇଥିଲେ ।

ଜଣେ "ପ୍ରଧାନମନ୍ତ୍ରୀ"ର ପୁଅ ହେଲା ବୋଲି ଜଣେ ଯୁବକ ଯାହା କରିବାକୁ ବଦ୍ଧପରିକର, ତାକୁ ସେଥିରୁ ନିବୃତ୍ତ କରିବା ଉଚିତ ହେଉନାହିଁ ବୋଲି ଇନ୍ଦିରା ବାରମ୍ବାର ସମାଲୋଚକମାନଙ୍କୁ ଜବାବ ଦେଉଥିଲେ । ଇନ୍ଦିରାଙ୍କ ମୃତ୍ୟୁର କିଛିଦିନ ପରେ ପୁପୁଲ ଜୟକର୍

କଥା ପ୍ରସଙ୍ଗରେ କହିଥିଲେ ଯେ ଥରେ ଇନ୍ଦିରା କଥା ଛଳରେ ଜଣେ "କୋସାକ୍" ଧର୍ମଯାଜକ ତଥା ଦୁଃସାହସୀ ଅଭିଯାତ୍ରୀ କନ୍‌ଷ୍ଟାଣ୍ଟାଇନ୍‌ଙ୍କ ଉଦାହରଣ ଦେଇ କହିଥିଲେ ଯେ ସେ ମୁମ୍ବାଇର ଗ୍ୟାରେଜ୍ ଘରେ ବିମାନଟିଏ ତିଆରି କରିବାରେ ସମର୍ଥ ହୋଇଥିଲେ ଏବଂ ତହିଁରେ ବୁଲିବାପାଇଁ ତାଙ୍କ ସାଙ୍ଗମାନଙ୍କୁ ଆମନ୍ତ୍ରଣ କରୁଥିଲେ । ଯଦି ସେ ବିମାନଟିଏ ତିଆରି କରିପାରିଥିଲେ, ସଞ୍ଜୟ କାର୍‌ଟିଏ ତିଆରି କରିପାରିବେନାହିଁ କାହିଁକି ?

## ରେଳ ଧର୍ମଘଟ

ବିହାର ବିଧାନସଭାକୁ ଭାଙ୍ଗିବା ଉଦ୍ୟମରେ ବିଫଳ ହେଲାପରେ ଜେପିଙ୍କ ନେତୃତ୍ୱରେ ବିକ୍ଷୋଭକ ତତ୍ତ୍ୱମାନେ ଏକାଠି ହୋଇ ହିଂସାତ୍ମକ ପନ୍ଥାର ଆଶ୍ରୟ ନେଲେ । ଏହାକୁ ପ୍ରତିରୋଧ କରିବାପାଇଁ ବିହାର ସଶସ୍ତ୍ର ପୁଲିସ୍ ବାହିନୀ ଏବଂ ଭାରତ ସରକାରଙ୍କ ଅର୍ଦ୍ଧସାମରିକ ବଳ ପାଲଟା ହିଂସାତ୍ମକ କାର୍ଯ୍ୟକଳାପର ଆଶ୍ରୟ ନେଲେ । ଏଭଳି ଏକ ଗଣ୍ଡଗୋଳ ସମୟରେ ଥରେ ଜେପି ପୁଲିସ୍ ଲାଠିମାଡ଼ର ଶିକାର ହେବାରୁ ଅଳ୍ପକେ ବର୍ତ୍ତିଯାଇଥିଲେ । କାରଣ, ତାଙ୍କ ସମର୍ଥକମାନେ ତାଙ୍କ ଚାରିପଟେ ଏକ ସୁରକ୍ଷା ବଳୟ ସୃଷ୍ଟିକରି ତାଙ୍କୁ ଲାଠିମାଡ଼ରେ ଆହତ ହେବାରୁ ବଞ୍ଚାଇ ଦେଇଥିଲେ । ଏହାପରେ ଏହି ଆନ୍ଦୋଳନର ନେତୃତ୍ୱ ନିଜର ଯୋଜନା ବଦଳାଇ ଉତ୍ପାଦନ ତଥା ସାଧାରଣ ଜୀବନଯାତ୍ରା ବ୍ୟାହତ କରିବାପାଇଁ ଗୋଟିକ ପରେ ଗୋଟିଏ ସ୍ଥାନରେ "ବନ୍ଦ"ର ଆହ୍ୱାନ ଦେବାକୁ ଲାଗିଲେ । ବିଶାଳ ଶୋଭାଯାତ୍ରାମାନ ବାହାର କରିବା ମଧ୍ୟ ଥିଲା ଏହି ଯୋଜନାର ଅଂଶ । ଥରେ ପାର୍ଲିଆମେଣ୍ଟକୁ ଘେରାଉ କରିବାର ଯୋଜନା କରି ଜେପିଙ୍କ ନେତୃତ୍ୱରେ ଏକ ବିରାଟ ଶୋଭାଯାତ୍ରା ପାର୍ଲିଆମେଣ୍ଟ ଭବନର ଫାଟକ ଯାଏ ଯାଇଥିଲା କିନ୍ତୁ ଶେଷରେ ଯାହାହେଉ ଘେରାଉ କରିବାର ଯୋଜନାରୁ ସେମାନେ ନିବୃତ୍ତ ରହିଥିଲେ ।

ସରକାରକୁ ବାରମ୍ବାର ଆକ୍ରମଣ କରି ଶକ୍ତିହୀନ କରିବାର ପ୍ରଚେଷ୍ଟାରେ ଥିବା ଏହି ଆନ୍ଦୋଳନର ମଝିରେ ହଠାତ୍ ଜଣେ ସମାଜବାଦୀ ଟ୍ରେଡ୍ ୟୁନିୟନ ନେତା ତଥା ଜଣେ ଜେସୁଇଟ୍ ଧର୍ମଯାଜକ ଜର୍ଜ ଫର୍ଣ୍ଣାଣ୍ଡିଜ୍ ବାହାରି ଆସି ଗୋଟିଏ ରାଷ୍ଟ୍ରବ୍ୟାପୀ ରେଳ ଧର୍ମଘଟ ସଂଗଠିତ କଲେ । ୧୯୭୪ ମସିହା ମେ ମାସରେ ସେ ଥିଲେ ନିହାତିଭାବେ ଦାୟିତ୍ୱଶୂନ୍ୟ ଏବଂ ତାଙ୍କ ଲକ୍ଷ୍ୟ ସମ୍ପର୍କରେ ଅସ୍ପଷ୍ଟ । ଏହାର ପଚିଶ ବର୍ଷପରେ ସେ ଯେତେବେଳେ ଭାରତର ପ୍ରତିରକ୍ଷା ବିଭାଗର ମନ୍ତ୍ରୀ ହେଲେ, ସେତେବେଳେ ବି ସେ ବିଭିନ୍ନ କାର୍ଯ୍ୟକଳାପରେ ତାଙ୍କ ଦାୟିତ୍ୱହୀନତାର ପରିଚୟ ଦେଇଥିଲେ । ତେବେ ରେଳ ଧର୍ମଘଟ ସମୟରେ ତାଙ୍କ ଯୁକ୍ତି ଥିଲା ଯେ ଏହି ଧର୍ମଘଟ ଫଳରେ ରେଳରେ କୋଇଲା ଯୋଗାଣ ବ୍ୟାହତ ହେବ, ଫଳରେ ଦେଶର ବିଦ୍ୟୁତ କେନ୍ଦ୍ରସବୁ ଅଚଳ ହୋଇଯିବ ଏବଂ ଏହା ସହିତ ଅଚଳ ହୋଇପଡ଼ିବ ଦେଶର କଳକାରଖାନା । ଏହାଛଡ଼ା ରେଳରେ ଖାଦ୍ୟପଦାର୍ଥ ପରିବହନ ହୋଇ ନପାରିଲେ ଲୋକେ "ଉପବାସରେ ରହିବେ" ଏବଂ ଇନ୍ଦିରାଙ୍କ ସରକାରର "ପତନ" ଆରମ୍ଭ ହେବ । ବ୍ରିଟିଶ

ଅମଳରେ ବି ଦେଖା ଯାଇନଥିବା କ୍ରୁରତାର ସହିତ ଇନ୍ଦିରା ଏହି ଧର୍ମଘଟକୁ ଦବେଇବାର କାର୍ଯ୍ୟାନୁଷ୍ଠାନ ଆରମ୍ଭକଲେ । କୋଡ଼ିଏ ହଜାର ପାଖାପାଖି ରେଳବାଇ କର୍ମଚାରୀଙ୍କୁ ଗିରଫ କରାଗଲା । ଯେଉଁ କର୍ମଚାରୀମାନେ କାମକୁ ଯିବାକୁ ମନାକଲେ ସେମାନଙ୍କ ପରିବାରକୁ ସରକାରୀ କ୍ୱାଟର୍ସ୍‌ରୁ ଉଚ୍ଛେଦ କରାଗଲା । ପନ୍ଦର ଦିନ ଭିତରେ ଧର୍ମଘଟ ଭାଙ୍ଗିଗଲା । ପରେ ଏମର୍ଜେନ୍‌ସି ସମୟରେ ଫର୍ଣ୍ଣାଣ୍ଡିଜ୍‌ଙ୍କୁ ବରୋଦା ଡ଼ିନାମାଇଟ୍ କେଶ୍‌ରେ ଗିରଫ କରାଗଲା ।

ରେଳବାଇ କର୍ମଚାରୀମାନଙ୍କୁ ଯେଉଁଭଳି ଭାବେ ଯାତନା ଦିଆଗଲା ସେଥିରେ ଅନେକ ଭାରତୀୟ ସ୍ତମ୍ଭୀଭୂତ ହୋଇଗଲେ । ସେମାନଙ୍କ ଭିତରେ ଥିଲେ ଭାରତର ରାଷ୍ଟ୍ରପତି ତଥା ପୂର୍ବତନ ଟ୍ରେଡ୍ ୟୁନିୟନ୍ ନେତା ଭିଭି ଗିରି । ଇନ୍ଦିରାଙ୍କ ଯୋଗୁଁ ସେ ରାଷ୍ଟ୍ରପତି ହୋଇଥିଲେ, କିନ୍ତୁ ଏ କ୍ଷେତ୍ରରେ ସେ ନିଜର ଅସନ୍ତୋଷ ପ୍ରକାଶ କରିଥିଲେ । ଇନ୍ଦିରା ଏହା ପ୍ରତି କର୍ଣ୍ଣପାତ କରିନଥିବା ଭଳି ଅଭିନୟ କଲେ । କିନ୍ତୁ, ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ଥିଲା ଏଇ ସମସ୍ତ ଘଟନାକ୍ରମ ପ୍ରତି ମଧ୍ୟବିତ୍ତ ବର୍ଗର ପ୍ରତିକ୍ରିୟା, ମୁମ୍ବାଇରେ ଯାହାର ପ୍ରତ୍ୟକ୍ଷଦର୍ଶୀ ଥିଲି ମୁଁ ଏବଂ ଦେଶର ଅନ୍ୟାନ୍ୟ ପ୍ରାନ୍ତରେ ବି ଏହା ଦେଖାଯାଇଥିଲା । ଯେଉଁମାନେ ଦିନ ପରେ ଦିନ ଇନ୍ଦିରାଙ୍କୁ "ଏକଛତ୍ରବାଦୀ" ବା "ଗଣତନ୍ତ୍ରର ଶତ୍ରୁ"ବୋଲି ଅପବାଦ ଦେଉଥିଲେ, ସେମାନେ ରାତାରାତି ବଦଳିଯାଇ ଇନ୍ଦିରା ଯେଉଁ ଦକ୍ଷତା ଏବଂ "ଦୃଢ଼ତାର" ସହ ରେଳ ଧର୍ମଘଟକୁ ଦମନ କଲେ ତାର ଭୁରି ଭୁରି ପ୍ରଶଂସା କରିବାକୁ ଲାଗିଲେ । ସେମାନଙ୍କ ଏଭଳି ଦ୍ୱିବିଧ ବ୍ୟବହାରକୁ ବୁଝିହେଉଥିଲା । ସେମାନେ ପୋଥି ବିଦ୍ୟାନୁସାରେ ୱେଷ୍ଟମିନିଷ୍ଟର୍ ଷ୍ଟାଣ୍ଡାର୍ଡ୍‌କୁ (ଗଣତନ୍ତ୍ରକୁ) ପାଳନ କରାଯାଉ ବୋଲି ଚାହୁଁଥିଲେ, କିନ୍ତୁ, ତା ସଙ୍ଗେ ସଙ୍ଗେ ବ୍ୟାବହାରିକ ଦୈନନ୍ଦିନ ଜୀବନରେ କୌଣସି ଅସୁବିଧା ସହିବାକୁ ପ୍ରସ୍ତୁତ ନଥିଲେ ।

## ଆଣବିକ କ୍ଲବ୍‌ରେ ସାମିଲ

ରେଳବାଇ ଧର୍ମଘଟ ସମୟରେ ଦେଶର ଘଟନାକ୍ରମ ହଠାତ ଗୋଟିଏ ଅସ୍ୱାଭାବିକ ତଥା ନାଟକୀୟ ମୋଡ଼ ନେଲା । ମେ ୧୮ ରେ ଏମିତି ଘଟନାଟିଏ ଘଟିଲା ଯାହାପରେ କି ଲୋକମାନେ ଜେପି ଆନ୍ଦୋଳନକୁ ଭୁଲିଯାଇ ଗଭୀର ଉତ୍ସାହର ସହିତ ଭାରତର ଏକ ବିରାଟ ଉପଲବ୍ଧିକୁ ସ୍ୱାଗତ କଲେ ଏବଂ ଇନ୍ଦିରାଙ୍କ ତୀବ୍ର ସମାଲୋଚକମାନେ ମଧ୍ୟ ତାଙ୍କୁ ପ୍ରଶଂସା ନକରି ରହିପାରିଲେ ନାହିଁ । ସାଧାରଣ ଜନତା ଉନ୍ମାଦନାରେ ଅଧୀର ହୋଇପଡ଼ିଲେ । ସେଇଦିନ ସକାଳେ ରାଜସ୍ଥାନ ମରୁଭୂମିର ପୋଖରାନ୍ ଠାରେ ମାଟି ତଳେ ଏକ ଆଣବିକ ବୋମାକୁ ପରୀକ୍ଷାମୂଳକ ଭାବେ ବିସ୍ଫୋରଣ କରି ଭାରତ ବିଶ୍ୱର ସବୁଠାରୁ ନିଆରା କ୍ଲବ୍, ଆଣବିକ କ୍ଲବ୍‌ର ଷଷ୍ଠତମ ସଦସ୍ୟ ହେବାର ଗୌରବ ହାସଲ କଲା । ସେଇ ସମୟରେ ବା ତାର ପରବର୍ତ୍ତୀ କିଛିକାଳ ପାଇଁ ଏହା କୁହାଗଲା ଯେ ଏହା ଥିଲା ଏକ ଶାନ୍ତିପୂର୍ଣ୍ଣ ଆଣବିକ ପରୀକ୍ଷା, ତଥାପି ଯିଏ ଏ ବ୍ୟାପାରରେ କିଛି ବି ଜାଣେ ସେ ବୁଝିସାରିଥିଲା ଯେ ଗୋଟିଏ ଆଣବିକ ବୋମାକୁ ବିସ୍ଫୋରଣ କରାଯାଇଛି ।

ଏହି ବିରାଟ ଉପଲବ୍ଧି ହାସଲ କରିବାର ଦିନକ ପୂର୍ବରୁ ଦିଲ୍ଲୀରେ ଗୋଟିଏ ନିତାନ୍ତ ଗୋପନୀୟ ବୈଠକ ବସି ପରଦିନକୁ ବୋତାମଟିକୁ ଚିପାଯିବ ନା ଏହି କାର୍ଯ୍ୟକ୍ରମକୁ କିଛିଦିନ ଘୁଞ୍ଚାଇଦିଆଯିବ, ସେ ନେଇ ଆଲୋଚନା କରାଗଲା । ହକ୍ସର୍ ଏବଂ ପିଏନ୍ ଧରଙ୍କ ସମେତ ଅଧିକାଂଶ ଚାହୁଁଥିଲେ ଯେ ଏହାକୁ କିଛିଦିନ ସ୍ଥଗିତ ରଖାଯାଉ । ଆଣବିକ ଶକ୍ତି କମିଶନର ଚେୟାରମ୍ୟାନ୍ ହୋମି ସେଠନା, ଯେ କି ପଦାର୍ଥବିଜ୍ଞାନୀ ନହୋଇ ଥିଲେ ଜଣେ ଇଞ୍ଜିନିଅର, ଚୁପ୍ ରହିଲେ । ଇନ୍ଦିରା ଗାନ୍ଧି ତା ପରେ ଭାରତୀୟ ବୋମାର ନିର୍ମାତା ବୈଜ୍ଞାନିକ ରାଜା ରମନ୍ନାଙ୍କ ଆଡ଼କୁ ଚାହିଁ କହିଲେ, "ଡ଼କ୍ଟର ରମନ୍ନା, ଦୟାକରି ଆଗେଇ ଯାଆନ୍ତୁ । ଦେଶପାଇଁ ଏହା ମଙ୍ଗଳକର ହେବ ।" ଏହାର ଦୁଇବର୍ଷ ପୂର୍ବରୁ, ବାଂଲାଦେଶ ଯୁଦ୍ଧର ଅନ୍ତିମ ପର୍ଯ୍ୟାୟରେ ନିକ୍ସନଙ୍କ ଦ୍ୱାରା ପ୍ରେରିତ ସପ୍ତମ ନୌସେନା ବଙ୍ଗୋପସାଗରରେ ପହଁଚରା ମାରିବାର ଅଳ୍ପ କିଛିଦିନ ପରେ ଇନ୍ଦିରା ଡ଼କ୍ଟର ରମନ୍ନାଙ୍କୁ କଥା ଛଳରେ ଶାନ୍ତିପୂର୍ଣ୍ଣ ଭାବେ ଆଣବିକ ପରୀକ୍ଷା ପାଇଁ ପ୍ରସ୍ତୁତି ଆରମ୍ଭ କରିବାକୁ ନିର୍ଦ୍ଦେଶ ଦେଇଥିଲେ ।

ଆଣବିକ ବୋମା ତିଆରି କରିବାର ଦକ୍ଷତା ପ୍ରତିପାଦନ କଲାପରେ ଇନ୍ଦିରା ତାଙ୍କ ନୀତି ପ୍ରତି ପ୍ରତିବଦ୍ଧ ରହି ଆଣବିକ ଅସ୍ତ୍ରଶସ୍ତ୍ର ପ୍ରସ୍ତୁତ ନକରି ବରଂ ପୂର୍ଣ୍ଣ ନିରସ୍ତ୍ରୀକରଣ ଉପରେ ଗୁରୁତ୍ୱାରୋପ କରିବାକୁ ଲାଗିଲେ । କିନ୍ତୁ, ସେ ଦୃଢ଼ଭାବେ ଘୋଷଣା କଲେ ଯେ ଆଣବିକ ଗବେଷଣା କ୍ଷେତ୍ରରେ ଭାରତ ଅନ୍ୟ ଦେଶଗୁଡ଼ିକ ସହ ତାଳ ଦେଇ ଚାଲିବ ।

ପୋଖରାନର ସଫଳତା ପରର ପ୍ରଶଂସାର ସୁଅ ସରିଛି କି ନାହିଁ ଆଉ ଏକ କାରଣରୁ ଅସନ୍ତୋଷର ଘେରାବନ୍ଦୀ ଭାବେ ଥିବା ଇନ୍ଦିରାଙ୍କ ପ୍ରତି ପ୍ରଶଂସା ଅଜାଡ଼ି ହୋଇପଡ଼ିଲା । ଏହାର କାରଣ ଥିଲା ସ୍ମଗ୍‌ଲର୍ ଏବଂ ବିଦେଶୀ ମୁଦ୍ରାର ଅସାଧୁ ବେପାରୀ ତଥା ଅନ୍ୟାନ୍ୟ ଅର୍ଥନୈତିକ ଅପରାଧୀଙ୍କ ଉପରେ ସରକାରଙ୍କ ଚଢ଼ାଉ । ଏହି ବର୍ଗ କେବଳ କଷ୍ଟମ୍‌ସ୍ ଅଫିସର୍ ନୁହନ୍ତି, ପୁଲିସ୍ ଏବଂ ରାଜନେତାଙ୍କୁ ଅର୍ଥ ଦ୍ୱାରା ବଶୀଭୂତ କରି ଏଭଳି ଅପରାଧମାନ ଘଟାଇ ସାଂଘାତିକ ଭାବେ ଧନୀ ଓ ପ୍ରଭାବଶାଳୀ ହୋଇଯାଇଥିଲେ । ପ୍ରାୟ ରାତିକ ଭିତରେ ୧୩୪ଜଣ ମାଫିଆଙ୍କୁ ଜେଲ୍‌ରେ ଭର୍ତ୍ତି କରାଗଲା ଏବଂ ମିସା ଆଇନ ବଳରେ ସେମାନଙ୍କୁ ଦୁଇବର୍ଷ କାଳ ଜେଲ୍‌ରେ ରଖାଗଲା ।

ଏହି ସମୟ ବେଳକୁ ଇନ୍ଦିରା ଏବଂ ତାଙ୍କ ସରକାର ବୁଝିସାରିଥିଲେ ଯେ ଜେପି ଆନ୍ଦୋଳନ ସେଇ ବର୍ଷର ସମାପ୍ତି ବେଳକୁ ନିସ୍ତେଜ ହୋଇଆସିବ । କିନ୍ତୁ, ୧୯୭୫ରେ ଘଟିବାକୁ ଥିବା ଦୁଇଟି ଘଟନା ଏହି ହିସାବକୁ କେବଳ ଯେ ବଦଳାଇ ଦେଇଥିଲା ତାହା ନୁହେଁ, ଆଧୁନିକ ଭାରତର ଇତିହାସକୁ ମଧ ଏହା ଗଭୀରଭାବେ ପ୍ରଭାବିତ କରିଥିଲା ।

── ୮ ──



# ଜରୁରୀ ପରିସ୍ଥିତି : ହାତୁଡ଼ିର ପ୍ରହାର

୧୯୭୫ ମସିହାର ଆରମ୍ଭରେ ବିବାଦୀୟ ଲଳିତ ନାରାୟଣ ମିଶ୍ର ରେଳ ଷ୍ଟେସନରେ ଏକ ସଭାମଞ୍ଚରେ ସମ୍ବୋଧିତ କଲାବେଳେ ମଞ୍ଚତଳେ ରଖାହୋଇଥିବା ଏକ ସମୟ ବୋମା ବିସ୍ଫୋରଣରେ ନିହତ ହେଲେ । ହତ୍ୟାର ଶିକାର ହେବାରେ ସେ ଥିଲେ ଭାରତର ପ୍ରଥମ କେବିନେଟ ମନ୍ତ୍ରୀ । ଇନ୍ଦିରା ଏବଂ ତାଙ୍କ ଦଳ ଏହି ଜଘନ୍ୟ ହତ୍ୟାପାଇଁ ଜୟପ୍ରକାଶ ଏବଂ ତାଙ୍କ ସହଯୋଗୀମାନଙ୍କ ଦ୍ୱାରା ବିସ୍ତାରିତ 'ଘୃଣା ଓ ହିଂସାର ସଂସ୍କୃତି'କୁ ଦାୟୀ କଲେ । ଜୟପ୍ରକାଶ ଗୋଷ୍ଠୀ ପ୍ରତିଆକ୍ରମଣ କଲେ - ମିଶ୍ର ଯେହେତୁ ଇନ୍ଦିରାଙ୍କ ସରକାର ପାଇଁ ଲଜ୍ଜାର କାରଣ ଥିଲେ, ତେଣୁ ତାଙ୍କୁ ରାସ୍ତାରୁ ହଟେଇ ଦିଆଗଲା । ଇନ୍ଦିରା ଏଭଳି 'ଡ଼ାହା ମିଛ'ର ଓଲଟା ଜବାବ ଦେଇ କହିଲେ, ତାଙ୍କୁ (ଇନ୍ଦିରାଙ୍କୁ) ହତ୍ୟା କରିବାର 'ପୂର୍ବ ପ୍ରସ୍ତୁତି'ରୂପେ ମିଶ୍ରଙ୍କୁ ହତ୍ୟା କରାଯାଇଛି । "ଯେତେବେଳେ ମତେ ହତ୍ୟା କରାଯିବ, ଏମାନେ କହିବେ ତା' ପାଇଁ ମୁଁ ବ୍ୟବସ୍ଥା କରିଥିଲି ।"

ସେତେବେଳକୁ ଇନ୍ଦିରା ଗାନ୍ଧି ଏବଂ ତାଙ୍କ ଗୋଷ୍ଠୀର ଅଧିକାଂଶ ଲୋକ, ଯେଉଁଥିରେ ସର୍ବଦା କ୍ଷମତାଲିପ୍ସୁ ଓ ପ୍ରଭାବ ଆକାଂକ୍ଷୀ ପୂର୍ବତନ କମ୍ୟୁନିଷ୍ଟ, ପୁରୁଣା ସମାଜବାଦୀ ଓ ସୁବିଧାବାଦୀ କଂଗ୍ରେସ ଲୋକ ସାମିଲ ଥିଲେ, ଦୃଢ଼ ନିଶ୍ଚିତ ଯେ ଜାଣତରେ ହେଉ ବା ଅଜାଣତରେ ହେଉ ବିଦେଶୀ ସମର୍ଥିତ ଫାଶୀବାଦୀ ଆନ୍ଦୋଳନ ଆଡ଼କୁ ଜୟପ୍ରକାଶ ଟାଣି ହେଉଥିଲେ । ଇନ୍ଦିରା ଗାନ୍ଧିଙ୍କର ଆହୁରି ମଧ୍ୟ ଆଶଙ୍କା ଥିଲା ଯେ ଯେଉଁ ପ୍ରକାରେ ସିଆଇଏର ପ୍ରରୋଚନାରେ ସେପ୍ଟେମ୍ବର ୧୯୭୩ ମସିହାରେ ଚିଲିର ସଲଭାଡ଼ୋର ଆଲେଣ୍ଡେ ସରକାରକୁ କ୍ଷମତାଚ୍ୟୁତ କରାଯାଇଥିଲା,ସେହି ଧରଣର ବିଦେଶୀ ହାତ ଭାରତରେ ମଧ୍ୟ କାମ କରୁଛି ।

ଏହାର ଏକ କୁତ୍ସିତ ପରିଣାମ ହେଲା ଯେ ପ୍ରଧାନମନ୍ତ୍ରୀ ଏବଂ ତାଙ୍କ ଗୋଷ୍ଠୀ ଦଳୀୟ ନେତାଙ୍କ ନାଁରେ ଯଥେଷ୍ଟ ପ୍ରମାଣଥିବା ଦୁର୍ନୀତିକୁ ଏକ 'ସର୍ବବ୍ୟାପୀ ସମସ୍ୟା' ବୋଲି କହି ପରିସ୍ଥିତିକୁ ସେ ଅଧିକ ଜଟିଳ କରିଦେଲେ ।

ଉଲ୍ଲେଖନୀୟ କଥା ଯେ ଚନ୍ଦ୍ରଶେଖର ଆଦି ଦଳର ଅନେକ ବିଶିଷ୍ଟ ନେତା ପରାମର୍ଶ ଦେଲେ ଜେପିଙ୍କ ସାଙ୍ଗରେ ଅଯଥା କଳହ ନକରି, ବରଂ ବୁଝାମଣା କରିବା ଉଚିତ । ଇନ୍ଦିରାଙ୍କ



ମହାତ୍ମା, ସୀମାନ୍ତ ଗାନ୍ଧି ଓ ପିତାଙ୍କ ସହ ଯୁବତୀ ଇନ୍ଦିରା
ସୌଜନ୍ୟ : ପ୍ରେସ୍ ଇନ୍‌ଫରମେସନ ବ୍ୟୁରୋ (ପିଆଇବି)



ପିତା ଏବଂ ମାତା କମଳାଙ୍କ ସହ

ସୌଜନ୍ୟ : ପିଆଇବି



୧୯୭୪ ମସିହା ପରମାଣୁ ବିସ୍ଫୋରଣ ସ୍ଥାନ ପୋଖରାନ୍‌ରେ ସୌଜନ୍ୟ : ପିଆଇବି



ସାଧାରଣ ସ୍ପର୍ଶ : ଦରିଦ୍ରମାନଙ୍କର ଇନ୍ଦିରାଙ୍କ ସହ ମୁକ୍ତ ମିଳାମିଶା

ସୌଜନ୍ୟ : ପିଆଇବି



ଭଲ ସମୟରେ ମୋରାରଜୀ ଦେଶାଇଙ୍କ ଠାରୁ
ପୁଷ୍ପମାଲ୍ୟ ଗ୍ରହଣ   ସୌଜନ୍ୟ : ପିଆଇବି



ବଙ୍ଗଳା ଦେଶ ଯୁଦ୍ଧରେ ବିଜୟ ପରେ । ପ୍ରଧାନମନ୍ତ୍ରୀ ତାଙ୍କ ସାମରିକ ମୁଖ୍ୟମାନଙ୍କୁ
ଅଭିନନ୍ଦନ ଜଣାଇବା ଅବସରରେ   ସୌଜନ୍ୟ : ପିଆଇବି



ଆଣ୍ଡାମାନ ଦ୍ୱୀପପୁଞ୍ଜରେ ସମୁଦ୍ରକୂଳରେ ଶାମୁକା ସଂଗ୍ରହକରିବା ଅବସରରେ

*ସୌଜନ୍ୟ : ଉମା ବାସୁଦେବ*



ମକା ଖାଇବା ଅବସରରେ ସୌଜନ୍ୟ : ପିଆଇବି



ଅଶି ଦଶକର ପ୍ରାରମ୍ଭରେ ଆଦିବାସୀ ମହିଳାମାନଙ୍କ ସହ ସୌଜନ୍ୟ : ପିଆଇବି



ସିକିମରେ ପିତା ଏବଂ କନ୍ୟା — ସୌଜନ୍ୟ : ପିଆଇବି

ସଚିବ ପି.ଏନ୍. ଧରଙ୍କର ଜେପିଙ୍କ ସହ ପରିଚୟ ଥିଲା ; ସମ୍ପର୍କ ବି ଥିଲା । ତାଙ୍କର ବି ସେହି ମତ ! ସେଥିପାଇଁ ୧୯୭୪ ମସିହା ନଭେମ୍ବର ଶେଷ ଆଡ଼କୁ ଜେପି ଓ ପ୍ରଧାନମନ୍ତ୍ରୀଙ୍କ ମଧ୍ୟରେ ଏକ ବୈଠକର ଆୟୋଜନ କରାଗଲା । ମାତ୍ର ତାହା ଫଳପ୍ରଦ ହେଲାନାହିଁ । ଯା' ପରେ ଜଣେ କନିଷ୍ଠ ମନ୍ତ୍ରୀ ଓ 'ତରୁଣ ତୁର୍କ' ମୋହନ ଧରିଆ ଜେପିଙ୍କର ସମର୍ଥକଙ୍କ ଉପରେ ହୋଇଥିବା 'ପୋଲିସ ଅତ୍ୟାଚାର'ର ଖୋଲାଖୋଲି ନିନ୍ଦା କଲେ । ଇନ୍ଦିରା ତାଙ୍କୁ ମନ୍ତ୍ରୀମଣ୍ଡଳରୁ ବରଖାସ୍ତ କଲାରୁ, ମୋହନ ଧରିଆଙ୍କର ରାଜନୈତିକ କଳେବର ଆକସ୍ମିକ ଭାବରେ ବୃଦ୍ଧିପାଇଲା ।

୧୯୭୫ ଏପ୍ରିଲ ମାସରେ ଅନେକ ସମସ୍ୟା ଭିତରେ ଆଉ ଏକ ଗୁରୁତର ସମସ୍ୟା ଇନ୍ଦିରାଙ୍କୁ ମାଡ଼ି ପଡ଼ିଲା । ୭୯ ବର୍ଷ ବୟସ୍କ ମୋରାରଜୀ ଦେଶାଇ ବର୍ଷକରୁ ଅଧିକ ସମୟ ପୂର୍ବରୁ ଭଙ୍ଗ ହୋଇଥିବା ଗୁଜରାଟ ବିଧାନସଭା ପାଇଁ ତୁରନ୍ତ ନିର୍ବାଚନ ଦାବିକରି ଅନିର୍ଦ୍ଦିଷ୍ଟ କାଳପାଇଁ ଅନଶନ ଆରମ୍ଭ କଲେ । ତାଙ୍କର ଅଭିଯୋଗ ଯେ, ଆଶୁ ପରାଜୟ ଆଶଙ୍କାରେ ଇନ୍ଦିରା ଜାଣିଶୁଣି ନିର୍ବାଚନ ଘୋଷଣା କରୁନାହାନ୍ତି । ମୋରାରଜୀ ସ୍ୱାସ୍ଥ୍ୟ ପ୍ରତି ବିପଦ ଆଶଙ୍କା କରି ଇନ୍ଦିରା ଜୁନ ୧୦ ତାରିଖରେ ଭୀଷଣ ଗରମରେ ସେଠି ନିର୍ବାଚନ କରିବାକୁ ତୁରନ୍ତ ରାଜି ହୋଇଥିଲେ ।

ଏହାର ଅର୍ଥ ହେଲା, ମେ' ମାସ ସାରା ସେ ଗୁଜରାଟ ନିର୍ବାଚନରେ ଅତିମାତ୍ରାରେ ବ୍ୟସ୍ତ ରହିବେ । ତଥାପି ସମୟ ବାହାର କରି ଭାରତ ଓ ଚୀନ୍ ମଧ୍ୟରେ ହିମାଳୟ ପାଦଦେଶରେ ଥିବା ଗୋଟାଏ ଛୋଟିଆ ରାଜ୍ୟ ସିକିମକୁ ଭାରତ ସାଙ୍ଗରେ ମିଶାଇ ଦେଲେ । ୧୯୪୭ ମସିହା ଯାଏଁ ବ୍ରିଟିଶ କର୍ତ୍ତୃତ୍ୱରେ ଏବଂ ପରବର୍ତ୍ତୀ ସମୟରେ ଭାରତର କର୍ତ୍ତୃତ୍ୱରେ ରହିଥିବା ସିକିମ ଭାରତର ସୁରକ୍ଷା ଦୃଷ୍ଟିରୁ ଖୁବ୍ ମହତ୍ତ୍ୱପୂର୍ଣ୍ଣ ।୧୯୬୨ ମସିହାରେ ହିମାଳୟ ପାର୍ବତ୍ୟାଞ୍ଚଳରେ ଭାରତ ଓ ଚୀନ୍ ମଧ୍ୟରେ ଏକ ସୀମାନ୍ତ ଯୁଦ୍ଧ ସଂଘଟିତ ହୋଇସାରିଛି । ତେଣୁ, ସିକିମର ଚୋଗ୍ୟାଲ (ରାଜା) ଓ ତାଙ୍କ ଆମେରିକୀୟ ପତ୍ନୀ ଯେତେବେଳେ ସାର୍ବଭୌମତ୍ୱ ରକ୍ଷାପାଇଁ ପ୍ରୟାସ ଆରମ୍ଭକଲେ, ଇନ୍ଦିରା ସଫା ମନା କରିଦେଲେ । ସିକିମର ବିଧାନସଭାର ମତ ଭାରତ ସପକ୍ଷରେ ରହିଥିଲା । ଭାରତ ସହ ମିଶିବା ବ୍ୟତୀତ ଚୋଗ୍ୟାଲ ପାଇଁ ଆଉ ଅନ୍ୟ ବିକଳ୍ପ ରହିଲା ନାହିଁ ।

ଜୁନ ମାସ ଶେଷରେ ଜାତିସଂଘର ପ୍ରଥମ ମହିଳା ଅଧିବେଶନରେ ବିଶିଷ୍ଟ ବକ୍ତା ଭାବରେ ଯୋଗଦେବା ପାଇଁ ଇନ୍ଦିରା ଗାନ୍ଧିଙ୍କର ମେକ୍ସିକୋସିଟି ଗସ୍ତ କରିବାର କାର୍ଯ୍ୟକ୍ରମ ଥିଲା । ଭାରତୀୟ ପ୍ରତିନିଧି ଦଳର ଜଣେ ଅନ୍ୟତମ ସଦସ୍ୟ ପପୁଲ ଜୟକାର ଯିଏ ଇନ୍ଦିରାଙ୍କର ଜଣେ ବ୍ୟକ୍ତିଗତ ବନ୍ଧୁ ମଧ, ମାସକ ପୂର୍ବରୁ ନ୍ୟୁୟର୍କ ଯାଉଥିଲେ । ଯିବା ପୂର୍ବରୁ ଦେଖାକରି କହିଲେ, 'ମେକ୍ସିକୋରେ ଦେଖା ହେବ ।' ଉଦ୍ଦୀପ୍ତ ହସ ହସି ଇନ୍ଦିରା ଉତ୍ତରଦେଲେ, "ତାହା ୧୨ ଜୁନ ପରିଣାମ ଉପରେ ନିର୍ଭର କରିବ ।" ପପୁଲ ଜିଜ୍ଞାସାଭରା କଣ୍ଠରେ ପଚାରିଲେ, "୧୨ ତାରିଖରେ କ'ଣ କିଛି ହେବାର ଅଛି କି ?" ଇନ୍ଦିରାଙ୍କର ସଂକ୍ଷିପ୍ତ ଉତ୍ତର, 'ଆହ୍ଲାବାଦ ହାଇକୋର୍ଟ ରାୟ ।' ଘଟଣାର ମହତ୍ତ୍ୱ ଓ ଜଟିଳତା ସହ ଅପରିଚିତା ଜୟକାର କଥାଟିକୁ ଗମ୍ଭୀରତାର ସହ ନେଲେ ନାହିଁ ।

## ଆହ୍ଲାବାଦ ହାଇକୋର୍ଟ ରାୟ

୧୨ ଜୁନ୍ ଦିନଟି ଯେମିତି ଗରମ, ସେମିତି ଧୂଳିଆ ରହିଥିଲା । ସେଦିନ ଗୋଟାକ ପରେ ଗୋଟାଏ କରି ତିନୋଟି ପ୍ରଚଣ୍ଡ ଆଘାତ ମିଳିଲା ଯେତେବେଳେ ଗୁଜରାଟ ନିର୍ବାଚନର ପ୍ରାରମ୍ଭିକ ଫଳାଫଳରୁ ସ୍ପଷ୍ଟ ହେଲା ଯେ ସେଠାରେ ଖୁବ୍ କମ୍ ସମୟରେ ଗଠିତ ଜେପିଙ୍କ ପ୍ରଚେଷ୍ଟାରେ ଚାରୋଟି ବିରୋଧୀଦଳର ମେଣ୍ଟ ହାତରେ କଂଗ୍ରେସ ଶୋଚନୀୟ ପରାଜୟର ସମ୍ମୁଖୀନ ହେଉଛି । ସବୁଠାରୁ ବଡ଼ ଆଘାତ ହେଲା, ଆହ୍ଲାବାଦ ହାଇକୋର୍ଟର ବିଚାରପତି ଜଗମୋହନ ଲାଲ ସିହ୍ନାଙ୍କ ରାୟ । ଚାରିବର୍ଷ ତଳେ ରାଜନାରାୟଣଙ୍କ ଦ୍ୱାରା ଇନ୍ଦିରା ଗାନ୍ଧିଙ୍କ ବିରୁଦ୍ଧରେ ଦାଖଲ କରାଯାଇଥିବା ଏକ ନିର୍ବାଚନ ଅପିଲ ଉପରେ ରାୟଟିକୁ ଦିଆଯାଇଥିଲା । ଭୋଟରମାନଙ୍କୁ ଧମକି ଓ ଲାଞ୍ଚ ଆଦି ଦିଆଯିବାର ଖୁବ୍ ସାଂଘାତିକ ଅଭିଯୋଗଗୁଡ଼ିକୁ ପ୍ରତ୍ୟାଖାନ କରି ବିଚାରପତି ସିହ୍ନା ନିର୍ବାଚନ ନିୟମର ଦୁଇଟି ଛୋଟିଆ ଆଇନଗତ ଉଲଙ୍ଘନକୁ ଆଧାରକରି ପ୍ରଧାନମନ୍ତ୍ରୀଙ୍କୁ 'ଦୋଷୀ' ସାବ୍ୟସ୍ତ କରିଥିଲେ । ଗୋଟାଏ ହେଲା ଯେ,ରାୟବରେଲୀ ଲୋକସଭା ଆସନରେ ଇନ୍ଦିରାଙ୍କ ନିର୍ବାଚନ ପ୍ରତିନିଧି ରୂପେ କାର୍ଯ୍ୟ କରୁଥିବା ଜଣେ ସରକାରୀ କର୍ମଚାରୀଙ୍କ ଇସ୍ତଫା ଗ୍ରହଣ ସମ୍ପର୍କରେ ସରକାରୀ ବିଜ୍ଞପ୍ତି ପ୍ରକାଶ ପାଇବାରେ ହୋଇଥିବା ଡେ଼ରି । ଅନ୍ୟଟି ହେଲା, ଇନ୍ଦିରାଙ୍କ ନିର୍ବାଚନ ମଞ୍ଚ ନିର୍ମାଣରେ ସରକାରୀ ଇଞ୍ଜିନିୟର କରିଥିବା ସାହାଯ୍ୟ । ସେ ଯାହାହେଉ "ଦୁର୍ନୀତି ଉପାୟ"ରେ ନିର୍ବାଚନ ଲଢ଼ିବା ଅପରାଧରେ ସିହ୍ନା ଇନ୍ଦିରାଙ୍କୁ 'ଦୋଷୀ' ସାବ୍ୟସ୍ତକରି ୧୯୭୧ର ଇନ୍ଦିରାଙ୍କ ନିର୍ବାଚନକୁ ଅସିଦ୍ଧ ଘୋଷଣା କଲେ ଏବଂ ତାଙ୍କୁ ଛଅବର୍ଷ ପର୍ଯ୍ୟନ୍ତ କୌଣସି ନିର୍ବାଚିତ ପଦପଦବୀ ଗ୍ରହଣ କରିବା ନିମନ୍ତେ ଅଯୋଗ୍ୟ ଘୋଷଣା କଲେ । ଜଣେ ପ୍ରଖ୍ୟାତଯଶା ବ୍ରିଟିଶ୍ ସାମ୍ବାଦିକ ଜେମସ କେମେରନ ରାୟ ଶୁଣି ମତ ଦେଇଥିଲେ, ଦେଶର ସରକାରୀ ମୁଖ୍ୟଙ୍କୁ ଗାଡ଼ି ଛିଡ଼ାକରିବା ପାଇଁ କ'ଣ ପୁଣି ବ୍ଲକ୍ ଅଧିକାରୀଙ୍କଠାରୁ ଅନୁମତି ପତ୍ର ଆଣିବାକୁ ହେବ ? ଅନ୍ୟ ପକ୍ଷରେ ଜେପି ଏବଂ ତାଙ୍କ ସହଯୋଗୀମାନେ ରାୟ ଶୁଣି ଆନନ୍ଦ ବିଭୋର । ଇନ୍ଦିରାଙ୍କ ପକ୍ଷରେ କୌଣସି ଯୁକ୍ତି ଶୁଣିବାକୁ ସେମାନେ ପ୍ରସ୍ତୁତ ନୁହନ୍ତି । ସେମାନେ ଦୃଢ଼ ନିଶ୍ଚିତ ଯେ, ଇନ୍ଦିରା ଗାନ୍ଧି କେବଳ ରାଜନୈତିକ ଏବଂ ମୂଲ୍ୟବୋଧ ଦୃଷ୍ଟିରୁ ନୁହେଁ, ଆଇନଗତ ଦୃଷ୍ଟିରୁ ମଧ୍ୟ କର୍ତ୍ତୃତ୍ୱ ହରାଇଛନ୍ତି । ତେଣୁ ଦେଶର ଚାରିଆଡ଼େ ଗୋଟିଏ ଡ଼ାକରା ଦିଆଗଲା "ଇନ୍ଦିରା ହଟାଅ" । ଜେପି ତ ଆହୁରି ପାଦେ ବଢ଼ିଯାଇ ଘୋଷଣା କଲେ, ଇନ୍ଦିରାଙ୍କର କ୍ଷମତାରେ ରହିବା ଏବଂ "ଭାରତରେ ଗଣତନ୍ତ୍ରର ରହିବା ଏକା ସାଙ୍ଗରେ ସମ୍ଭବ ନୁହେଁ ।"

ସେ ଯାହାହେଉ, ଆହ୍ଲାବାଦ ରାୟରେ ସୁପ୍ରିମକୋର୍ଟରେ ଅପିଲ ପାଇଁ ମଧ୍ୟ ଅବସର ରହିଥିଲା ଏବଂ ଅଧିକାଂଶ ଆଇନ ବିଶେଷଜ୍ଞଙ୍କ ମତରେ ସର୍ବୋଚ୍ଚ ନ୍ୟାୟାଳୟ ରାୟକୁ ଖାରଜ କରିବ । ମାତ୍ର, ଗ୍ରୀଷ୍ମ ଅବକାଶ ପରେ ସୁପ୍ରିମକୋର୍ଟ ଆରମ୍ଭ ହେବାର ଅନ୍ତତଃ କେତେ ମାସପରେ ଯାଇ ସୁପ୍ରିମକୋର୍ଟରେ ଅପିଲର ଶୁଣାଣି ଆରମ୍ଭ ହେବ । ଶାସକଦଳକୁ "ବିକଳ୍ପ ବ୍ୟବସ୍ଥା କରିବାପାଇଁ" ସ୍ୱୟଂ ବିଚାରପତି ସିହ୍ନା ତାଙ୍କ ଆଦେଶକୁ କାର୍ଯ୍ୟକାରୀ କରିବାପାଇଁ ୨୦ଦିନ ସମୟ ଦେଇଥିଲେ ।

ଇନ୍ଦିରାଙ୍କ ଆଗରେ ମହତ୍ତ୍ୱପୂର୍ଣ୍ଣ ପ୍ରଶ୍ନ ହେଲା ଯେ, ସୁପ୍ରିମକୋର୍ଟରେ ତାଙ୍କ ଅପିଲ ପେଣ୍ଡିଂ ରହିଥିବା ସମୟରେ ତାଙ୍କର କ'ଣ ପଦକ୍ଷେପ ନେବା ଉଚିତ । ତାଙ୍କ ମତରେ ପ୍ରଶ୍ନଟିର ଉତ୍ତର ନିର୍ଭର କରିବ କୋର୍ଟର ଅବକାଶକାଳୀନ ବିଚାରପତି ଭି.କେ. କୃଷ୍ଣଆୟାରଙ୍କ ଆଦେଶ ଉପରେ । ବିଚାରପତି ସିହ୍ନାଙ୍କର ରାୟ ଉପରେ "ସମ୍ପୂର୍ଣ୍ଣ ରହିତାଦେଶ" ଜାରି କରିବାପାଇଁ ଇନ୍ଦିରା ଆବେଦନ କରିଥିଲେ । ଏପଟେ ଇନ୍ଦିରା ପ୍ରଧାନମନ୍ତ୍ରୀ ପଦରୁ ସଙ୍ଗେ ସଙ୍ଗେ ଇସ୍ତଫା ଦେଇନଥିବାରୁ ହତାଶ ଓ କ୍ଷୁବ୍ଧହୋଇ ଜେପି ଏବଂ ତାଙ୍କୁ ସମର୍ଥନ କରୁଥିବା ବିରୋଧୀଦଳ ନେତୃବୃନ୍ଦ ତୁରନ୍ତ ଇସ୍ତଫା ଦାବିକରି ଆନ୍ଦୋଳନକୁ ଅଧିକ ତୀବ୍ର କଲେ । ପ୍ରତିଦିନ ବିରୋଧ ପ୍ରଦର୍ଶନ ଚାଲିଲା । ସଭାସମିତି ଆୟୋଜିତ ହେଲା । ସାଙ୍ଗରେ ରାଷ୍ଟ୍ରପତି ଭବନ ଆଗରେ ଧାରଣା ଦେବାକୁ ମଧ୍ୟ ନିଷ୍ପତ୍ତି ନିଆହେଲା । ରାଷ୍ଟ୍ରପତିଙ୍କ ପାଖରେ ସେମାନଙ୍କର ଦାବି ଯେ, ନିଜ କ୍ଷମତାକୁ ଉପଯୋଗକରି ସେ ପ୍ରଧାନମନ୍ତ୍ରୀଙ୍କୁ ଇସ୍ତଫା ଦେବାପାଇଁ ନିର୍ଦ୍ଦେଶ ଦିଅନ୍ତୁ ।

ଏହିଭଳି ଏକ ଉତ୍ତେଜନାପୂର୍ଣ୍ଣ ତଥା ଘଡ଼ିସନ୍ଧି ମୁହୂର୍ତ୍ତରେ ପୁଣି ଜୁନ୍ ୨୪ ତାରିଖରେ ଜଷ୍ଟିସ କୃଷ୍ଣଆୟାରଙ୍କ ବହୁ ପ୍ରତୀକ୍ଷିତ ଶୁଣାଣି ପ୍ରକାଶ ପାଇଲା । ସମ୍ପୂର୍ଣ୍ଣ ରହିତାଦେଶ ପାଇଁ ଦେଇଥିବା ଇନ୍ଦିରାଙ୍କ ଆବେଦନକୁ ପ୍ରତ୍ୟାଖ୍ୟାନ କରି ବିଚାରପତି କେବଳ "ସର୍ତ୍ତ ଆଧାରିତ ରହିତାଦେଶ" ଦେଲେ । ତଦନୁଯାୟୀ ଇନ୍ଦିରା ଗାନ୍ଧି ପ୍ରଧାନମନ୍ତ୍ରୀ ପଦରେ ରହିପାରିବେ । ଏପରିକି ପାର୍ଲିଆମେଣ୍ଟରେ ନିଜ ବକ୍ତବ୍ୟ ମଧ୍ୟ ରଖିପାରିବେ, ମାତ୍ର ଭୋଟ ଦେଇପାରିବେ ନାହିଁ ଇନ୍ଦିରାଙ୍କ ପାଇଁ ଏଥିରୁ ଅଧିକ ଲଜ୍ଜାଜନକ ପରିସ୍ଥିତି ବା ଆଉ କ'ଣ ହୋଇପାରନ୍ତା ? ଅନ୍ୟପକ୍ଷରେ ଜେପିଙ୍କ ମହଲରେ ଏଥିରୁ ଅଧିକ ଖୁସି ଖବର ବା କ'ଣ ହୁଅନ୍ତା ? ସହକର୍ମୀମାନଙ୍କ ସାଙ୍ଗରେ ଜେପି ଏବେ ଦୃଢ଼ ନିଶ୍ଚିତ ଯେ କୌଣସି ମତେ ଇନ୍ଦିରା ଆଉ କ୍ଷମତାକୁ "ଜାବୁଡ଼ି" ରହିପାରିବେ ନାହିଁ ।

ପରଦିନ ଦିଲ୍ଲୀର ରାମଲୀଳା ପଡ଼ିଆରେ ମୋରାରଜୀ ଦେଶାଇଙ୍କ ଅଧ୍ୟକ୍ଷତାରେ ଆୟୋଜିତ ଏକ ବିଶାଳ ଜନସଭାରେ ଜେପି ଘୋଷଣାକଲେ, ଏଣିକି ସମଗ୍ର ଦେଶରେ ଇନ୍ଦିରାଙ୍କ ଇସ୍ତଫା ଦାବିକରି ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ ହେବାର ନିଷ୍ପତ୍ତି ନିଆଯାଇଛି । ନିଜ ବକ୍ତବ୍ୟ ଶେଷରେ ସେ ସେନା ଓ ପୋଲିସକୁ "ଅବୈଧ" ସରକାରକୁ "ଅମାନ୍ୟ" କରିବାପାଇଁ ପୁନର୍ବାର ଆବେଦନ କଲେ । ସାଙ୍ଗରେ ଇନ୍ଦିରାଙ୍କୁ ଚାଲେଞ୍ଜକରି କହିଲେ ଯଦି ସାହସ ଅଛି 'ଦେଶଦ୍ରୋହ ଅପରାଧ ପାଇଁ ତାଙ୍କର ବିଚାର କରାଯାଉ ।'

## ମଧ୍ୟରାତ୍ରିର ମୁଷ୍ଟିପ୍ରହାର

ଖୁସିରେ ମସଗୁଲ ବିରୋଧୀ ଦଳର ଯୋଜନା ସମ୍ପର୍କରେ ମୋରାରଜୀ ଆହୁରି ଅଧିକ ଖୋଲାସା କଲେ । ଇଟାଲିର ସାମ୍ବାଦିକ ଓରିଆନା ଫଲାସିଙ୍କୁ ଏକ ସାକ୍ଷାତକାରରେ ସେ କହିଲେ, "ଆମର ଯୋଜନା ହେଲା ତାଙ୍କୁ ଗାଦିଚ୍ୟୁତ କରିବୁ । ଭଦ୍ରମହିଳା ଆମ ଆନ୍ଦୋଳନର ସମ୍ମୁଖୀନ

ହୋଇପାରିବେ ନାହିଁ । .....ହଜାର ହଜାର ସଂଖ୍ୟାରେ ଆମେ ତାଙ୍କ ଘର ଘେରାଉ କରିବୁ । ତାଙ୍କୁ ଘରୁ ପାଦ କାଢ଼ିବାକୁ ଦେବୁ ନାହିଁ । ତାଙ୍କ ଘର ଆଗରେ ରାତିଦିନ ଆମେ କ୍ୟାମ୍ପକରି ରହିବୁ ।" ମାତ୍ର ଜେପି ସାଙ୍ଗରେ ମୋରାରଜୀ ଯେତେବେଳେ ଗୃହବନ୍ଦୀ ଇନ୍ଦିରାଙ୍କୁ ଖତଗଦାକୁ ଫିଙ୍ଗିବା ନିମିତ୍ତ ନାନା କଳ୍ପନା ଜଳ୍ପନା କରି ରାତିରେ ଘରକୁ ଫେରୁଥିଲେ, ଇନ୍ଦିରା ସମ୍ପୂର୍ଣ୍ଣ ଗୋପନୀୟ ଭାବରେ ତାଙ୍କ ପ୍ରତିଘାତ ଯୋଜନାକୁ ଚୂଡ଼ାନ୍ତ ରୂପ ଦେଉଥିଲେ । ମଧ୍ୟରାତ୍ରିରେ ଯେତେବେଳେ ସେ ଜରୁରୀକାଳୀନ ପରିସ୍ଥିତି ବା ଇମର୍ଜେନ୍‌ସି ଘୋଷଣାକରି ଶତ୍ରୁପକ୍ଷ ବିରୁଦ୍ଧରେ ଅସ୍ତ୍ରଚାଳନା କଲେ, ବିରୋଧୀ ତା'ର ଟେର୍ ସୁଦ୍ଧା ପାଇପାରିଲେ ନାହିଁ । ଏହାଦ୍ୱାରା ଦେଶର ଗଣତାନ୍ତ୍ରିକ ବ୍ୟବସ୍ଥା ନିଲମ୍ବିତ ହେଲା ଏବଂ ଇମର୍ଜେନ୍‌ସି ଅବଧି ଭିତରେ ମୌଳିକ ଅଧିକାର ଲାଗୁ ହୋଇପାରିଲା ନାହିଁ ।

ଜେପି, ମୋରାରଜୀ ଏବଂ ଆହୁରି ଅନେକ ନେତୃବୃନ୍ଦ ପରଦିନ ସକାଳୁ ନିଦରୁ ଉଠିଲାପରେ ଅବଗତ ହେଲେ ଯେ ସେମାନେ ବନ୍ଦୀ । ଅବଶ୍ୟ ଜେପି ଓ ଦେଶାଇଙ୍କୁ ଆରାମଦାୟକ ଅତିଥି ଗୃହରେ ରଖାଗଲା । ମାତ୍ର ଅନ୍ୟମାନଙ୍କୁ ରାଜଧାନୀ ଏବଂ ଆଖପାଖର ବିଭିନ୍ନ ଜେଲରେ ଭର୍ତ୍ତିକରି ଦିଆଗଲା । ଗିରଫ ନେତୃବୃନ୍ଦ ମଧ୍ୟରେ ଇନ୍ଦିରାଙ୍କ ନିଜ ଦଳର ଅନ୍ୟୁନ ଅଧଡ଼ଜନ ଖଣ୍ଡେ ବିଶିଷ୍ଟ ସଭ୍ୟ ଯଥା ଚନ୍ଦ୍ରଶେଖର, ମୋହନ ଧରିଆ ଏବଂ ରାମଧନ ଆଦି ସାମିଲ ଥିଲେ । ଦେଶର ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ବହୁସଂଖ୍ୟାରେ ଲୋକଙ୍କୁ ଗିରଫ କରାଗଲା । ସୁପରିକଳ୍ପିତ ଯୋଜନା ବିନା ଏତେ ସବୁ କାମ କେବେ ସମ୍ଭବ ନୁହେଁ । ମାତ୍ର ଆଶ୍ଚର୍ଯ୍ୟର କଥା ଯେ ଇମର୍ଜେନ୍‌ସି ସମ୍ବନ୍ଧରେ ଗୋଟାଏ ଶବ୍ଦ ବି ଆଗରୁ କେହି ଶୁଣି ନ ଥିଲେ ।

ଏହାର କାରଣ ହେଲା ଯେ ସମଗ୍ର ଯୋଜନାଟି ପ୍ରଧାନମନ୍ତ୍ରୀଙ୍କ "ଘର ଭିତରେ" ରୂପରେଖ ପାଇଥିଲା ଏବଂ ସେଥିରେ ସଂଜୟ ଗାନ୍ଧିଙ୍କର ପ୍ରମୁଖ ଭୂମିକା ରହିଥିଲା । ଦଳ ଓ ସରକାର ଭିତରେ ଯେଉଁମାନେ ଏହାକୁ ନାପସନ୍ଦ କରିପାରନ୍ତି ବୋଲି ଆଶଙ୍କା କରାଯାଉଥିଲା, ସେମାନଙ୍କୁ ଯୋଜନାର ପ୍ରସ୍ତୁତିପର୍ବ ବାହାରେ ରଖାଗଲା । ଆହ୍ଲାବାଦ ହାଇକୋର୍ଟ ରାୟ ପ୍ରକାଶ ପାଇବାର ତୁରନ୍ତ ବାଦ ଇନ୍ଦିରା ଗାନ୍ଧି ଅସଲରେ ଇସ୍ତଫା ଦେବାପାଇଁ ବିଚାର କରୁଥିଲେ । ତାଙ୍କର ଯୋଜନା ଥିଲା, ଜଣେ ବିଶ୍ୱସ୍ତ ସହକର୍ମୀଙ୍କୁ ପ୍ରଧାନମନ୍ତ୍ରୀ ଦାୟିତ୍ୱ ଦେବେ ଯିଏ ଇନ୍ଦିରାଙ୍କ ସମର୍ଥନରେ ସୁପ୍ରିମକୋର୍ଟର ରାୟ ମିଳିଲାପରେ ପଦବୀଟିକୁ ତାଙ୍କୁ ଫେରାଇଦେବେ । ମାତ୍ର ବିଚାରଟି ବେଶି ସମୟ ପାଇଁ ରହିପାରିଲା ନାହିଁ । ଲୋକ କଥାରେ କୋଇଲି ବସା ନ ଛାଡ଼ିଲା ପରି ଖାଲିସ୍ଥାନ ପୂରଣ ପାଇଁ ଆସିଥିବା ପ୍ରଧାନମନ୍ତ୍ରୀ ଯଦି ପଦତ୍ୟାଗ ନ କରନ୍ତି ? ଯେଉଁମାନେ ମିଳିଥିବା ପଦପଦବୀ ପାଇଁ ବ୍ୟକ୍ତିଗତ ରୂପରେ ପ୍ରଧାନମନ୍ତ୍ରୀଙ୍କ ପାଖରେ କୃତଜ୍ଞ, ସେମାନଙ୍କ ଦୃଢ଼ ମତ ଯେ ସେ ଆଦୌ ଇସ୍ତଫା ଦେବା କଥା ନୁହେଁ । ଶେଷରେ ସଂଜୟ ସବୁ "ବାଜେ କଥାରେ" ପୂର୍ଣ୍ଣଚ୍ଛେଦ ଟାଣିଦେଇ ନିଷ୍ପତ୍ତି ନେଲେ ଯେ ତାଙ୍କ ମା' "ଏପରିକି ଗୋଟାଏ ଦିନ ପାଇଁ ବି ଇସ୍ତଫା" ଦେବେ ନାହିଁ ।

ଯା'ପରେ ଇନ୍ଦିରାଙ୍କ ପଦବୀରେ ରହିବା ଏବଂ ପଦବୀରୁ ଇସ୍ତଫା ଦେବା ପ୍ରସଙ୍ଗ ମଧ୍ୟରେ ଅବାଧ ପ୍ରତିଯୋଗିତା ଆରମ୍ଭ ହେଲା । ଗୋଟାଏ ପକ୍ଷରେ ଇସ୍ତଫା ଦାବିକରି ଜେପି ଓ ବିରୋଧୀ ଦଳ ନେତାମାନେ ପାଟିତୁଣ୍ଡ, ଗାଳିଗୁଲଜ କଲେ, ତ ଅନ୍ୟ ପକ୍ଷରେ ପ୍ରଧାନମନ୍ତ୍ରୀଙ୍କ ସମର୍ଥନରେ ତାଙ୍କ ଘର ଆଗରେ ବିଶାଳ ପ୍ରଦର୍ଶନମାନ ଆୟୋଜିତ ହେଲା । ମନେହେଲା ଉଭୟ ପକ୍ଷରୁ ଯେମିତି ଗଣଉନ୍ମାଦ ଆରମ୍ଭ ହୋଇଯାଇଛି । ଜରୁରୀ ପରିସ୍ଥିତିର ଘୋଷଣା ପାଇଁ ସବୁ ଉନ୍ମାଦରେ ଅଚାନକ ପୂର୍ଣ୍ଣାହୂତି ପଡ଼ିଗଲା ।

ସେ ଯାହାହେଉ, ଜୁନ୍ ୨୫ ତାରିଖର ଘଟଣା ପ୍ରବାହକୁ ଯଦି ଫେରିଯିବା ,ଇମର୍ଜେନ୍‌ସି ଲାଗୁ କରିବାରେ ଯେଉଁ କେତେଜଣ ରାଜନୀତିଜ୍ଞ ଜଡ଼ିତ ଥିଲେ, ତନ୍ମଧ୍ୟରେ ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ ଓ ଜଣେ ବିଶିଷ୍ଟ ଆଇନ ବିଶେଷଜ୍ଞ, ସିଦ୍ଧାର୍ଥ ଶଙ୍କର ରାୟ ହେଲେ ଅନ୍ୟତମ । ୧୯୭୧ ମସିହା ବାଲାଂଦେଶ ଯୁଦ୍ଧ ପରଠାରୁ ବର୍ହି ଇମର୍ଜେନ୍‌ସି ଦେଶରେ ଲାଗୁହୋଇ ରହିଥିଲା । ତା' ସାଙ୍ଗକୁ ଆନ୍ତରିକ ଇମର୍ଜେନ୍‌ସି ଲାଗୁ କରିବାର ସମ୍ଭାବନା ସମ୍ପର୍କରେ ସିଦ୍ଧାର୍ଥ ଶଙ୍କର ରାୟ ହିଁ ଇନ୍ଦିରାଙ୍କୁ ପରାମର୍ଶ ଦେଇଥିଲେ । ଏମିତିରେ ବି ଇନ୍ଦିରାଙ୍କର ସାମ୍ବିଧାନିକ ନୀତି ନିୟମ ସମ୍ପର୍କରେ ଦଖଲ ଖୁବ୍ କମ୍ । ତା'ଛଡ଼ା ସେ ନିଜେ ଇନ୍ଦିରାଙ୍କ ସାଙ୍ଗରେ ରାଷ୍ଟ୍ରପତି ଭବନକୁ ଗଲେ । ଭି.ଭି. ଗିରିଙ୍କ ଉତ୍ତାରୁ ଅଗଷ୍ଟ ୧୯୭୪ ମସିହାରେ ଫକିରୁଦ୍ଦିନ ଅଲ୍ଲୀ ଅହମ୍ମଦ ଦେଶର ରାଷ୍ଟ୍ରପତି କାର୍ଯ୍ୟଭାର ଗ୍ରହଣ କରିଥାନ୍ତି । ତାଙ୍କୁ ବୁଝେଇ ଦିଆଗଲା ଯେ ଆନ୍ତରିକ ସୁରକ୍ଷା ସମସ୍ୟା ଜଟିଳ ହେଲେ ରାଷ୍ଟ୍ରପତି ଜରୁରୀ ପରିସ୍ଥିତି ଘୋଷଣା କରିପାରିବେ । ତା' ପାଇଁ ମନ୍ତ୍ରୀମଣ୍ଡଳର ଅନୁମୋଦନର ମଧ୍ୟ ଆବଶ୍ୟକତା ନାହିଁ । ଅନୁମୋଦନ ପରେ ଆସିବ । ଫକିରୁଦ୍ଦିନ ଅଲ୍ଲୀ ଅହମ୍ମଦ ଉଦ୍ଦିଷ୍ଟ ସ୍ଥାନରେ ଦସ୍ତଖତ ଦେଲେ । ଜରୁରୀ ପରିସ୍ଥିତି ଲାଗୁ ହେଲା ।

ଆଉ ଜଣେ ରାଜନେତା, ଗୃହ ମନ୍ତ୍ରାଳୟର ଜଣେ କନିଷ୍ଠ ମନ୍ତ୍ରୀ, ତଥା ସଞ୍ଜୟ ଗାନ୍ଧିଙ୍କ ଗୋଷ୍ଠୀର ସଭ୍ୟ, ଓମ ମେହେଟା ମଧ୍ୟ ଇମର୍ଜେନ୍‌ସିକୁ ଲାଗୁ କରିବାରେ ପ୍ରମୁଖ ଭୂମିକା ନିର୍ବାହ କରିଥିଲେ । ସେହି ଦୁର୍ଭାଗ୍ୟପୂର୍ଣ୍ଣ ରାତ୍ରିରେ ଗୃହମନ୍ତ୍ରୀ ବ୍ରହ୍ମାନନ୍ଦ ରେଡ୍ଡିଙ୍କୁ ଆଡ଼େଇ ଦିଆଗଲା । ପରେ ସମଗ୍ର ଇମର୍ଜେନ୍‌ସି କାଳଖଣ୍ଡରେ ତାଙ୍କୁ ଉପେକ୍ଷା କରାଗଲା । ବରିଷ୍ଠକୁ ଉପେକ୍ଷା ଏବଂ ତା'ଯାଗାରେ କନିଷ୍ଠ ସଭ୍ୟ ଦ୍ୱାରା ନିଷ୍ପତ୍ତି ନେବାର ଯେଉଁ ପ୍ରକ୍ରିୟା ଓମ ମେହେଟା ଓ ବ୍ରହ୍ମାନନ୍ଦ ରେଡ୍ଡିଙ୍କଠାରୁ ଆରମ୍ଭ ହେଲା, ତାହା କ୍ରମଶଃ ଅନ୍ୟ ବିଭାଗଗୁଡ଼ିକରେ ମଧ୍ୟ ପ୍ରତିଫଳିତ ହେଲା ।

ଇମର୍ଜେନ୍‌ସି ଲାଗୁହେଲା ପରେ ସିଦ୍ଧାର୍ଥ ଶଙ୍କର ରାୟ ଯେତେବେଳେ ପ୍ରଧାନମନ୍ତ୍ରୀ ନିବାସ ଛାଡ଼ିବାକୁ ପ୍ରସ୍ତୁତ ହେଉଥାନ୍ତି, ସେତେବେଳେ ସେ ଓମ ମେହେଟାଙ୍କଠାରୁ ଶୁଣିଲେ ଯେ ପରଦିନ ସମ୍ବାଦପତ୍ର ଅଫିସଗୁଡ଼ିକର ବିଜୁଳି ଯୋଗାଣ ବନ୍ଦ ହେବ ଏବଂ ହାଇକୋର୍ଟଗୁଡ଼ିକର ଗେଟକୁ ବନ୍ଦ କରିଦିଆଯିବ । ବିସ୍ମିତ ହୋଇ ସେ ପ୍ରଧାନମନ୍ତ୍ରୀଙ୍କୁ ଭେଟିବାକୁ ଚାହିଁଲେ ଏବଂ ଏ ଧରଣର "ଉଦ୍ଭଟ ବିଚାରଗୁଡ଼ିକୁ" ଆରମ୍ଭରେ ହିଁ ନଷ୍ଟ କରିଦେବାକୁ ଅନୁରୋଧ କଲେ । ରାୟଙ୍କ କହିବା ଅନୁସାରେ ତାଙ୍କ କଥା ଶୁଣି ଇନ୍ଦିରା "ହତଚକିତ" ରହିଗଲେ । ଘର ଭିତରକୁ ଯାଇ

ବୋଧହୁଏ ଏ ସମ୍ପର୍କରେ ସଞ୍ଜୟଙ୍କୁ ପଚାରିଲେ । ପୁଣି ଫେରିଆସି କହିଲେ, "ସିଦ୍ଧାର୍ଥ ହାଇକୋର୍ଟଗୁଡ଼ିକ ଖୋଲା ରହିବ ।" ସମ୍ବାଦପତ୍ର ଅଫିସକୁ ବିଦ୍ୟୁତକାଟ କଥା ସମ୍ପର୍କରେ ସେ କୌଣସି ସୂଚନା ଦେଲେ ନାହିଁ ।

ଧାଡ଼ିକୁ ଧାଡ଼ି ପ୍ରାୟ ସବୁ ପ୍ରମୁଖ ସମ୍ବାଦପତ୍ରର ଅଫିସ ରହିଥିବାରୁ ଦିଲ୍ଲୀର "ଫ୍ଲିଟ ଷ୍ଟ୍ରିଟ୍" ନାମରେ ପରିଚିତ ଅଞ୍ଚଳରେ ପରଦିନ ଯଥୋଚିତ ସମୟରେ ବିଜୁଳି ରହିଲା ନାହିଁ । କିନ୍ତୁ ସେତେବେଳେ ଦେଶର ରାଜଧାନୀରେ ବିଦ୍ୟୁତ ସରବରାହ ଆକସ୍ମିକ ଭାବେ ବନ୍ଦ ହେବା ଏକ ଦୈନନ୍ଦିନ ଘଟଣା । କମ୍ ବେଶି କରି ଆଜି ବି ଅବସ୍ଥା ଯଥାପୂର୍ବଂ ତଥା ପରଂ । ତେଣୁ, ବିଦ୍ୟୁତକାଟ ପାଇଁ କେହି ବିଶେଷ ଉଦ୍‌ବେଗ ପ୍ରକାଶ କଲେନାହିଁ । ବିଦ୍ୟୁତ କାଟ ଏତେ ଦୀର୍ଘ ସମୟ ଧରି ଚାଲିଲା ଯେ ପରଦିନ ସମ୍ବାଦପତ୍ରଗୁଡ଼ିକ ପ୍ରକାଶିତ ହୋଇପାରିଲା ନାହିଁ ।

ଫଳତଃ, ଯେଉଁମାନେ ଜେପି, ଦେଶାଇଙ୍କ ପରି ନିଦରେ ଶୋଇଥିଲେ, ଜରୁରୀ ପରିସ୍ଥିତି ଲାଗୁକରି ଇନ୍ଦିରା ଦେଇଥିବା ମୁଷ୍ଟିପ୍ରହାରକୁ ଜୁନ୍ ୨୬ ତାରିଖ ସକାଳ ୭.୩୦ ମିନିଟରେ ବିବିସି ବିଶ୍ୱସେବା ଦ୍ୱାରା ପ୍ରଚାରିତ ଖବରରୁ ହିଁ ଜାଣିପାରିଲେ । ଅଧଘଣ୍ଟା ପରେ ଏକ ସଂକ୍ଷିପ୍ତ ରେଡ଼ିଓ ବାର୍ତ୍ତାରେ ପ୍ରଧାନମନ୍ତ୍ରୀଙ୍କର ବିବୃତି ପ୍ରସାରିତ ହେଲା, "ରାଷ୍ଟ୍ରପତି ଦେଶରେ ଇମର୍ଜେନ୍‌ସି ଲାଗୁ କରିଛନ୍ତି । ଏଥିରେ ବିଚଳିତ ହେବାର କୌଣସି କାରଣ ନାହିଁ ।" ତେଣିକି "ବ୍ୟାପକ ଓ ଗଭୀର ଷଡ଼ଯନ୍ତ୍ର" କେମିତି "ସରକାରର ସ୍ୱାଭାବିକ କାର୍ଯ୍ୟକଳାପ ତଥା ଦେଶର ସ୍ଥିରତା" ପଥରେ ଅନ୍ତରାୟ ସୃଷ୍ଟି କରିଛି ଏବଂ "କେତେକ ମୁଷ୍ଟିମେୟ ବ୍ୟକ୍ତି ଦେଶର ସେନା ଓ ପୋଲିସକୁ କେମିତି ବିଦ୍ରୋହ କରିବାକୁ ଉସ୍‌କାଉଛନ୍ତି" ତାର ସୂଚନା ଦେଲେ ।

ପ୍ରଧାନମନ୍ତ୍ରୀଙ୍କ ବାର୍ତ୍ତା ପ୍ରସାରିତ ହେବା ଆଗରୁ ଅପ୍ରତ୍ୟାଶିତ ଭାବେ ସକାଳ ଛ'ଟା ସମୟରେ କେବିନେଟର ବୈଠକ ବସିଲା । ବୈଠକରେ ଉପସ୍ଥିତ ଅଳ୍ପ କେତେଜଣ ଅଧିକାରୀଙ୍କ ମଧ୍ୟରେ ଶାରଦା ପ୍ରସାଦ ଥିଲେ ଅନ୍ୟତମ । ତାଙ୍କ ଭାଷାରେ "ଇମର୍ଜେନ୍‌ସି ଘୋଷଣାକୁ ଏକ, ଆକବର ରୋଡ଼ ବଙ୍ଗଳାର ସେହି ନିଭୃତ କକ୍ଷରେ କେବିନେଟ ଅନୁମୋଦନ କଲାବେଳକୁ ଶୀତଳତା ସମ୍ପୂର୍ଣ୍ଣରୂପେ ଚାରିଆଡ଼େ ମାଡ଼ି ଯାଇଥାଏ । ତା' ସାଙ୍ଗକୁ ଦିନର ଆଲୁଅରେ ରାତ୍ରିର ଅନ୍ଧକାର ମଧ୍ୟ ସମାହିତ ହେଉଥାଏ ।" ଯେହେତୁ ଇମର୍ଜେନ୍‌ସି ଘୋଷଣାର ପରେ ତାକୁ କେବିନେଟର ଅନୁମୋଦନ ପାଇଁ ରଖା ହୋଇଥାଏ, ତତ୍‌କ୍ଷଣାତ୍ ତାହା ଅନୁମୋଦନ ଲାଭ କଲା । କେବଳ ପ୍ରତିରକ୍ଷା ବିଭାଗ ମନ୍ତ୍ରୀ ଅଭିଜ୍ଞ ସ୍ୱରଣ ସିଂ କେତୋଟି ଟେକନିକାଲ ପ୍ରଶ୍ନ ପଚାରିଲେ । ପରେ କେତେକ ସହଯୋଗୀଙ୍କ ଆଗରେ ସ୍ୱରଣ ସିଂ ମତଦେଲେ, "ଏ ଧରଣର ଥାନାଦାରୀ ଚଳିବ ନାହିଁ ।" ସାଙ୍ଗେ ସାଙ୍ଗେ ଖବରଟି ପ୍ରଧାନମନ୍ତ୍ରୀଙ୍କ ଆଗରେ ପହଞ୍ଚିଗଲା । ଘଟଣାର କିଛି ମାସ ଉତ୍ତାରୁ ତାଙ୍କୁ ମନ୍ତ୍ରୀମଣ୍ଡଳରୁ ଅବ୍ୟାହତି ଦିଆଗଲା । ସମସ୍ତେ ହତଚକିତ ଯେ ବଂଶୀଲାଲ ହେଲେ ତାଙ୍କ ସ୍ଥାନରେ ନୂଆ ପ୍ରତିରକ୍ଷା ମନ୍ତ୍ରୀ । ସ୍ୱଭାବତଃ ସେ ରୁକ୍ଷ ଓ କଠୋର । ହରିଆନାର ମୁଖ୍ୟମନ୍ତ୍ରୀ ଭାବରେ ସବୁ ନୀତି ନିୟମକୁ ଏଡ଼ାଇ ସେ ସଞ୍ଜୟଙ୍କର ମାରୁତି ପ୍ରକଳ୍ପକୁ

ସାହାଯ୍ୟକରି ଚର୍ଚ୍ଚାର ପରିସରକୁ ଆସିଥିଲେ । ଏବେ ସେ ହେଲେ ସଞ୍ଜୟଙ୍କର ଘନିଷ୍ଠ ସହଯୋଗୀ ଏବଂ ହାତବାରିସୀ ! ସଞ୍ଜୟଙ୍କ ଅନ୍ୟ ଏକ ପ୍ରମୁଖ ସହଯୋଗୀ ଥିଲେ ବିଦ୍ୟାଚରଣ ଶୁକ୍ଳ । ସେତେବେଳକୁ ସେ ଯୋଜନା ମନ୍ତ୍ରୀ । ମାତ୍ର ଇମର୍ଜେନ୍‌ସି ଲାଗୁ ହେଲାପରେ ହଠାତ ତାଙ୍କର ବିଭାଗ ବଦଳି ହେଲା । ଏବେ ତାଙ୍କୁ ମିଳିଲା ଇନ୍ଦ୍ରକୁମାର ଗୁଜରାଲଙ୍କ ସୂଚନା ଓ ପ୍ରସାରଣ ବିଭାଗ । ଗୁଜରାଲ ଗଲେ ଯୋଜନା ବିଭାଗକୁ । ସଞ୍ଜୟ ଆକାଶବାଣୀର ପ୍ରତ୍ୟେକଟି ସମ୍ବାଦ ବୁଲେଟିନକୁ ତଦାରଖ କରିବାପରେ ପ୍ରସାରଣ ପାଇଁ ଅନୁମତି ଦେବାକୁ ଚାହିଁଲେ । ଏହି ପ୍ରକ୍ରିୟାରେ ସେ ଭଦ୍ର ଓ ନମ୍ର ଏବଂ ଦେଶର ଜଣେ ଭବିଷ୍ୟତ ପ୍ରଧାନମନ୍ତ୍ରୀ ଗୁଜରାଲ ପ୍ରତି ଅତ୍ୟନ୍ତ ରୁକ୍ଷଭାବ ପ୍ରଦର୍ଶନ କଲେ । ଅନ୍ୟପକ୍ଷରେ ଶୁକ୍ଳ ଗଣମାଧ୍ୟମଗୁଡ଼ିକ ଉପରେ ଏମିତି ଉତ୍ସାହରେ କଟକଣା ଆରମ୍ଭକଲେ ଯେ ଲୋକ ତାଙ୍କୁ କହିଲେ, "ଭାରତର ଗୋବେଲ୍‌ସ", ହିଟଲରଙ୍କ ପ୍ରଚାର ମନ୍ତ୍ରୀ । ସଞ୍ଜୟ କୋଟେରିର କାର୍ଯ୍ୟନିର୍ବାହିକା ଅଙ୍ଗ ହେଲେ ପ୍ରଧାନମନ୍ତ୍ରୀଙ୍କ ଦୁଇଜଣ ବ୍ୟକ୍ତିଗତ ସଚିବଙ୍କ ମଧ୍ୟରୁ ଜଣେ ଆର୍.କେ. ଧାବନ । ନିଜ ସରକାରୀ ପଦବୀଠାରୁ ଖୁବ୍ ଅଧିକ ଥିଲା ତାଙ୍କର ରୁବାବ ।

ଇମର୍ଜେନ୍‌ସି ଖବର ପାଇଲାପରେ ମୋର ବ୍ୟକ୍ତିଗତ ପ୍ରତିକ୍ରିୟାରେ ଦୁଇ କିସମର ଭୟ ମିଶି ରହିଥିଲା । ଗୋଟାଏ ହେଲା ରାଗ ଏବଂ ଅନ୍ୟଟି ଦେଶର ଭବିଷ୍ୟତକୁ ନେଇ ଗଭୀର ଉଦ୍‌ବେଗ । ରାଷ୍ଟ୍ରପତିଙ୍କ ଗୋଟାଏ ଧାଡ଼ି କଲମ ଲେଖାରେ ବିଶ୍ୱର ସର୍ବବୃହତ ଗାଣତନ୍ତ୍ରିକ ଦେଶ ଭାରତ ତୃତୀୟ ବିଶ୍ୱର ଆଉ ଅନେକ ରାଷ୍ଟ୍ର ପରି ଏକଛତ୍ରବାଦର ପଦାନତ ହେଲା, ଏହି ଖବରଟି ଥିଲା ଅତ୍ୟନ୍ତ ହୃଦୟ ବିଦାରକ । ମୋର ବୃତ୍ତି ସହ ଅଭିବ୍ୟକ୍ତିର ସ୍ୱାଧୀନତା ପ୍ରଶ୍ନ ଅତିମାତ୍ରାରେ ଜଡ଼ିତ । ତେଣୁ ମୋର ଉଦବେଗ ଆହୁରି ବଢୁଥାଏ । କିନ୍ତୁ ତା'ଠାରୁ ବଡ଼ କ୍ଷୋଭର ବିଷୟ ହେଲା, ଏତେ ବଡ଼ ଏକ ବିଶାଳ ଭୂଖଣ୍ଡରେ ଇମର୍ଜେନ୍‌ସିକୁ ନେଇ ବିରୋଧ ତ ପଛକଥା, ଏପରିକି କୌଣସି ପ୍ରତିକ୍ରିୟା ବି ପ୍ରକାଶ ପାଉନଥାଏ ।

ଦୀର୍ଘ ବର୍ଷକରୁ ଉର୍ଦ୍ଧ୍ୱକାଳ ଧରି ଦେଶର ଚାରିଆଡ଼େ ଇନ୍ଦିରାଙ୍କୁ 'ଗଣତନ୍ତ୍ରର ହତ୍ୟାକାରିଣୀ' ଆଖ୍ୟା ଦେଇ ନିଶ୍ଚିହ୍ନ କରିଦେବାକୁ ରଣହୁଙ୍କାର ଦିଆଯାଉଥିଲା । ଜେପି ଏବଂ ମୋରାରଜୀ ଦୃଢ଼ ନିଶ୍ଚିତ ଥିଲେ ଯେ ଇନ୍ଦିରା ଅନ୍ତିମ ସମୟ ପାଇଁ ଦିନ ଗଣୁଛନ୍ତି । ଆଉ ଗୋଟାଏ ଧକ୍କା ଦେଲେ ଗାଦିଚ୍ୟୁତ ହେବେ । ମାତ୍ର ଜରୁରୀ ପରିସ୍ଥିତି ନାଁରେ ଯେତେବେଳେ ପ୍ରକୃତରେ ମୁଷ୍ଟିଘାତ ହେଲା ଏବଂ ଗଣତନ୍ତ୍ର ନିଶ୍ଚିହ୍ନ ହେଲାଭଳିଆ ମନେହେଲା, ପ୍ରତିବାଦର ପଦଟିଏ ସୁଦ୍ଧା କହିବାକୁ ଆଖପାଖରେ କେହି ଦେଖାଗଲେନି । ଇମର୍ଜେନ୍‌ସି ଲାଗୁ ହେଲାପରି ଏହା ମଧ୍ୟ ଥିଲା ସମପରିମାଣରେ ହୃଦୟ ବିଦାରକ । ଯେମିତି କୁହାଯାଏ ପ୍ରତିବାଦରେ କୁକୁରଟିଏ ବି ଭୁକିଲା ନାହିଁ, ବରଂ ତାର ବିପରୀତ ଇମର୍ଜେନ୍‌ସି ଅନ୍ତତଃ ଆରମ୍ଭିକ କେତୋଟି ମାସରେ ଲୋକପ୍ରିୟ ଭଳି ମନେହେଲା । ଏହି ସ୍ଥିତି ପଛରେ ଚାରୋଟି ମୁଖ୍ୟ କାରଣ ରହିଥିଲା ।

ପ୍ରଥମତଃ, ଇନ୍ଦିରାଙ୍କ ପ୍ରତି ସହାନୁଭୂତି ରଖି ନଥିବା ଅନେକ ଲୋକ ମଧ୍ୟ ଜନଜୀବନ

ସାମାନ୍ୟ ହେଲା ପରେ ଅତ୍ୟନ୍ତ ଆଶ୍ୱସ୍ତ ଅନୁଭବ କଲେ । ଜେପି ଆନ୍ଦୋଳନ ସମୟରେ ଚାଲିଥିବା ନିତିଦିନିଆ ବିଶୃଙ୍ଖଳା ସମସ୍ତଙ୍କୁ ଅସ୍ତବ୍ୟସ୍ତ କରି ପକାଇଥିଲା । ଏଣିକି ସରକାରୀ କର୍ମଚାରୀମାନେ ଠିକ୍ ସମୟରେ ଅଫିସକୁ ଆସିଲେ, ଅଫିସ କାମକୁ ପ୍ରାଥମିକତା ମିଳିଲା, ତଥା ଚା'ପାନ ବିରତିର ଅବଧି ମଧ୍ୟ ହ୍ରାସ ପାଇଲା । ପ୍ରଧାନମନ୍ତ୍ରୀଙ୍କ ପ୍ରଚାରକମାନେ ଏହି ବାସ୍ତବିକତାକୁ ଖୁବ୍ ବଡ଼ ପାଟିରେ ପ୍ରଚାର ପ୍ରସାର କଲେ । ସେମାନଙ୍କ ମଧ୍ୟରୁ କେତେଜଣ ବାହାଦୁରୀ ମାରି କହିଲେ, "ଟ୍ରେନମାନେ ନିର୍ଦ୍ଧାରିତ ସମୟରେ ଚାଲିଛନ୍ତି ।" ବୋଧହୁଏ, ସେମାନଙ୍କୁ ଜଣାନାହିଁ ଯେ ଇଟାଲୀରେ ମୁସୋଲିନି ବି ଏମିତି ଗର୍ବ କଥା କରୁଥିଲେ । କିଛି ମାସ ପରେ ଅବଶ୍ୟ ଅବସ୍ଥା ଖରାପ ଆଡ଼କୁ ଗତି କଲା । ଲୋକଙ୍କ ଦୃଷ୍ଟିରେ ଇମର୍ଜେନ୍‌ସିର ଡ଼ିଣ୍ଡିମ ପିଟାଯାଉଥିବା "ଲାଭ" ଅପେକ୍ଷା କଷ୍ଟର ପରିମାଣ ଖୁବ୍ ଅଧିକ ମନେହେଲା ।

ଦ୍ୱିତୀୟତଃ, ଅନେକ ଲୋକ ଏକଛତ୍ରବାଦୀ ଶାସନକୁ ଘୃଣା କରୁଥିଲେ । ଅଥଚ କେତେ ସମୟ ଧରି ତାହା ଲାଗୁ ରହିବ ସେ ନେଇ ଆଦୌ ନିଶ୍ଚିତ ନଥିଲେ । କ୍ଷୋଭରେ ସେମାନେ ବ୍ୟକ୍ତିଗତ ସ୍ତରରେ ନିଜର ଅସମ୍ମତି ପ୍ରକାଶ କରୁଥିଲେ ସିନା ଇମର୍ଜେନ୍‌ସି ଶାସନର ବିରୁଦ୍ଧରେ ଭୟରେ ଖୋଲାଖୋଲି କିଛି କହୁ ନଥିଲେ ।

ତୃତୀୟତଃ, ଦୁଃଖର କଥା ଯେ ଜେପି ଆନ୍ଦୋଳନର ମୁଖ୍ୟ ସମର୍ଥକ ସାଜିଥିବା ଅନେକ ବ୍ୟକ୍ତି ମଧ୍ୟ ଇମର୍ଜେନ୍‌ସି ଲାଗୁ ହେଲାକ୍ଷଣି ଖୁସିରେ ପକ୍ଷ ପରିବର୍ତ୍ତନ କରି ଇନ୍ଦିରାଙ୍କ ଗୁଣଗାନ ଆରମ୍ଭ କରିଦେଲେ । ପ୍ରସିଦ୍ଧ ଭାରତୀୟ ଚିତ୍ରକର ମକବୁଲ ଫିଦା ହୁସେନ ହେଲେ ସେ ଧରଣର ଜଣେ ବ୍ୟକ୍ତି । ସବୁଠାରୁ ବେଶୀ ମୂଲ୍ୟରେ ହୁସେନଙ୍କ ଚିତ୍ର ବିକ୍ରି ହୁଏ । ଆଜି ୯୦ ବର୍ଷ ବୟସରେ ବି ସେ ଜଣେ ଖୁବ୍ ରଙ୍ଗୀନ ମିଜାଜର ବ୍ୟକ୍ତିତ୍ୱ । ଧଳା ଦାଢ଼ି ଧରିବା ଏବଂ ଥଣ୍ଡା ହେଉ ବା ଗରମ, ଖାଲି ପାଦରେ ଚାଲିବା ହେଲା ତାଙ୍କର ନିଶା । ୧୯୭୫ ମାର୍ଚ୍ଚ ମାସରେ ଜେପିଙ୍କର ପ୍ରସିଦ୍ଧ ପାର୍ଲିଆମେଣ୍ଟ ପଦଯାତ୍ରା ଯେତେବେଳେ ଆରମ୍ଭ ହେଲା, ତାର ସବା ଆଗ ଧାଡ଼ିରେ ଚାଲୁଥିଲେ ହୁସେନ ।

ଚତୁର୍ଥ ଏବଂ ଅନ୍ତିମ କାରଣଟି ମଧ୍ୟ କମ୍ ମହତ୍ତ୍ୱପୂର୍ଣ୍ଣ ନୁହେଁ । ଦିଲ୍ଲୀର ତୁର୍କମାନ ଗେଟର ଘଟଣା ଓ କିଛି ବିଶିଷ୍ଟ ଓକିଲ, ଅଧ୍ୟାପକ ଏବଂ ସାମ୍ବାଦିକଙ୍କ ଦ୍ୱାରା ୪୨ତମ ସମ୍ବିଧାନ ସଂଶୋଧନର ପ୍ରତିବାଦରେ ଆୟୋଜିତ ସେମିନାରକୁ ବାଦ ଦେଲେ, ଇମର୍ଜେନ୍‌ସିର ବିରୋଧରେ ପ୍ରାୟ ସେମିତି କିଛି ହୋଇନାହିଁ । ମୋରାରଜୀ ଦେଶାଇଙ୍କ ଭାଷାରେ ଇନ୍ଦିରା ହେଲେ "ଶୟତାନର ସନ୍ତାନ" । ମାତ୍ର ଲୋକଙ୍କର ବିଶ୍ୱାସରେ ଇମର୍ଜେନ୍‌ସି ହେଲା ଏକ ସ୍ୱଳ୍ପକାଳୀନ ବ୍ୟବସ୍ଥା । "ଯେତେ ଶୀଘ୍ର ସମ୍ଭବ" ତାକୁ ଉଠାଇ ଦିଆଯିବ । ଇନ୍ଦିରାଙ୍କର ପ୍ରତିଶ୍ରୁତି ଉପରେ ଲୋକଙ୍କର ଗଭୀର ବିଶ୍ୱାସ ରହିଥିଲା । ଗଣତନ୍ତ୍ର "ବିପଥଗାମୀ ହୋଇଥିବାରୁ, ସେ କେବଳ ଉଚିତ ମାର୍ଗ ପ୍ରଦର୍ଶନ କରିବାକୁ ପ୍ରୟାସ କରୁଥିଲେ ।" ଇନ୍ଦିରାଙ୍କ ଏହି ଦାବିକୁ ଲୋକ ସତ ମଣୁଥିଲେ ।

ଇମର୍ଜେନ୍‌ସି ଲାଗୁ ହେଲାକ୍ଷଣି ହୁସେନ ଏକ ପ୍ରକାଣ୍ଡ ତୈଳଚିତ୍ର ଆଙ୍କିଲେ । ଚିତ୍ରରେ

ଇନ୍ଦିରା ଗାନ୍ଧି ଦେବୀ ଦୁର୍ଗା ବେଶରେ ବ୍ୟାଘ୍ର ବାହନରେ ତାଙ୍କ କୁଟିଳ ଶତ୍ରୁପକ୍ଷକୁ ବିନାଶ କରୁଥିଲେ । କଳା ଦୃଷ୍ଟିରୁ ଚିତ୍ରଟିକୁ କେବେ ପ୍ରସିଦ୍ଧି ମିଳି ନପାରେ । ମାତ୍ର ଇନ୍ଦିରାଙ୍କର ପ୍ରଚାରକମାନଙ୍କୁ ନେତ୍ରୀଙ୍କର ଛବି ସୁଧାରିବା ପାଇଁ ଏହା ଏକ ବଡ଼ ଅବସର ପ୍ରଦାନ କଲା । ଏଥିରୁ ଜଣାପଡ଼େ ଯେ ଆମେ ଭାରତୀୟମାନେ ଅତିଶୀଘ୍ର ଅରାଜକତା ଆଗରେ ମୁଣ୍ଡ ନୁଆଁନ୍ତି, ଠିକ୍ ସେମିତି କର୍ତ୍ତୃପକ୍ଷଙ୍କ ଆଗରେ ମଧ୍ୟ ହାତ ଯୋଡ଼ି ପକାନ୍ତି । ଅନ୍ୟପକ୍ଷରେ ଏହା ମଧ୍ୟ ଉଲ୍ଲେଖଯୋଗ୍ୟ ଯେ ଇମର୍ଜେନ୍‌ସି ଆଗରେ ଲୋକ ଅନାଗ୍ରହରେ ମୁଣ୍ଡ ପାତିଥିଲେ । ପ୍ରଧାନମନ୍ତ୍ରୀଙ୍କ ସମର୍ଥକମାନେ ସମସ୍ତ ଚେଷ୍ଟା ସତ୍ତ୍ୱେ ଲୋକଙ୍କର ସକ୍ରିୟ କିମ୍ୱା ଖୋଲାଖୋଲି ପ୍ରତ୍ୟକ୍ଷ ସମର୍ଥନ ହାସଲ କରିପାରିଲେ ନାହିଁ ।

ଇନ୍ଦିରାଙ୍କ ଇମର୍ଜେନ୍‌ସିକୁ ଆଭ୍ୟନ୍ତରୀଣ ପ୍ରତିକ୍ରିୟା ଯାହାଥିଲା, ତା'ଠାରୁ ଭିନ୍ନ ଥିଲା ଆନ୍ତର୍ଜାତିକ ପ୍ରତିକ୍ରିୟା । ପପୁଲ ଜୟକାର ମାତ୍ର କିଛି ଘଣ୍ଟା ଆଗରୁ ନ୍ୟୁୟର୍କରେ ପହଞ୍ଚିଥିଲେ । ତାଙ୍କୁ ନିଦରୁ ଉଠାଇ ତାଙ୍କ ବନ୍ଧୁ ଡରୋଥି ନର୍ମାନ, ଯିଏ ଇନ୍ଦିରାଙ୍କ ମଧ୍ୟ ଜଣେ ବନ୍ଧୁ, ଅତ୍ୟନ୍ତ ବିଚଳିତ କଣ୍ଠରେ ଘଟଣା ସମ୍ପର୍କରେ ସୂଚନା ଦେଲେ । ଭାରତର ଅନ୍ୟାନ୍ୟ ଆମେରିକୀୟ ବନ୍ଧୁମାନେ ନିରନ୍ତର ସେମାନଙ୍କର ବିସ୍ମୟ ଓ ଭୟ ଡରୋଥିଙ୍କ ଆଗରେ ପ୍ରକାଶ କରୁଥାନ୍ତି । ଡରୋଥି ଓ ଅନ୍ୟମାନେ ମିଶି ଇନ୍ଦିରାଙ୍କୁ ଇମର୍ଜେନ୍‌ସି ପ୍ରତ୍ୟାହାର କରିଦେବାକୁ ଖୋଲା ଅପିଲ କଲେ । ଜୟକାର ଶେଷରେ ପ୍ରଧାନମନ୍ତ୍ରୀଙ୍କ ସାଙ୍ଗରେ ଟେଲିଫୋନରେ କଥାବାର୍ତ୍ତା କରିବାର ଅବସର ପାଇଲେ । ଦିଲ୍ଲୀରୁ ଜୟକାରଙ୍କୁ ଅଯଥା ବିଚଳିତ ନ ହେବାକୁ ପରାମର୍ଶ ମିଳିଲା । ଇମର୍ଜେନ୍‌ସିର ସମାଲୋଚକମାନଙ୍କ ପ୍ରଶ୍ନର ଉତ୍ତର ଦେବାପାଇଁ ଏକ ନୋଟ ମଧ୍ୟ ତାଙ୍କ ପାଖରେ ପହଞ୍ଚିଲା । ମାତ୍ର ଆମେରିକୀୟ ବନ୍ଧୁମାନଙ୍କର ଆଶଙ୍କା ଦୂର କରିବାରେ ଏହା ବିଶେଷ ସହାୟକ ସିଦ୍ଧ ହେଲାନାହିଁ ।

ସ୍ୱଦେଶକୁ ଫେରିଲା ପରେ ଜୟକାର ଦେଖିଲେ ଯେ ଦିଲ୍ଲୀର ଚାରିଆଡ଼େ "ଦୌରାତ୍ମ୍ୟ, ଗିରଫଦାରୀ, ଅନଶନ, ବନ୍ଦୀମାନଙ୍କର ହତ୍ୟାର ଗୁଜବ" । "ଅତ୍ୟନ୍ତ ବିଚଳିତ" ହୋଇ ସେ ଇନ୍ଦିରାଙ୍କୁ ଜଣାଇଦେଲେ ଯେ ଦିଲ୍ଲୀ 'ଭୟର ନଗରୀ'ରେ ପରିଣତ ହୋଇଯାଇଛି । "ଜବାହରଲାଲଙ୍କ କନ୍ୟା ଭାବରେ ସେ ସ୍ଥିତିକୁ ସୁଧାରିବା ପାଇଁ ଉଚିତ ପଦକ୍ଷେପ ନେବା ଉଚିତ ।" ଇନ୍ଦିରା ଉତ୍ତର ଦେଲେ, "ତୁମେ ଅବସ୍ଥା କେତେ ଗୁରୁତର ହୋଇଯାଇଥିଲା, ତାହା ଜାଣିନାହଁ । ମୋ ବିରୁଦ୍ଧରେ ଚାଲିଥିବା ଷଡ଼ଯନ୍ତ୍ର ସମ୍ବନ୍ଧରେ ତୁମକୁ କିଛି ଜଣାନାହିଁ ।"

## ସଞ୍ଜୟ ଗାନ୍ଧିଙ୍କର ଅଭ୍ୟୁତ୍‌ଥାନ

ଜୟକାର ଯେତେଶୀଘ୍ର ସମ୍ଭବ ଇମର୍ଜେନ୍‌ସି ଉଠାଇ ଦେବାପାଇଁ ଇନ୍ଦିରାଙ୍କୁ ପରାମର୍ଶ ଦେଇଥିଲେ ସିନା ମୋଟାମୋଟି ଭାବେ ସେ ତାଙ୍କୁ ସମର୍ଥନ ମଧ୍ୟ କରୁଥିଲେ । କିନ୍ତୁ ତହିଁରେ ସଞ୍ଜୟ ଗାନ୍ଧିଙ୍କର "ସମ୍ବିଧାନ ବହିର୍ଭୂତ କର୍ତ୍ତୃତ୍ୱ"କୁ ସେ ଆଦୌ ପସନ୍ଦ କରୁନଥିଲେ । ଇନ୍ଦିରାଙ୍କ ମୃତ୍ୟୁପରେ,

ସେ ଲେଖିଛନ୍ତି ଯେ, "ସ୍କୁଲ ଡ୍ରପ ଆଉଟ" ସଞ୍ଜୟ ଦେଶକୁ "ନିଜ ପରିବାରର ଜମିଦାରୀ" ବୋଲି ମନେ କରୁଥିଲେ । କିନ୍ତୁ ଏଭଳି ଅପ୍ରିୟ ମତ ନିଜ ବାନ୍ଧବୀଙ୍କ ପ୍ରିୟ ପୁତ୍ର ସମ୍ପର୍କରେ ବା ସେ ଦିଅନ୍ତେ କେତେବେଳେ ? ଇନ୍ଦିରା ମଧ୍ୟ ସଞ୍ଜୟଙ୍କ ସମାଲୋଚନା ଶୁଣିବାକୁ ଆଦୌ ପ୍ରସ୍ତୁତ ନଥିଲେ । ଗୁରୁତ୍ୱ ଦେବା ତ ପଛକଥା, ପି.ଏନ୍. ହକସର ଯେତେବେଳେ ପରାମର୍ଶ ଦେଲେ ଯେ ପ୍ରଧାନମନ୍ତ୍ରୀ ନିବାସରେ ରହି ସଞ୍ଜୟ ବ୍ୟାପାରିକ କାର୍ଯ୍ୟରେ ସଂଶ୍ଳିଷ୍ଟ ହେବା କଥା ନୁହେଁ, ତାଙ୍କୁ କୋପାଗ୍ନିର ଶିକାର ହେବାକୁ ପଡ଼ିଲା । ଏହିସବୁ କାରଣରୁ ସଞ୍ଜୟଙ୍କର ଆକସ୍ମିକ ଉତ୍‌ଥାନରେ କୌଣସି ବାଧା ରହିଲା ନାହିଁ । ଇମ୍‌ର୍ଜେନ୍‌ସି ଲାଗୁ ହେଲାକ୍ଷଣି ନିର୍ବିବାଦରେ ସଞ୍ଜୟ ହିଁ ହେଲେ ଦେଶର ଦ୍ୱିତୀୟ ମହତ୍ତ୍ୱପୂର୍ଣ୍ଣ ବ୍ୟକ୍ତି । ଯଥୋଚିତ ସମୟରେ ସେ ହିଁ ହୋଇଥାନ୍ତେ ମା'ଙ୍କର ଉତ୍ତରାଧିକାରୀ । କଂଗ୍ରେସ ଦଳର ଚରିତ୍ର ଯାହା, ଏଥିରେ କୌଣସି ଅସ୍ୱାଭାବିକତା ଦୃଷ୍ଟିଗୋଚର ହେଉ ନଥିଲା ।

ସଞ୍ଜୟଙ୍କର ରୁକ୍ଷ ଓ କର୍କଶ ବ୍ୟବହାର ସତ୍ତ୍ୱେ, ତାଙ୍କ ମା'ଙ୍କର ସହକର୍ମୀ ଏବଂ ପୁରୁଖା ଦଳୀୟ ନେତାମାନେ ତାଙ୍କୁ ଆଦର କରିବାକୁ ଲାଗିଲେ । ମୁଖ୍ୟମନ୍ତ୍ରୀମାନେ ତାଙ୍କୁ ନିଜ ନିଜ ରାଜ୍ୟକୁ ନିମନ୍ତ୍ରଣ କରି ଅଭିନନ୍ଦନ ଦେବାପାଇଁ ବିଶାଳ ଆୟୋଜନ କରିବାକୁ ପ୍ରତିଯୋଗିତା ଆରମ୍ଭ କରିଦେଲେ । ମନ୍ତ୍ରୀ, ସାଂସଦ ଏବଂ ବରିଷ୍ଠ ଅଧିକାରୀମାନେ ତାଙ୍କ ଆଦେଶ ମାନିବାକୁ ତଥା ତାଙ୍କର କୃପାପାତ୍ର ହେବାପାଇଁ ନିଜ ନିଜ ଭିତରେ ପ୍ରତିଯୋଗିତା କରୁଥିଲେ । ଇମର୍ଜେନ୍‌ସିକୁ ସମର୍ଥନ କରୁଥିବା ସମ୍ବାଦପତ୍ର ସଞ୍ଜୟଙ୍କ ଭାବମୂର୍ତ୍ତି ନିର୍ମାଣରେ ପୂର୍ଣ୍ଣ ସହଯୋଗ କଲେ । ଭାରତ କ୍ରମଶଃ "ଏକ ଉଦିତ ପୁତ୍ରର ଦେଶ"ରେ ରୂପାନ୍ତରିତ ହେବାକୁ ଆରମ୍ଭ କଲା ।

ପାଖ କଲୋନୀର ମୋଟର ଗେରେଜରେ ମରାମତି ହେବାକୁ ରଖା ହୋଇଥିବା କାରଗୁଡ଼ିକୁ ଖଞ୍ଜାଖଞ୍ଜି କରି ସମୟ କାଟୁଥିବା ସମୟରେ ସଞ୍ଜୟ ଅନେକଗୁଡ଼ିଏ ଅଭଦ୍ର, ଅମାର୍ଜିତ, ଫାଇଟ୍ସ, ବାଜେ ଧରଣର ବ୍ୟକ୍ତିଙ୍କ ସାଙ୍ଗରେ ବନ୍ଧୁତା କରିଥିଲେ । କ୍ଷମତା ଓ ଗୌରବର ଅଧିକାରୀ ହେବାପରେ ସେସବୁ ସାଙ୍ଗସାଥୀ ଏବେ ତାଙ୍କ ପାଖରେ ବେଢ଼ିଗଲେ ; ବାହୁବଳ ଦେଖାଇ ନିଜର ଆନୁଗତ୍ୟ ପ୍ରମାଣ କଲେ ; ସାଙ୍ଗରେ ପାଖ ଲୋକ ବୋଲି କହି ପ୍ରଭୂତ ଅର୍ଥ ଉପାର୍ଜନ ମଧ୍ୟ କଲେ । ଗୁଣ୍ଡାଶ୍ରେଣୀର ଏହି ଗୋଷ୍ଠୀ ସଞ୍ଜୟଙ୍କ ନେତୃତ୍ୱରେ ପରିଚାଳିତ ଯୁବକଂଗ୍ରେସର ମଧ୍ୟ ହର୍ତ୍ତାକର୍ତ୍ତା ସାଜିଲେ ।

ପୁଅ ଯେତେବେଳେ ନିଜ ସମର୍ଥନର ଆଧାରକୁ ପୁଞ୍ଜିଭୂତ କରୁଥିଲେ, ଇନ୍ଦିରା ଦେଶକୁ ବୁଝାଇବାକୁ ଚେଷ୍ଟାକଲେ ଯେ ଇମର୍ଜେନ୍‌ସି "ଆମର ଆର୍ଥିକ ଲକ୍ଷ୍ୟ ପୂରଣ କରିବା ସକାଶେ ନୂଆ ଅବସର ପ୍ରଦାନ କରିଛି ।" ତା'ପାଇଁ ସେ ବିଂଶସୂତ୍ରୀ କାର୍ଯ୍ୟକ୍ରମ ଘୋଷଣା କଲେ । ପ୍ରତ୍ୟେକସ୍ତରର ଲୋକଙ୍କ ପାଇଁ କାର୍ଯ୍ୟକ୍ରମରେ କିଛି ନା କିଛି ଉପାଦାନ ରହିଥିଲା । ମାତ୍ର ତଦ୍ୱାରା ବିଶେଷ କିଛି ଅଗ୍ରଗତି ସମ୍ଭବପର ହେଲାନାହିଁ, କାରଣ କାର୍ଯ୍ୟକାରୀ ହୋଇ ପାରିନଥିବା ଅନେକ ପୁରୁଣା କାର୍ଯ୍ୟକ୍ରମର ଏହା ଥିଲା ଏକ ଅଭିନବ ନକଲ ମାତ୍ର । ତା' ସତ୍ତ୍ୱେ ସେଥିରେ

ଦୁଇଟି ଏମିତି କଳ୍ପନାଶୀଳ ଉପାଦାନ ରହିଥିଲା, ଯାହାକୁ ପାଇ ଅନ୍ୟ ସମୟ ହୋଇଥିଲେ ଲୋକ ଖୁବ୍ ଲାଭାନ୍ୱିତ ହୋଇଥାନ୍ତେ । ପ୍ରଥମଟି ହେଲା - "ବନ୍ଧୁଆ ମଜଦୁର"ର ପର୍ଯ୍ୟାୟକ୍ରମେ ମୁକ୍ତି କାର୍ଯ୍ୟକ୍ରମ, ଅନ୍ୟଟି ହେଲା ଗ୍ରାମୀଣ ଦରିଦ୍ରଙ୍କ ମଧ୍ୟରେ ଦରିଦ୍ରତମ ବ୍ୟକ୍ତିଙ୍କୁ ମହାଜନ ଦାଉରୁ ଋଣମୁକ୍ତି କାର୍ଯ୍ୟକ୍ରମ । ମାତ୍ର ଦୁଃଖର କଥା ଯେ ସମୟ ସହାୟ ହେଲାନାହିଁ । ଅନେକ ଲୋକଙ୍କ ମତରେ, ଇମର୍ଜେନ୍‌ସି ଓ ତାର ଅତ୍ୟାଚାରରୁ ଲୋକଙ୍କୁ ଭୁଲେଇବା ସକାଶେ ଇନ୍ଦିରାଙ୍କ "ଆର୍ଥିକ ଘୋଷଣାପତ୍ର" ଉଦ୍ଦିଷ୍ଟ ଥିଲା ।

ଇନ୍ଦିରାଙ୍କର ବିଂଶସୂତ୍ରୀ କାର୍ଯ୍ୟକ୍ରମରେ ସଂଜୟ ଗାନ୍ଧି ମଧ୍ୟ ତାଙ୍କର ପାଞ୍ଚସୂତ୍ରୀ କାର୍ଯ୍ୟକ୍ରମକୁ ସାମିଲ କରିଦେଲେ । "ଦୁଇଟି ସନ୍ତାନରୁ ଅଧିକ ନୁହେଁ ; ପୌଢ଼ଶିକ୍ଷା ('ଜଣେ ଜଣକୁ ପଢ଼ାଅ') । ବାହାଘର ପାଇଁ ଯୌତୁକ ଦାବି ବା ଗ୍ରହଣ କରନାହିଁ", ଝୋପଡ଼ି ହଟାଅ ; ଏବଂ ବୃକ୍ଷରୋପଣ କର ।" ପାଞ୍ଚ ଦଫା କାର୍ଯ୍ୟକ୍ରମ ଦ୍ୱାରା ସଂଜୟ ଗାନ୍ଧି ଅବଶ୍ୟ ଦେଶର କେତେଗୋଟି ବଡ଼ ଆବଶ୍ୟକତାକୁ ପୂରଣ କରିବାପାଇଁ ପ୍ରୟାସ କରୁଥିଲେ । ମାତ୍ର ଏକବିଂଶ ଶତାବ୍ଦୀରେ ଭାରତର ଶାସନଭାର ବହନ କରିବାପାଇଁ ପ୍ରସ୍ତୁତି କରୁଥିବା ଜଣେ ଯୁବକ ପାଇଁ ମୋଟାମୋଟି ଭାବରେ ଦେଖିଲେ ଏସବୁ ନିହାତି ନିର୍ବୋଧତା ବୋଲି କୁହାଯାଇପାରେ ।

ସଞ୍ଜୟଙ୍କର ପ୍ରିୟତମ କାର୍ଯ୍ୟକ୍ରମ ଥିଲା ଜନସଂଖ୍ୟା ନିୟନ୍ତ୍ରଣ । ଝୋପଡ଼ି ବସ୍ତି ଇଲାକା ସଫା କରିବା ଅର୍ଥାତ୍ ସହରର "ସୁନ୍ଦରୀକରଣ" କାର୍ଯ୍ୟକ୍ରମ ସାଙ୍ଗରେ ମିଶି ଇନ୍ଦିରାଙ୍କର ରାଜନୈତିକ ଅଧୋପତନ ପାଇଁ ଏହା ପ୍ରମୁଖ କାରଣ ହେଲା । ସଞ୍ଜୟଙ୍କର ଆନୁଗତ୍ୟ ଲାଭକରି ଜନସଂଖ୍ୟା ନିୟନ୍ତ୍ରଣ ବା କାର୍ଯ୍ୟକ୍ରମ ଅତି ଜୋରସୋରରେ ଚାଲିଲା । କେଉଁଠି ଯୁବକମାନଙ୍କୁ ତ ଆଉ କେଉଁଠି ବୟସ୍କମାନଙ୍କୁ ଘରୁ ଜୋରଜବରଦସ୍ତି ଭିଡ଼ିଆଣି ସେମାନଙ୍କର ବନ୍ଧ୍ୟାକରଣ କରିଦିଆଗଲା । କାହିଁ କେଉଁଠି ସେମାନଙ୍କୁ ବସ୍‌ରୁ ଓହ୍ଲାଇ ଦେଇ ଖାସ୍ସି କରିଦିଆଗଲା । ଅବଶ୍ୟ ଅନେକ ଖବର ଏ ଭିତରୁ ଅତିଶୟୋକ୍ତି ଏବଂ ଗୁଜବ ଶ୍ରେଣୀର । ଇନ୍ଦିରା କେବେ ଚାହୁଁନଥିଲେ ଏ ଧରଣର ଅତ୍ୟାଚାର ହେଉ । ତଥାପି କ୍ଷମତାର ଏତେଗୁଡ଼ାଏ ରୂପକୁ ସେ ଦେଖିପାରୁ ନଥିଲେ । ଦିଲ୍ଲୀ ଏବଂ ଉତ୍ତର ଭାରତର ଅନ୍ୟାନ୍ୟ ସ୍ଥାନରେ ପୋଲିସ କନଷ୍ଟେବଲ, ମ୍ୟୁନସିପାଲଟି ଇନସ୍‌ପେକ୍ଟର, ଶିକ୍ଷକ, ଡ଼ାକ୍ତର ତଥା ନର୍ସ ଆଦି ସାଧାରଣ କର୍ମଚାରୀମାନଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା ଯେ ନିର୍ଦ୍ଦିଷ୍ଟ ସଂଖ୍ୟକ ଲୋକଙ୍କୁ ବନ୍ଧ୍ୟାକରଣ ପାଇଁ ଉତ୍ସାହିତ ନକଲେ ସେମାନଙ୍କୁ ମାସ ଶେଷକୁ ଦରମା ମିଳିବ ନାହିଁ । ନିଜ ନିଜ ଅଞ୍ଚଳରେ ଛୋଟ ଜାର ଶାସକ ପରି ଅଧିକାର ଭୋଗ କରୁଥିବା କର୍ମଚାରୀଙ୍କୁ ବନ୍ଧ୍ୟାକରଣ ପାଇଁ ସହଯୋଗ ମାଗିବା ଅର୍ଥ ଜନସାଧାରଣଙ୍କ ଉପରେ ଜୋରଜବରଦସ୍ତି କରିବା । ଅବସୋସର କଥା ଯେ ଗରିବ ଏବଂ ଅଶିକ୍ଷିତ ଲୋକ ହିଁ ବନ୍ଧ୍ୟାକରଣ କାର୍ଯ୍ୟକ୍ରମର ପ୍ରମୁଖ ଶିକାର ହେଲେ । ହରିଜନ ଓ ମୁସଲମାନଙ୍କ ସଂଖ୍ୟା ଏ ଧରଣର ପ୍ରଶାସନ ପ୍ରପାଡ଼ିତଙ୍କ ମଧ୍ୟରେ ଖୁବ୍ ବେଶି । ୧୯୭୧ ମସିହା ନିର୍ବାଚନରେ ସେମାନେ ହିଁ ଇନ୍ଦିରା ଗାନ୍ଧିଙ୍କୁ ସମ୍ମିଳିତ ଭାବେ ଭୋଟ ଦେଇ କ୍ଷମତା

ଅର୍ପଣ କରିଥିଲେ । ଏବେ ସେମାନଙ୍କୁ ହିଁ କଷ୍ଟ ଭୋଗିବାକୁ ପଡ଼ିଲା ।

ସେ ଯାହାହେଉ ଇମର୍ଜେନ୍‌ସି ଲାଗୁ ରହିଥିବା ଯାକେ ଏବଂ ଗଣମାଧ୍ୟମଗୁଡ଼ିକ ଉପରେ କଟକଣା ଅବ୍ୟାହତ ଥିବା ପର୍ଯ୍ୟନ୍ତ ସଞ୍ଜୟ ଗାନ୍ଧିଙ୍କ ପାଇଁ କୌଣସି ବିଶେଷ ଚିନ୍ତାର କାରଣ ନଥିଲା । (ସେତେବେଳକୁ ଟେଲିଭିଜନ ମଧ୍ୟ ଆସି ନଥିଲା । କେବଳ ସମ୍ପୂର୍ଣ୍ଣ ସରକାରୀ ନିୟନ୍ତ୍ରଣରେ ପରୀକ୍ଷାମୂଳକ ଭାବେ ଦୂରଦର୍ଶନ ଆରମ୍ଭ ହୋଇଥାଏ ।) ପୁଅ ନାଁରେ ଯେତେଯାହା ଅଭିଯୋଗ ଆସିଲା ତାକୁ ମା' ମଧ୍ୟ କର୍ଣ୍ଣପାତ କଲେନାହିଁ । ସମ୍ମାନୀୟ ବ୍ୟକ୍ତିମାନେ ମଧ୍ୟ ସତର୍କ କରିବାକୁ ଚେଷ୍ଟା କଲେ । ହେଲେ ସେ ଆଦୌ ଶୁଣିଲେ ନାହିଁ ।

ଲୋକଙ୍କର ପୁଞ୍ଜିଭୁତ କ୍ରୋଧ ସେତେବେଳେ ପ୍ରକାଶ ପାଇଲା ଯେତେବେଳେ ଇନ୍ଦିରା ନିର୍ବାଚନ ଘୋଷଣା କଲେ ଏବଂ ଇମର୍ଜେନ୍‌ସି କୋହଳ କରିବାକୁ ନିଷ୍ପତ୍ତି ନେଲେ । ଇମର୍ଜେନ୍‌ସିରେ ୧୧୦,୦୦୦ ଲୋକଙ୍କୁ ବନ୍ଦୀ ଭାବରେ ରଖାଯାଇଥିଲା । ଆଉ ଅନେକ ଅତ୍ୟାଚାର ବି ହୋଇଥିଲା । ମାତ୍ର ବନ୍ଧ୍ୟାକରଣ ସମସ୍ତଙ୍କୁ ବାଜିଗଲା । କଂଗ୍ରେସ ଦଳର ଶୋଚନୀୟ ପରାଜୟ ପାଇଁ ଏହା ପ୍ରମୁଖ କାରଣ ହେଲା ।

## ସାମ୍ବିଧାନିକ ପରିବର୍ତ୍ତନ

ପାର୍ଲ୍ୟାମେଣ୍ଟକୁ ଇମର୍ଜେନ୍‌ସି ଗୋଟାଏ ରବର ଷ୍ଟାମ୍ପରେ ପରିଣତ କରିଦେଲା । ବିରୋଧୀଦଳ ନେତାମାନେ ଜେଲରେ ରହିଲେ । ଯେଉଁ କେତେକ ନେତା ବାହାରେ ଥିଲେ ସେମାନେ ବିଶେଷ ବାକବିତଣ୍ଡା କରିପାରିଲେ ନାହିଁ । ମାତ୍ର ସେମାନେ ଯାହା ବି କହୁଥିଲେ ତାହା କଟକଣା ଯୋଗୁଁ ସମ୍ବାଦପତ୍ରରେ ପ୍ରକାଶିତ ହେଲାନାହିଁ । ଇମର୍ଜେନ୍‌ସି ଲାଗୁ ହେବାର ଷାଠିଏ ଦିନ ଭିତରେ ତାକୁ ପାର୍ଲ୍ୟାମେଣ୍ଟର ଅନୁମୋଦନ ମିଳିବା କଥା । ସେହି କାର୍ଯ୍ୟ ଅତି ସହଜରେ ସମ୍ପାଦିତ ହେଲା । ତେଣିକି ପାର୍ଲ୍ୟାମେଣ୍ଟରେ ଗୋଟାକ ପରେ ଗୋଟାଏ କରି ଅନେକଗୁଡ଼ିଏ ସାମ୍ବିଧାନିକ ସଂଶୋଧନ କରାଗଲା ।

୧୯ ମାସର ଜରୁରୀ ପରିସ୍ଥିତି ମଧ୍ୟରେ ଯାହା ପରିବର୍ତ୍ତନ କରାଯାଉଥାଏ, ତାକୁ ସାମ୍ବିଧାନିକ ପରିଧି ଭିତରେ ରଖିବାକୁ ସର୍ବଦା ଇନ୍ଦିରା ଚେଷ୍ଟା କରୁଥାନ୍ତି । ତେଣିକି ପରିବର୍ତ୍ତନକୁ ଲୋକସ୍ୱୀକୃତି ମିଳିବାରେ ସୁବିଧା ହେବ । ତା' ସତ୍ତ୍ୱେ, ଖୁବ୍ ତରବରରେ ଅନେଗୁଡ଼ିଏ ସାମ୍ବିଧାନିକ ସଂଶୋଧନ ପାଇଁ ଯେମିତି ଭାଗଦୌଡ଼ ଆରମ୍ଭ ହେଲା । ପ୍ରଥମ ସଂଶୋଧନ ହେଲା ଏଣିକି ଜରୁରୀ ପରିସ୍ଥିତି ଘୋଷଣା ଏବଂ ସେ ନେଇ ବିଜ୍ଞପ୍ତି ଜାରି ପ୍ରସଙ୍ଗ କଚେରିକୁ ଅଣାଯାଇ ପାରିବ ନାହିଁ । ଇନ୍ଦିରା ଲୋକପ୍ରତିନିଧି ଆଇନକୁ ମଧ୍ୟ ସଂଶୋଧନ କଲେ । ତା' ସାଙ୍ଗରେ ସେ ସମ୍ପର୍କିତ ଆଉ ଦୁଇଟି ନିୟମ ମଧ୍ୟ ସଂଶୋଧିତ ହେଲା । ବଡ଼ କଥା ହେଲା ଯେ, ସେ ନେଇ ବିଜ୍ଞପ୍ତି ଯେଉଁଦିନ ପ୍ରକାଶ ପାଇଲା, ତାର ବହୁ ପୂର୍ବରୁ ନିୟମଗୁଡ଼ିକୁ ଲାଗୁ କରାଗଲା । ଏଣିକି ଭବିଷ୍ୟତରେ ସର୍ବୋଚ୍ଚ ନ୍ୟାୟାଳୟରେ ରାଷ୍ଟ୍ରପତି, ଉପ-ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ ଏବଂ ଲୋକସଭା ବାଚସ୍ପତିଙ୍କ

ନିର୍ବାଚନକୁ ନେଇ ମାମଲା ରୁଜୁ ହୋଇପାରିବ ନାହିଁ । ପାର୍ଲ୍ୟାମେଣ୍ଟ ଦ୍ୱାରା ଗଠିତ ଏକ କମିଟି ପାଖକୁ ନିର୍ବାଚନ ସମ୍ବନ୍ଧୀୟ ଉକ୍ତ ମାମଲାଗୁଡ଼ିକୁ ହସ୍ତାନ୍ତର କରାଗଲା । ଏହି ସଂଶୋଧନ ଅଣାଯିବ ପରେ ଇନ୍ଦିରା ସର୍ବୋଚ୍ଚ ନ୍ୟାୟାଳୟକୁ ପୂର୍ବରୁ ଆହ୍ଲାବାଦ ଉଚ୍ଚ ନ୍ୟାୟାଳୟ ଦେଇଥିବା ଆଦେଶକୁ ରଦ୍ଦ କରିବାକୁ ଏକ ରକମ ବାଧ କଲେ । ଇନ୍ଦିରାଙ୍କର ସମ୍ପର୍କୀୟ ଭଉଣୀ ନୟନତାରା ସେହଗାଲ, ଯାହାଙ୍କ ସାଙ୍ଗରେ ଇନ୍ଦିରାଙ୍କର ସମ୍ବନ୍ଧ ମଧୁର ନଥିଲା, ପରେ ମନ୍ତବ୍ୟ ଦେଲେ ପ୍ରଧାନମନ୍ତ୍ରୀଙ୍କ ସାଙ୍ଗରେ ଆଉ ତିନି ଜଣ ନାଁକୁ ଯୋଡ଼ି "ପ୍ରଧାନମନ୍ତ୍ରୀଙ୍କ ଶକ୍ତି ପ୍ରଦର୍ଶନ ପାଇଁ ଆୟୋଜିତ ସାଙ୍ଗୀତିକ କାର୍ଯ୍ୟକ୍ରମଟିକୁ କେବଳ ସୁଶ୍ରବ୍ୟ ମାତ୍ର କରାଗଲା ।"

ସୌଭାଗ୍ୟର କଥା ଯେ ଆଉ ଏକ ଅତ୍ୟନ୍ତ ହୃଦୟ ବିଦାରକ ସଂଶୋଧନ ରାଜ୍ୟସଭାରେ ଝଡ଼ବେଗରେ ସ୍ୱୀକୃତ ହେବାପରେ ବି କାର୍ଯ୍ୟକାରୀ ହୋଇପାରିଲା ନାହିଁ । ଲୋକସଭାରେ ଯଦି ଏହା ଗୃହୀତ ହୋଇଥାନ୍ତା ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ ଏବଂ ରାଜ୍ୟପାଳ ପଦାସୀନ ବ୍ୟକ୍ତିଙ୍କ ନାଁରେ କୌଣସି ଫୌଜଦାରୀ କିମ୍ବା ସିଭିଲ ଅଦାଲତରେ ମୋକଦ୍ଦମା ଦାୟର କରିବା ଆଇନତଃ ଅସିଦ୍ଧ ଘୋଷିତ ହୋଇଥାନ୍ତା । ଅର୍ଥାତ୍ ପଦବୀ ଧାରଣ ସମୟରେ ଅଥବା ତା' ପୂର୍ବରୁ କରିଥିବ ବ୍ୟକ୍ତିଗତ କିମ୍ବା ସଂସ୍ଥାଗତ ଅପରାଧ ନିମନ୍ତେ ତାଙ୍କୁ ବିଚାରାଳୟକୁ ଅଣାଯାଇ ପାରିନଥାନ୍ତା ।

୪୨ତମ ସାମ୍ବିଧାନିକ ସଂଶୋଧନ ପ୍ରସ୍ତାବ ଥିଲା ସବୁଠାରୁ ଅଧିକ ତିକ୍ତ । ଏହ ସମ୍ବିଧାନର ୫୯ତମ ଧାରାକୁ କ୍ଷୁର୍ଣ୍ଣ କରି ତଥା ନ୍ୟାୟପାଳିକାର ଶକ୍ତିକୁ ଅଧିକ ସଙ୍କୁଚିତ କରି ତା' ସ୍ଥାନରେ ପାର୍ଲ୍ୟାମେଣ୍ଟକୁ ସର୍ବୋଚ୍ଚ କ୍ଷମତା ଦେବାପାଇଁ ଉଦ୍ଦିଷ୍ଟ ଥିଲା । ଅର୍ଥାତ୍ ପ୍ରକାରାନ୍ତରେ ପ୍ରଧାନମନ୍ତ୍ରୀଙ୍କୁ ସର୍ବୋଚ୍ଚ କ୍ଷମତା ଦେବା ଥିଲା ଏହି ସଂଶୋଧନ ପ୍ରସ୍ତାବର ମୂଳ ଲକ୍ଷ୍ୟ । ପାର୍ଲ୍ୟାମେଣ୍ଟର କାର୍ଯ୍ୟକାଳକୁ ଏହା ପାଞ୍ଚବର୍ଷରୁ ଛ'ବର୍ଷକୁ ବୃଦ୍ଧି କଲା । ୧୯୭୫ ମସିହାର ଶୀତକାଳୀନ ଅଧିବେଶନରେ ପାର୍ଲ୍ୟାମେଣ୍ଟର କାର୍ଯ୍ୟକାଳକୁ ଜରୁରୀ ପରିସ୍ଥିତି ନିମିତ୍ତ ବର୍ଷକ ପାଇଁ ବୃଦ୍ଧି କରାଯାଇ ସାରିଥିଲା । ଏବେ ସାମ୍ବିଧାନିକ ସଂଶୋଧନ ମାଧ୍ୟମରେ ତାକୁ କେବଳ ଆଇନ ସମ୍ମତ କରାଗଲା ।

ଯାହା ବୁଝିବା ପାଇଁ ଜଟିଳ, ସେ ହେଲା ଯେ ୪୨ତମ ସଂଶୋଧନ ପ୍ରସ୍ତାବ ୧୯୭୬ ମସିହା ଅକ୍ଟୋବର ଶେଷ ଆଡ଼କୁ ଗୃହୀତ ହେଲା ଏବଂ ନଭେମ୍ବର ୫ ତାରିଖରେ ଲୋକସଭାର କାର୍ଯ୍ୟକାଳକୁ ଆହୁରି ବର୍ଷକ ପାଇଁ ବୃଦ୍ଧି କରାଗଲା । ଅର୍ଥାତ୍ ୧୯୭୮ ମସିହା ପର୍ଯ୍ୟନ୍ତ ନିର୍ବାଚନକୁ ଟାଳି ଦିଆଗଲା । ପୁଣି ଦ୍ୱିତୀୟ ଥର କାର୍ଯ୍ୟକାଳ ବୃଦ୍ଧିର ମାତ୍ର ୮୩ ଦିନ ଉତ୍ତାରୁ ହଠାତ୍ ସମସ୍ତଙ୍କୁ ହତଚକିତ କରି ଇନ୍ଦିରା ସାଧାରଣ ନିର୍ବାଚନ ପାଇଁ ଦିନ ଘୋଷଣା କଲେ । ମୋର ନିଜସ୍ୱ ତଥ୍ୟ ଆଧାରରେ ମୁଁ ଦୃଢ଼ତାର ସହିତ କହିପାରେ ଯେ ୧୯୭୬ ମସିହା ଶେଷ ଡ଼ିସେମ୍ବରର ବହୁ ପୂର୍ବରୁ ସେ ନିର୍ବାଚନ ଘୋଷଣା କରିବାକୁ ମନସ୍ଥିର କରିଥିଲେ । ୧୯୭୭ ଜାନୁଆରୀ ପହିଲାଦିନ ଏହା ଘୋଷଣାକରି ଦେଶବାସୀଙ୍କୁ "ନୂଆବର୍ଷର ଉପହାର" ଦେବାପାଇଁ ମଧ୍ୟ ତାଙ୍କୁ ପରାମର୍ଶ ଦିଆଯାଇଥିଲା । ମାତ୍ର ୧୮ ଜାନୁଆରୀ ଦିନ ହିଁ ତାକୁ ଘୋଷଣା

କରାଗଲା, କାରଣ ଉକ୍ତ ଦିନକୁ ଅଧିକ ଶୁଭଦିନ ବୋଲି ଗଣନା କରାଯାଇଥିଲା । କିନ୍ତୁ, ମୁଖ୍ୟ ନିର୍ବାଚନ କମିଶନର ଟି. ସ୍ୱାମିନାଥନଙ୍କୁ ନୂଆବର୍ଷ ଦିନ ଡ଼ାକି ନିର୍ବାଚନ ପାଇଁ ପ୍ରସ୍ତୁତି କରିବାକୁ ନିର୍ଦ୍ଦେଶ ଦେବା ସକାଶେ ପି.ଏନ୍. ଧର ଇନ୍ଦିରାଙ୍କ ଠାରୁ ସମ୍ମତି ପାଇସାରିଥିଲେ ।

୧୯୭୬ ମସିହା ଅଗଷ୍ଟ ମାସରୁ ଆରମ୍ଭକରି ଡ଼ିସେମ୍ବର ପର୍ଯ୍ୟନ୍ତ ଇନ୍ଦିରା ଗାନ୍ଧିଙ୍କର ଦୋଦୁଲ୍ୟମାନ ମତିଗତିକୁ ବୁଝିବା ଆଦୌ ସହଜ ନୁହେଁ । ଗୋଟାଏ ପକ୍ଷରେ ସଞ୍ଜୟ ଗାନ୍ଧିଙ୍କ ପ୍ରତି ତାଙ୍କର ପୂର୍ଣ୍ଣ ସମର୍ଥନ ରହିଥିଲା, ମାତ୍ର ବ୍ୟକ୍ତିଗତ ସ୍ତରରେ ନିର୍ବାଚନ ସମ୍ବନ୍ଧରେ କିମ୍ବା ଇମର୍ଜେନ୍‌ସି ପ୍ରତ୍ୟାହାର ସମ୍ପର୍କରେ ନିଷ୍ପତ୍ତି ନେବାବେଳେ ସଞ୍ଜୟଙ୍କ ପରାମର୍ଶ ନେଉ ନଥିଲେ । କଂଗ୍ରେସର ଗୌହାଟୀ ଅଧିବେଶନରେ ସଞ୍ଜୟଙ୍କୁ ସତେ ଯେମିତି ଯୁବରାଜ ପଦରେ ଅଭିଷିକ୍ତ କରାଗଲା । ଏହା ନଭେମ୍ବର ଶେଷ ଆଡ଼ର ଘଟଣା । ମାସର ଆରମ୍ଭରେ ଦ୍ୱିତୀୟ ଥର ପାଇଁ ଲୋକସଭାର କାର୍ଯ୍ୟକାଳ ବୃଦ୍ଧି ହୋଇସାରିଥାଏ । ଗୌହାଟୀ ଅଧିବେଶନରେ ସଞ୍ଜୟ ଏବଂ ତାଙ୍କ ଯୁବକଂଗ୍ରେସ ଗୋଷ୍ଠୀ ମୂଳ କଂଗ୍ରେସକୁ ବଳିପଡ଼ିଲେ । ଲୋକ କହିଲେ ସଞ୍ଜୟ ଏବେ "କଂଗ୍ରେସ ସଭାପତିର ଭୂଷଣରେ ବାଟ ଚାଲିଲେଣି ।" ଇନ୍ଦିରା ଗାନ୍ଧି ସେତେବେଳେ ଘୋଷଣା କଲେ, "ଆମର ବଜ୍ରଧ୍ୱନି ଏଣିକି ତାଙ୍କ ତୂଣ୍ଡରେ ଶୁଣାଗଲାଣି ।" କିନ୍ତୁ ଅନ୍ୟ ପକ୍ଷରେ ସେ ସଞ୍ଜୟଙ୍କର ତୀବ୍ର ବିରୋଧ ସତ୍ତ୍ୱେ ଶୀଘ୍ର ନିର୍ବାଚନ ଘୋଷଣା କରିବାକୁ ନିଷ୍ପତ୍ତି ନେଲେ ।

ଯଦି ଚିନ୍ତା କରାଯାଏ ୪୨ତମ ସମ୍ବିଧାନ ସଂଶୋଧନକୁ ତାଙ୍କର ସମ୍ମତି ପଛରେ ମଧ୍ୟ ସଞ୍ଜୟ ଓ ତାଙ୍କ ରୁକ୍ଷ ସାଙ୍ଗମାନଙ୍କର ଚାପ ଥିଲା ଏକ ପ୍ରମୁଖ କାରଣ । ବଂଶୀଲାଲ ଭଳି ବନ୍ଧୁ "ଦରିଦ୍ର ଓ ଶୋଷିତ ଜନସମୂହ"ଙ୍କ ମଙ୍ଗଳ ପାଇଁ ଦେଶରେ ଏକ ନୂଆ ସମ୍ବିଧାନ ପ୍ରଚଳନ କରିବେ ବୋଲି ସ୍ଥିର କରିଥିଲେ । ତା ପାଇଁ ପାର୍ଲ୍ୟାମେଣ୍ଟକୁ ସମ୍ବିଧାନ ପ୍ରଣୟନ ସମିତିରେ ପରିଣତ କରିବାର ଯୋଜନା କରାଯାଇଥିଲା । ସେହି ବଡ଼ ବଡ଼ ଯୁକ୍ତି ପଛରେ ଇମର୍ଜେନ୍‌ସିକୁ ଯେତେ ସମ୍ଭବ ଦୀର୍ଘକାଳ ପର୍ଯ୍ୟନ୍ତ ଅବ୍ୟାହତ ରଖିବାକୁ ଚକ୍ରାନ୍ତ କରାଯାଇଥିଲା । ଇମର୍ଜେନ୍‌ସି ଲାଗୁ ହେବା ପୂର୍ବରୁ ଇନ୍ଦିରା ଗାନ୍ଧିଙ୍କର ସମ୍ପର୍କୀୟ ଭାଇ, ଦେଶର ଜଣେ ବିଶିଷ୍ଟ ପ୍ରଶାସନିକ ଅଧିକାରୀ ଏବଂ ପ୍ରଖ୍ୟାତ କୂଟନୀତିଜ୍ଞ ବି.କେ. ନେହେରୁ ସମେତ କିଛି ବୁଦ୍ଧିଜୀବୀ ସଂସଦୀୟ ଗଣତନ୍ତ୍ରରୁ ଦେଶକୁ ପ୍ରେସିଡ଼େନସିଆଲ ପ୍ରଥାକୁ ନେବାପାଇଁ ଯୁକ୍ତି ବାଢ଼ିଥିଲେ । ବି.କେ. ନେହେରୁ ବ୍ରିଟେନରେ ଭାରତର ଉଚ୍ଚାୟୁକ୍ତ ଭାବେ କାର୍ଯ୍ୟ କରୁଥିଲେ । ତାଙ୍କୁ ଯାଇ ବଂଶୀଲାଲ ପ୍ରସ୍ତାବ ଦେଲେ, "ଭଉଣୀଙ୍କୁ (ଇନ୍ଦିରା ଗାନ୍ଧି) ଆପଣ ଆଜୀବନ ରାଷ୍ଟ୍ରପତି କରିଦିଅନ୍ତୁ । ତେଣିକି କୌଣସି ସମସ୍ୟା ରହିବ ନାହିଁ ।" ପ୍ରସ୍ତାବ ଶୁଣି ବି.କେ. ହତଚକିତ ହୋଇପଡ଼ିଲେ । ପରେ ପି.ଏନ୍. ଧରଙ୍କ ସମ୍ମୁଖରେ ମଧ୍ୟ ବଂଶୀଲାଲ ପ୍ରସ୍ତାବଟିକୁ ରଖିଥିଲେ ।

ଏଭଳି ଅବାନ୍ତର କଥାବାର୍ତ୍ତା ସବୁରୁ ଏହା ସ୍ପଷ୍ଟ ଜଣାପଡ଼ିଲା ଯେ ସାମ୍ବିଧାନିକ ସଭା ଗଠନ ପାଇଁ ଜୋରସୋରରେ ଉଦ୍ୟମ ଚାଲିଛି । କଂଗ୍ରେସ ଶାସିତ ଉତ୍ତରପ୍ରଦେଶ, ପଞ୍ଜାବ ଏବଂ ହରିଆନା ବିଧାନସଭାରେ ଲାଗି ଲାଗି ସାମ୍ବିଧାନିକ ସଭା ଗଠନ ଦାବିକରି ପ୍ରସ୍ତାବମାନ ମଧ୍ୟ

ପାରିତ ହେବାକୁ ଲାଗିଲା । ଏସବୁ ଇନ୍ଦିରାଙ୍କ ଅଜ୍ଞାତସାରରେ ଚାଲିଥାଏ । ଯେତେବେଳେ ତାଙ୍କୁ ଜଣାପଡ଼ିଲା, ଇନ୍ଦିରା ଅତ୍ୟନ୍ତ ବିଚଳିତ ହେଲେ । ତା' ସାଙ୍ଗକୁ ସତର୍କ ମଧ୍ୟ ହେଲେ । ସେ ନିଶ୍ଚିତ ଯେ ଏହା ଅତ୍ୟନ୍ତ ବିପଦପୂର୍ଣ୍ଣ ବିଚାର । ତା' ଯୋଗୁଁ ଅନେକ ନୂଆ ସମସ୍ୟା ସୃଷ୍ଟି ହେବ । ଇମର୍ଜେନ୍‌ସିକୁ ସମର୍ଥନ କରୁଥିବା ଏକମାତ୍ର ଅଣ - କଂଗ୍ରେସ ଦଳ 'ଭାରତୀୟ କମ୍ୟୁନିଷ୍ଟ ପାର୍ଟି' ର ସାଧାରଣ ସମ୍ପାଦକ ସି. ରାଜେଶ୍ୱର ରାଓ ଇନ୍ଦିରାଙ୍କୁ ଚିଠି ଲେଖି ସତର୍କ କରିଦେଲେ, ଏଭଳି "ଆତ୍ମଘାତୀ ପ୍ରସ୍ତାବ"କୁ ସେ ଶୀଘ୍ରାତିଶୀଘ୍ର ପ୍ରତ୍ୟାଖ୍ୟାନ କରନ୍ତୁ ।

ଇନ୍ଦିରା ତାହା ହିଁ କଲେ । ତା' ସାଙ୍ଗକୁ ପାର୍ଲ୍ୟାମେଣ୍ଟରେ ୪୨ତମ ସମ୍ବିଧାନ ସଂଶୋଧନ ପ୍ରସ୍ତାବକୁ ଆଗତ କରିବାକୁ ମଧ୍ୟ ନିର୍ଦ୍ଦେଶଦେଲେ । ଅଳ୍ପ କେତେ ମାସ ଆଗରୁ ସ୍ୱରଣ ସିଂ କମିଟି ଦ୍ୱାରା ପ୍ରସ୍ତାବଟି ଅନୁମୋଦିତ ହୋଇସାରିଥିଲା । ନୂଆ ସମ୍ବିଧାନ ଗଠନ ସମିତି ପ୍ରତିଷ୍ଠା ପାଇଁ ଯୁକ୍ତି ବାଢୁଥିବା ଦେବକାନ୍ତ ବରୁଆଙ୍କ ପରି କଂଗ୍ରେସ ନେତା ସ୍ୱରଣ ସିଂ କମିଟିର ପ୍ରସ୍ତାବକୁ "ଅପର୍ଯ୍ୟାପ୍ତ" ଘୋଷଣା କଲେ । "ଇନ୍ଦିରା ହିଁ ଭାରତ ଓ ଭାରତ ହିଁ ଇନ୍ଦିରା" ବୋଲି ସ୍ଲୋଗାନ ଦେଇ କଂଗ୍ରେସ ସଭାପତି ବରୁଆ ଏମିତିରେ ବି ଏକ ଲଜ୍ଜାଜନକ ପରିସ୍ଥିତି ସୃଷ୍ଟି କରିସାରିଥିଲେ ।

ବି.କେ. ନେହେରୁଙ୍କର ପତ୍ନୀ ଫୋରି ନେହେରୁ ନିଜ ପତିଙ୍କ ଅପେକ୍ଷା ମଧ୍ୟ ଅଧିକ ସ୍ପଷ୍ଟବାଦୀ । ସେହି ସମୟରେ ଇନ୍ଦିରାଙ୍କୁ ସାକ୍ଷାତ କରିଥିଲେ ସେ । ତାଙ୍କ ମତରେ ଇନ୍ଦିରା ଖୁବ୍ "ବିଚଳିତ" ଓ "ଅସହାୟ" ଜଣା ପଡୁଥାନ୍ତି, କାରଣ ପରିସ୍ଥିତି ନିୟନ୍ତ୍ରଣ ବାହାରାକୁ ଚାଲିଯାଇପାରେ ବୋଲି ତାଙ୍କ ମନରେ ଆଶଙ୍କା ସୃଷ୍ଟି ହେଉଥାଏ । ପପୁଲ ଜୟକାର ଇନ୍ଦିରା ଓ ଜିଡୁ କୃଷ୍ଣମୂର୍ତ୍ତିଙ୍କ ମଧ୍ୟରେ ହୋଇଥିବା ନିରୋଳା କଥାବାର୍ତ୍ତାର ବିସ୍ତୃତ ବିବରଣୀ ପ୍ରଦାନ କରିଛନ୍ତି । ତତ୍ତ୍ୱଦର୍ଶୀ କୃଷ୍ଣମୂର୍ତ୍ତି ତାଙ୍କୁ "ବିଚଳିତ ଭାବ"ର ସମାଧାନ ନିମନ୍ତେ ଆବଶ୍ୟକ ପଦକ୍ଷେପ ନେବାପାଇଁ ତୁମେ "ଯଥେଷ୍ଟ ପାରଙ୍ଗମ" ବୋଲି ଆଶ୍ୱାସନା ଦେଇଥିଲେ ।

ସେତେବେଳକୁ ଏବଂ ଆଜି ବି ଅନେକ ଯୁକ୍ତି ବାଢ଼ନ୍ତି ଗୋଯେନ୍ଦା ସଂସ୍ଥା ତାଙ୍କୁ ସୂଚନା ଦେଲେ ଯେ ନିର୍ବାଚନରେ ଇନ୍ଦିରାଙ୍କର ବିଜୟ ସୁନିଶ୍ଚିତ । ତେଣିକି ଇମର୍ଜେନ୍‌ସିକୁ "ରିତିସମ୍ମତ" କରାଯାଇପାରିବ । ଗୋଯେନ୍ଦା ବିଭାଗର ଖବରକୁ ବିଶ୍ୱାସ କରି ସେ ସାନି ନିର୍ବାଚନ ଘୋଷଣା କଲେ । ଯୁକ୍ତିଟି ମତେ ଆଧାରଶୂନ୍ୟ ମନେ ହୁଏ । ଇନ୍ଦିରା କେବେ ଗୋଯେନ୍ଦା ରିପୋର୍ଟ ଉପରେ ଶତ ପ୍ରତିଶତ ଭରସା କରୁନଥିଲେ । ଜେପି ଆନ୍ଦୋଳନ ଯେତେବେଳେ ଶୀର୍ଷ ସ୍ତରରେ, ସେ ଫିଲଡ୍ ମାର୍ଶାଲ ସାମ ମାନେକ୍ସାଙ୍କୁ ଏକ "ଅତି ଗୋପନୀୟ" ଗୋଯେନ୍ଦା ରିପୋର୍ଟ ଦେଖାଇଲେ, ଯେଉଁଥିରେ ଉଲ୍ଲେଖ ଥାଏ ଯେ ଜେପିଙ୍କ ସହ ମିଶି ସେ (ମାନେକ୍ସା) "ପ୍ରଧାନମନ୍ତ୍ରୀ"ଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଛନ୍ତି । ରିପୋର୍ଟ ପଢ଼ି ମାନେକ୍ସା ପଚାରିଲେ, "ଆପଣ କ'ଣ ଏହାକୁ ବିଶ୍ୱାସ କରନ୍ତି ? ଉତ୍ତରରେ ଇନ୍ଦିରା କହିଲେ, "ସାମ, ମୁଁ ଯଦି ତାକୁ ବିଶ୍ୱାସ କରୁଥାନ୍ତି ଆପଣଙ୍କୁ କ'ଣ ଏ ରିପୋର୍ଟ ଦେଖାଇଥାନ୍ତି ?"

ସେତେବେଳେ ପ୍ରାୟ ସମସ୍ତେ ଧରି ନେଇଥିଲେ ଯେ ଇନ୍ଦିରା କେବେ ନିର୍ବାଚନ ଜିଣିପାରିବେ ନାହିଁ । ତା' ସତ୍ତ୍ୱେ ଯଦିବା ନିର୍ବାଚନରେ ଜିଣିବାର ବୃଥା ଆଶା ତାଙ୍କ ମନରେ ରହିଥିଲା ଦୁଇଟି ଘଟଣା ଯୋଗୁଁ ତାଙ୍କର ସେ ଭ୍ରାନ୍ତି ଧୂଳିସାତ ହୋଇଯାଇଥିବ । ଉଭୟ ଘଟଣା ଏକାମାତ୍ରାରେ ଆଶ୍ଚର୍ଯ୍ୟଜନକ ଏବଂ ଆଶାତୀତ ଭାବେ ସଂଘଟିତ ହେଲେ । ପ୍ରଥମ, ନିଜ ନିଜ ଭିତରେ ବାଡ଼ିଆପିଟା ହେଉଥିବା ଚାରିଗୋଟି ପ୍ରମୁଖ ବିରୋଧୀ ଦଳକୁ ମେଜିକ ପରି ଜେପି ଏକତ୍ରିତ କରି ପକାଇଲେ । ଫଳରେ ମୋରାରଜୀଙ୍କର ସଙ୍ଗଠନ କଂଗ୍ରେସ ଦକ୍ଷିଣପନ୍ଥୀ ସାମ୍ପ୍ରଦାୟିକ ଦଳ ଜନସଂଘ, ସୋସିଆଲିଷ୍ଟ ଏବଂ ଚରଣ ସିଂଙ୍କ ନେତୃତ୍ୱରେ ପରିଚାଳିତ ଗୋଟାଏ କୃଷକ ଦଳ ମିଶି ଜନତା ପାର୍ଟିରେ ପରିଣତ ହେଲେ । ଏହାଦ୍ୱାରା ବିରୋଧୀ ଦଳଗୁଡ଼ିକର ଭାଗବଣ୍ଟାରୁ ମିଳୁଥିବା ଭୋଟର ଫାଇଦା ନେବାରୁ ସୁନିଶ୍ଚିତ ରୂପେ କଂଗ୍ରେସ ବଞ୍ଚିତ ହେଲା । ତା'ଛଡ଼ା ଇମର୍ଜେନ୍‌ସି ଛଅବର୍ଷ ପୂର୍ବେ ଆତ୍ମଘାତୀ ପ୍ରମାଣିତ ହୋଇଥିବା ବିରୋଧୀ ଦଳର ପ୍ରିୟ ସ୍ଲୋଗାନ୍ 'ଇନ୍ଦିରା ହଟାଅ'କୁ ଅର୍ଥପୂର୍ଣ୍ଣ କଲା ।

ଦ୍ୱିତୀୟ ମହତ୍ତ୍ୱପୂର୍ଣ୍ଣ ଘଟଣା ହେଲା ଜଗଜୀବନ ରାମଙ୍କ ୧୯୭୭ ମସିହା ଫେବୃୟାରୀ ୨ତାରିଖ ଦିନ କଂଗ୍ରେସ ଦଳରୁ ଇସ୍ତଫା । ସେ ଥିଲେ ସବୁଠାରୁ ବିଶିଷ୍ଟ ହରିଜନ ନେତା ଓ କଂଗ୍ରେସର ସବୁଠାରୁ ପୁରୁଣା ମନ୍ତ୍ରୀ । ତା' ସାଙ୍ଗକୁ ଜଣେ ଖୁବ୍ ପୋଖତ ରାଜନେତା ମଧ୍ୟ । ଜଗଜୀବନ ରାମ ଏକ ନୂଆ ଦଳ ଗଠନ କଲେ, ଗଣତାନ୍ତ୍ରିକ କଂଗ୍ରେସ । ସେଥିରେ ଉତ୍ତରପ୍ରଦେଶର ଏଚ.ଏନ. ବହୁଗୁଣା ଓ ଓଡ଼ିଶାର ନନ୍ଦିନୀ ଶତପଥୀ ଆଦି କଂଗ୍ରେସ ନେତା କଂଗ୍ରେସ ଦଳରୁ ତ୍ୟାଗପତ୍ର ଦେଇ ତଡ଼ିତ ବେଗରେ ଯୋଗଦାନ କଲେ । ଉଭୟ ନେତାଙ୍କ ପ୍ରତି ଇମର୍ଜେନ୍‌ସି ସମୟରେ ଅସମ୍ମାନ ପ୍ରଦର୍ଶନ କରାଯାଇଥିଲା । ବିଦ୍ୟୁତ ବେଗରେ ପୁଣି ଗଣତାନ୍ତ୍ରିକ କଂଗ୍ରେସ ଓ ଜନତା ପାର୍ଟି ମଧ୍ୟରେ ନିର୍ବାଚନ ବୁଝାମଣା ସଂଘଟିତ ହେଲା ।

କେବଳ ସେତିକି ନୁହେଁ, ଅବିଶ୍ରାନ୍ତ ଭାବେ ନିର୍ବାଚନ ପ୍ରଚାରରେ ବ୍ୟସ୍ତ ଇନ୍ଦିରା ଗାନ୍ଧି ଲକ୍ଷ୍ୟକଲେ ଯେ, ତାଙ୍କ ନିର୍ବାଚନ ସଭାରେ, ବିଶେଷ ଲୋକ ଗହଳି ହେଉନାହିଁ । ପୂର୍ବରୁ ତାଙ୍କର ଯେଉଁ ଲୋକସମ୍ପର୍କ ରହିଥିଲା ତା' ଆଦୌ ରହୁନାହିଁ । ନିର୍ବାଚନ ସମ୍ବାଦ ସଂଗ୍ରହ କଲାବେଳେ ମୋର ଅନୁଭବ ହେଲା ୧୮୫୭ ସିପାହୀ ବିଦ୍ରୋହ ବେଳେ ଇଂରେଜ ସରକାର ପାଇଁ ଚର୍ବିଯୁକ୍ତ ଗୁଳିର ଯେଉଁ ଭୂମିକା ରହିଥିଲା, ୧୯୭୫-୭୬ ମସିହାରେ ବନ୍ଧ୍ୟାକରଣ ମଧ୍ୟ ୧୯୭୭ ନିର୍ବାଚନରେ ସେହି ଏକା ଭୂମିକା ନିର୍ବାହ କଲା । ଇନ୍ଦିରା ମଧ୍ୟ ଏହା ନିଶ୍ଚିତ ରୂପେ ଅନୁଭବ କରିଥିବେ ।

ଏହି ପରିପ୍ରେକ୍ଷୀରେ ଇମର୍ଜେନ୍‌ସିକୁ ପ୍ରତ୍ୟାହାର କରିବା ପଛରେ ଇନ୍ଦିରାଙ୍କ ଆଗରେ ପ୍ରମୁଖ କାରଣ କ'ଣ ବା ହୋଇପାରେ ? ସ୍ୱାଧୀନତୋତ୍ତର ଭାରତବର୍ଷରେ ଇମର୍ଜେନ୍‌ସି ହେଲା ଏକ ପ୍ରମୁଖ କଳଙ୍କମୟ ଅଧ୍ୟାୟ । ତାଙ୍କ ହତ୍ୟାର ମାତ୍ର ଦୁଇମାସ ପୂର୍ବରୁ ଇନ୍ଦିରା କହିଥିଲେ, ୧୯୭୭ ମସିହାରେ "ଗଣତନ୍ତ୍ରକୁ ଫେରାଇ ଆଣିବା ପାଇଁ" ସେ "ନିର୍ବାଚନ ଓ କ୍ଷମତା

ହରାଇବାକୁ" ମଧ୍ୟ ପ୍ରସ୍ତୁତ ଥିଲେ । ଏକଥା ଆଗରୁ ବି ଥରେ ସେ ଉଲ୍ଲେଖ କରିଥିଲେ । ଅନେକ ଲୋକ ତାଙ୍କ କଥାକୁ ସେତେବେଳେ ବିଶ୍ୱାସ କରୁ ନଥିଲେ । ଆଜି ବି ହୁଏତ ବିଶ୍ୱାସ କରନ୍ତି ନାହିଁ । କିନ୍ତୁ ତାର ପ୍ରମାଣ ପାଇଁ ବରିଷ୍ଠ ସମାଜବାଦୀ ନେତା ଓ ଇନ୍ଦିରା ଓ ଇମର୍ଜେନ୍‌ସିର ତୀବ୍ର ବିରୋଧ କରି ୧୯ ମାସ ଧରି ଜେଲଦଣ୍ଡ ଭୋଗିଥିବା ମଧୁ ଲିମାୟେଙ୍କର ୧୯୮୭ ମସିହାରେ ଲେଖିଥିବା ଉକ୍ତିକୁ ଦର୍ଶାଯାଇପାରେ ।

ମଧୁ ଲିମାୟେଙ୍କ ମତରେ ୧୯୭୭ ମସିହାରେ ଇନ୍ଦିରାଙ୍କର ନିର୍ବାଚନ ଘୋଷଣା ନିଷ୍ପତ୍ତି "ପ୍ରକୃତରେ ତାଙ୍କ ବ୍ୟକ୍ତିତ୍ୱର ଅନ୍ତଃମନକୁ ପ୍ରତିଫଳିତ କରେ । ତା' ପଛରେ ମିଛ କାରଣ ଦେବା, ଆମ୍ - ଯୌକ୍ତିକତା ଇତ୍ୟାଦି ରହିଛି । ମାତ୍ର ତା' ଠାରୁ ବଡ଼ କଥା ଲୋକପ୍ରିୟ ଗଣତନ୍ତ୍ରର ସର୍ବୋଚ୍ଚ ଶକ୍ତି ଉପରେ ତାଙ୍କର ପୂର୍ଣ୍ଣ ଆସ୍ଥା ରହିଥିଲା । ଏହା ସୁରକ୍ଷା କବଚ ପରି କାମ କଲା । ଅବଶ୍ୟ ତାହା ଉଦାରବାଦୀ ଗଣତନ୍ତ୍ର ନୁହେଁ । ହେଲେ ଲୋକସ୍ୱୀକୃତି ପାଇଁ ସେ ତତ୍ପର ରହୁଥିଲେ ....... ଇନ୍ଦିରା ଗାନ୍ଧି ହେଲେ ଜବାହରଲାଲ ନେହେରୁଙ୍କର କନ୍ୟା ଏବଂ ଆମମାନଙ୍କ ପରି ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ସଂଗଠିତ ସ୍ୱାଧୀନତା ସଂଗ୍ରାମର ସନ୍ତାନ । ଏକଥା କେବେ ମନରୁ ସେ ପାଶୋରି ପାରି ନଥିଲେ ।

## ଇମର୍ଜେନ୍‌ସିକୁ ଦୃଷ୍ଟିରେ ରଖି

ମୁଁ ପୂର୍ବରୁ ଲେଖିଥିବା ଇନ୍ଦିରା ଗାନ୍ଧିଙ୍କର ଜୀବନୀ ପୁସ୍ତକରେ ଇମର୍ଜେନ୍‌ସିକୁ "ତାଙ୍କ ଜୀବନର ସବୁଠାରୁ ଗର୍ହିତ ଓ ଭୟଙ୍କର ତଥା ଅକ୍ଷମଣୀୟ ଅପରାଧ" ବୋଲି ଉଲ୍ଲେଖ କରିଥିଲି । ଅନେକ ବର୍ଷ ଧରି ଏହି ନିଷ୍ପତ୍ତି ମୋ ମନରେ ଅତୁଟ ରହିଥିଲା । ଇମର୍ଜେନ୍‌ସି ଶାସନ କାଳ ମଧ୍ୟରେ ଘଟିଥିବା ଅତ୍ୟାଚାରର ସ୍ମୃତି ସେତେବେଳେ ମନରେ ସଦ୍ୟ ହୋଇ ରହିଥାଏ । ତା' ଠାରୁ ମହତ୍ତ୍ୱପୂର୍ଣ୍ଣ ହେଲା ଯେ ଇମର୍ଜେନ୍‌ସି ଦ୍ୱାରା ରାଜନୈତିକ ବ୍ୟବସ୍ଥାରେ ଯେଉଁ ବିଷ ଭରି ହୋଇ ଯାଇଥିଲା, ତାହା ସଫା ହେବାପାଇଁ ଅନେକ ସମୟ ଲାଗିଗଲା । ଆଜି ସମୟର ଅନ୍ତରାଳ କିନ୍ତୁ ଅତୀତକୁ ବିନା ପୂର୍ବାଗ୍ରହରେ ତଟସ୍ଥ ହୋଇ ଦେଖିବା ପାଇଁ ଅବସର ପ୍ରଦାନ କରିଛି । ଇମର୍ଜେନ୍‌ସିକୁ ଦେଖିବା ପାଇଁ ଯେଉଁ ବସ୍ତୁନିଷ୍ଠାର ଆବଶ୍ୟକତା, ତାହା ପୂର୍ବରୁ ଆମକୁ ମିଳିପାରି ନଥିଲା ।

ଏହାର ଅର୍ଥ ନୁହେଁ ଯେ ଲୋକଙ୍କ ଉପରେ ହୋଇଥିବା ବେମତଲବ ଅତ୍ୟାଚାରକୁ କ୍ଷମା କରାଯିବ । ମାତ୍ର କାଳକ୍ରମେ ସେ ବି ମନରୁ ପାଶୋରି ଯିବାକୁ ବସିଲାଣି । ପ୍ରକୃତରେ ଦେଖିବାକୁ ଗଲେ ଆଜି ଦେଶର ମୋଟ ଜନସଂଖ୍ୟାର ଅର୍ଦ୍ଧେକ ପ୍ରାୟ ବ୍ୟକ୍ତି ୧୯୭୫ ମସିହା ପରେ ଜନ୍ମଲାଭ କରିଛନ୍ତି । ଇମର୍ଜେନ୍‌ସି ପ୍ରସଙ୍ଗରେ ସେମାନଙ୍କର ଧାରଣା କମ୍ । ତାକୁ ନେଇ ସେମାନେ ବିଶେଷ ଚିନ୍ତା ମଧ୍ୟ କରନ୍ତି ନାହିଁ । ସେ ଯାହାହେଉ, ଲୋକଙ୍କର ମନ ପରିବର୍ତ୍ତନ ହେବାରେ କିଛି ଭୁଲ ନାହିଁ । ଏପରିକି ଇନ୍ଦିରା ଗାନ୍ଧିଙ୍କୁ ଘୃଣା କରୁଥିବା କୁହାଳିଆ ଗୋଷ୍ଠୀ ଓ ତାଙ୍କୁ ସମ୍ମାନ ଦେଉଥିବା ଜନସାଧାରଣଙ୍କ ମଧ୍ୟରେ ଇନ୍ଦିରା ଗାନ୍ଧିଙ୍କ ସମ୍ପର୍କିତ ମତପାର୍ଥକ୍ୟ

କ୍ରମଶଃ ଉଣା ହେବାରେ ଲାଗିଛି । ପୂର୍ବାପେକ୍ଷା ବେଶୀ ସଂଖ୍ୟାରେ ଲୋକ ଆଜି ଏକମତ ଯେ ରାଜନୀତିକ ପରିପ୍ରେକ୍ଷୀରେ ଯଦି ଇନ୍ଦିରା ଗାନ୍ଧି ଅପରାଧ କରିଥିଲେ, ତା' ସାଙ୍ଗରେ ତାଙ୍କ ବିରୁଦ୍ଧରେ ମଧ୍ୟ କିଛି କମ ଅପରାଧ କରାଯାଇନାହିଁ ।

ମାର୍ଚ୍ଚ ୨୦୦୦ ମସିହାରେ ଇକନୋମିକ ଏଣ୍ଡ ପଲିଟିକାଲ ୱିକଲି (ଇପିଡ଼ବ୍ଲୁ) ପୃଷ୍ଠାରେ ଦେଶର ଜଣେ ବିଶିଷ୍ଟ ସମାଜଶାସ୍ତ୍ରୀ ଆଂଦ୍ରେବେତେ ଲେଖିଛନ୍ତି ଯେ, "ଭାରତର ସଂଖ୍ୟାଧିକ ବୁଦ୍ଧିଜୀବୀଙ୍କ ମତରେ ଇନ୍ଦିରା ଗାନ୍ଧିଙ୍କୁ ଯଦି ଇମର୍ଜେନ୍‌ସିର ଖଳନାୟିକା କୁହାଯିବ, ତେବେ ଜେପି ହେବେ ତାର ନାୟକ ।" ଏହି ବୌଦ୍ଧିକ ମତ ସହ ଅସହମତି ପ୍ରକାଶ କରି ସେ ଯୁକ୍ତି ବାଢ଼ିଛନ୍ତି ଯେ "ସମ୍ପୂର୍ଣ୍ଣ ବିପ୍ଳବ" ନାଁରେ ଜେପି ପ୍ରୋତ୍ସାହିତ କରୁଥିବା "ଅରାଜକତା" ଏବଂ ଅନ୍ୟପକ୍ଷରେ ପ୍ରଧାନମନ୍ତ୍ରୀ ଏବଂ ବିଶେଷକରି ତାଙ୍କ ପୁଅ ସଞ୍ଜୟଙ୍କ ଦ୍ୱାରା "କ୍ଷମତାର ଦୁର୍ବ୍ୟବହାର", ଉଭୟେ "ଗୋଟାଏ ମୁଦ୍ରାର ଦୁଇଟି ପାର୍ଶ୍ୱ" ଭଳି । ବେତେଙ୍କର ବିଶ୍ଳେଷଣ ଆଜି ଯେତେ ଗ୍ରହଣୀୟ ମନେ ହୁଏ, ଅତୀତରେ ସେତିକି ମାତ୍ରାରେ ଗ୍ରହଣୀୟ ହୋଇପାରି ନଥାନ୍ତା ।

ପ୍ରଖ୍ୟାତ ଐତିହାସିକ ବିପନ ଚନ୍ଦ୍ର ତାଙ୍କ ପୁସ୍ତକ "ଇନ ଦ ନେମ ଅଫ୍ ଡ଼େମୋକ୍ରେସି : ଜେପି ମୁଭମେଣ୍ଟ ଏଣ୍ଡ ଇମର୍ଜେନ୍‌ସି" (ଗଣତନ୍ତ୍ର ନାମରେ : ଜେପି ଆନ୍ଦୋଳନ ଏବଂ ଜରୁରୀ ପରିସ୍ଥିତି)ରେ ଦୃଢ଼ ଯୁକ୍ତି ଉତ୍‌ଥାପନ କରି ସିଦ୍ଧ କରିଛନ୍ତି ଯେ ୧୯ମାସର ସେହି କାଳରାତ୍ରି ପାଇଁ ଏକମାତ୍ର ଇନ୍ଦିରା ବା ଜେପିଙ୍କୁ ଦୋଷ ଦିଆଯାଇ ନପାରେ । ବରଂ ଉଭୟଙ୍କୁ ସମପରିମାଣରେ ଦୋଷ ସ୍ୱୀକାର କରିବାକୁ ପଡ଼ିବ । ସେ ଆହୁରି ମଧ୍ୟ କହିଛନ୍ତି ଯେ ଇମର୍ଜେନ୍‌ସି ଲାଗୁ ହେବାର ବହୁ ପୂର୍ବରୁ ଅର୍ଥାତ୍ ଆହ୍ଲାବାଦ ହାଇକୋର୍ଟ ରାୟ ପ୍ରକାଶ ପାଇଁ ଆଗରୁ ବିଭିନ୍ନ ପର୍ଯ୍ୟାୟରେ ଲାଗି ରହିଥିବା ଜେପି ଆନ୍ଦୋଳନକୁ ଯଦି ବାଦ ବି ଦେଇ ଦିଆଯାଏ, (ଇନ୍ଦିରା ସାଧାରଣତଃ ତାଙ୍କୁ "ମୋର ରାୟ" ବୋଲି କହୁଥିଲେ ।) ଜେପି ଓ ଇନ୍ଦିରାଙ୍କ ମଧ୍ୟରେ ବିଧ୍ୱଂସକ ସଂଘାତ ସୃଷ୍ଟି ହେବା ବଦଳରେ ଭିନ୍ନ ବିକଳ୍ପର ମଧ୍ୟ ଅବସର ରହିଥିଲା । ଆରମ୍ଭରୁ ଧାର୍ଯ୍ୟ ସମୟ ମାର୍ଚ୍ଚ ୧୯୭୬ ପୂର୍ବରୁ ନିର୍ବାଚନ ଘୋଷଣା କରିବାକୁ ଜେପି ହୁଏତ ଦାବି କରିପାରିଥାନ୍ତେ । କିମ୍ବା ଇନ୍ଦିରା ସମୟ ଆଗରୁ ନିର୍ବାଚନ ମଧ୍ୟ ଘୋଷଣା କରିପାରିଥାନ୍ତେ । ଦୁର୍ଭାଗ୍ୟବଶତଃ ଦୁହେଁ ସେ ଦିଗରେ ପଦକ୍ଷେପ ପାଇଁ ଆଗଭର ହେଲେ ନାହିଁ । ଯଦିଓ ପି.ଏନ. ଧର ବନ୍ଦୀ ଜେପିଙ୍କ ସାଙ୍ଗରେ ମଧ୍ୟସ୍ଥି ସାହାଯ୍ୟରେ ତଥା ସ୍ୱୟଂ ନିଜେ ବି ବୁଝାମଣା ସକାଶେ ଉଦ୍ୟମ ଜାରି ରଖିଥିଲେ ।

ଭାରତୀୟ ପରିଦୃଶ୍ୟର ଜଣେ ବସ୍ତୁନିଷ୍ଠ ବିଦେଶୀ ପର୍ଯ୍ୟବେକ୍ଷକ ଗ୍ରେନଭିଲ ଅଷ୍ଟିନ ନିଜ ପୁସ୍ତକ "ୱାର୍କିଂ ଏ ଡ଼େମୋକ୍ରେଟିକ କନଷ୍ଟିଚ୍ୟୁସନ : ଇଣ୍ଡିଆନ ଏକ୍ସପେରିଏନ୍‌ସ" (ଏକ କ୍ରିୟାଶୀଳ ଗଣତାନ୍ତ୍ରିକ ସମ୍ବିଧାନ : ଭାରତୀୟ ଅଭିଜ୍ଞତା)ରେ ମଧ୍ୟ ଯୁକ୍ତି ବାଢ଼ିଛନ୍ତି ଯେ ଇମର୍ଜେନ୍‌ସି "ଅକାରଣରେ ଲାଗୁ ହୋଇ ନଥିଲା । ବିରୋଧୀ. ଦଳଗୁଡ଼ିକର ନିରାଶା ଶୀର୍ଷକୁ ପହଞ୍ଚି ସାରିଥିଲା । ଉଭୟ ଗୋଷ୍ଠୀର ବ୍ୟବହାର ଗଣତନ୍ତ୍ରକୁ ଏତେ ଦୂର ପର୍ଯ୍ୟନ୍ତ ଓଟାରି ନେଲା ଯେ ଅନ୍ତତଃ ତାହା (ଗଣତନ୍ତ୍ର) ହାତଛଡ଼ା ହେଲା ।"

ଅଷ୍ଟିନ ପୁଣି କହନ୍ତି, "କିନ୍ତୁ ଇମର୍ଜେନ୍‌ସି ଦ୍ୱାରା ଯେଉଁ ଉଦ୍ଦେଶ୍ୟର ପରିପୂରଣ ହେଲା, ତାହା କେବେ ଆକାଂକ୍ଷିତ ନଥିଲା । .... ଜଣେ ବ୍ୟକ୍ତିର ରାଜନୈତିକ ସତ୍ତାକୁ ସୁରକ୍ଷିତ ରଖିବା ପାଇଁ ତାକୁ ଲାଗୁ କରାଯାଇଥିଲା ।" ରେଲୱେ ଧର୍ମଘଟ ବା ନବନିର୍ମାଣ ଆନ୍ଦୋଳନ ପରି ସାଧାରଣ ସଙ୍କଟ, ଯେତେ ଗମ୍ଭୀର ହେଉନା କାହିଁକି, ତାକୁ ପ୍ରତିହତ କରିବା ପାଇଁ ଇନ୍ଦିରାଙ୍କ ଆଇନ ଅସ୍ତ୍ରାଗାରରେ ଯଥେଷ୍ଟ ଶକ୍ତି ରହିଥିଲା । ପ୍ରଥମଟିକୁ ସେ ଭାଙ୍ଗି ଦେଇ ଦ୍ୱିତୀୟଟି ସହିତ ବୁଝାମଣା କଲେ । ମାତ୍ର ଆହ୍ଲାବାଦ ରାୟ ସତ୍ତ୍ୱେ ଯେତେବେଳେ ସେ ନିଷ୍ପତ୍ତି ନେଲେ ଯେ ଅସ୍ଥାୟୀ ରୂପରେ ମଧ୍ୟ ଇସ୍ତଫା ଦେବେ ନାହିଁ, ସେତେବେଳେ ବିରୋଧୀ ଦଳ ନେତାମାନଙ୍କୁ ଜେଲରେ ରଖିବା ଏବଂ ଗଣମାଧ୍ୟମକୁ ଚୁପ୍ କରିବା ବ୍ୟତୀତ ଅନ୍ୟ ବିକଳ୍ପ ନଥିଲା । ଅନ୍ୟଥା, ଯେଉଁ ପରିସ୍ଥିତିରେ ଜେପି ଯୁଦ୍ଧ ଡ଼ାକରା ଦେଉଥିଲେ ଏବଂ ସମ୍ବାଦପତ୍ରମାନେ ରାଗରେ ଇନ୍ଦିରାଙ୍କ ଉପରେ ରକ୍ତ ଚାଉଳ ଚୋବାଉଥିଲେ, ତାଙ୍କ ନିଷ୍ପତ୍ତି କାର୍ଯ୍ୟକାରୀ ହୋଇ ପାରିନଥାନ୍ତା । ଏହି ପରିପ୍ରେକ୍ଷୀରେ ଇମର୍ଜେନ୍‌ସି ଲାଗୁ କରିବାରେ କୌଣସି ଭୁଲ ନଥିଲା ; ବରଂ ଭୁଲ ରହିଲା ସମ୍ବାଦପତ୍ର ଉପରେ ପୂର୍ଣ୍ଣ କଟକଣା ଜାରି କରିବାରେ ବୋଲି ଯେଉଁମାନେ ଯୁକ୍ତି ବାଢ଼ନ୍ତି ତାହା ନିହାତି ବୋକାମୀର କଥା । ଖୁସବନ୍ତ ସିଂ ଇମର୍ଜେନ୍‌ସିକୁ ପ୍ରତ୍ୟାହାର ନକରି ସମ୍ବାଦପତ୍ର ଉପରେ କଟକଣାକୁ ଦୂର କରିବାପାଇଁ ଯେତେବେଳେ ନିବେଦନ କଲେ, ଇନ୍ଦିରା ଗାନ୍ଧି ସଂକ୍ଷିପ୍ତ ଉତ୍ତର ଦେଲେ, "କଟକଣା ବିନା ଇମର୍ଜେନ୍‌ସି ରହିପାରିବ ନାହିଁ ।"

ଅଷ୍ଟିନଙ୍କର ଅନ୍ୟ ଏକ ଅଭିମତ ମଧ୍ୟ ଉଲ୍ଲେଖନୀୟ । "ଇମର୍ଜେନ୍‌ସିରେ ବର୍ବରତା ରହିଥିଲା, ହେଲେ ୧୯୭୬ ମସିହାର ନୂଆଦିଲ୍ଲୀକୁ ଆଡ଼ଲଫ ହିଟଲର ଅଧୀନସ୍ଥ ବର୍ଲିନ ସାଙ୍ଗରେ ତୁଳନା କରାଯାଇ ନପାରେ ।" ଏହି ଉକ୍ତିକୁ ଆଗକୁ ନେଇ ଜଣେ ହୁଏତ କହିପାରେ "ଷ୍ଟାଲିନଙ୍କ ମସ୍କୋ, ମାଓଙ୍କର ବେଜିଂ, ପିନୋଚେଟଙ୍କର ସି ସାଣ୍ଟିଏଗୋ କିମ୍ବା ଜିଆ ଉଲ୍ ହକଙ୍କର ଇସଲାମାବାଦ ସାଙ୍ଗରେ ମଧ୍ୟ ସେତେବେଳର ଦିଲ୍ଲୀକୁ ତୁଳନା କରାଯାଇ ନପାରେ ।" ପ୍ରସିଦ୍ଧ ଲେଖକ ଏବଂ ଇନ୍ଦିରା ଗାନ୍ଧିଙ୍କର ଜୀବନୀ ଲେଖକ ସ୍ୱର୍ଗତଃ ଡ଼ମ ମୋରାସ କେବେ ଇମର୍ଜେନ୍‌ସିର ସମର୍ଥକ ନଥିଲେ । ତଥାପି, ସେ ଲେଖିଛନ୍ତି, (ଇନ୍ଦିରା ଗାନ୍ଧିଙ୍କର) ବିରୋଧୀମାନେ ଅଦୃଶ୍ୟ ହୋଇଗଲେ । ଅନେକ ଦିନ ଯାଏ ତାଙ୍କ ସମ୍ବନ୍ଧରେ କିଛି ଶୁଣିବାକୁ ମିଳିଲା ନାହିଁ । ଅନ୍ୟ ଦେଶ ହୋଇଥିଲେ ସେମାନଙ୍କୁ ହତ୍ୟା କରି ଗାତ ବା ଅନ୍ୟ ନିଭୃତ କୋଠରିରେ ପୋତି ଦିଆଯାଇଥାନ୍ତା । ସେହି ନେତୃବର୍ଗ ଯେ ଜୀବିତ ରହିଥିଲେ ତାହାହିଁ ହେଲା ୧୯୭୫ ମସିହା ଜରୁରୀ ପରିସ୍ଥିତିର ବୈଶିଷ୍ଟ୍ୟ ।

ନାଗରିକର ଜୀବନ ଓ ସ୍ୱାତନ୍ତ୍ର୍ୟର ଅଧିକାରକୁ ନିଲମ୍ବିତ କରି ରଖିବାର ଏକ ଭୟାବହ ପରିସ୍ଥିତି ସୃଷ୍ଟି ହେବାରେ ଇନ୍ଦିରା କ'ଣ ଏକା ଦାୟୀ ? ଏହା କିଛି କମ ମହତ୍ତ୍ୱପୂର୍ଣ୍ଣ ପ୍ରଶ୍ନ ନୁହେଁ ! ଗଣତନ୍ତ୍ରରେ ସ୍ଥାପିତ ଅନ୍ୟ ସଂସ୍ଥାଗୁଡ଼ିକର ମୁଖ୍ୟ ବା କାର୍ଯ୍ୟରତ ଅନ୍ୟ ଅଧିକାରୀମାନେ ଏଥିପାଇଁ କ'ଣ ଆଦୌ ଦାୟୀ ନଥିଲେ ? ଜୁନ ୨୦୦୫ରେ ଇମର୍ଜେନ୍‌ସିର ୩୦ ବର୍ଷ ପୂର୍ତ୍ତି ଉପଲକ୍ଷେ

ଆୟୋଜିତ ଏକ ସଭାରେ ପ୍ରଖ୍ୟାତ ଆଇନଜୀବୀ ଫଲି ନରିମାନ ସର୍ବୋଚ୍ଚ ନ୍ୟାୟପାଳିକାର ଦୁର୍ବଳତାକୁ ଦୟନୀୟ ଭାବେ ପଦାରେ ପକାଇ ଦେଲେ । ଇମର୍ଜେନ୍‌ସି ଲାଗୁ ହେବାର କିଛିଦିନ ଭିତରେ ଭାରତର ସର୍ବୋଚ୍ଚ ବିଚାରପତି ଏବଂ ଅନ୍ୟ ତିନିଜଣ ବିଚାରପତି ସମ୍ପୂର୍ଣ୍ଣ ବିପରୀତ ଦିଗରେ ଯାଇ "ବ୍ୟକ୍ତି ସ୍ୱାତନ୍ତ୍ର୍ୟର ସର୍ବୋଚ୍ଚ ମହତ୍ତ୍ୱ" ସମ୍ବନ୍ଧରେ ନିଜର ମତ ପରିବର୍ତ୍ତନ କଲେ । ସମ୍ବାଦପତ୍ରର ଭୂମିକା ସମ୍ବନ୍ଧରେ ତତ୍‌କାଳୀନ ମୋରାରଜୀ ଦେଶାଇ ମନ୍ତ୍ରୀମଣ୍ଡଳରେ ସୂଚନା ମନ୍ତ୍ରୀ ରହିଥିବା ଲାଲକୃଷ୍ଣ ଆଡ଼ଭାନୀ ଯେଉଁ ମନ୍ତବ୍ୟ ଦେଇଛନ୍ତି, ତା ବଦଳରେ ଅନ୍ୟ କୌଣସି ମତର ଆବଶ୍ୟକତା ନାହିଁ । ଦଳେ ସାମ୍ବାଦିକଙ୍କୁ ସେ କହିଲେ, "ଆପଣମାନଙ୍କୁ କେବଳ ମୁଣ୍ଡ ନୁଆଁଇବାକୁ କୁହାଯାଇଥିଲା । ହେଲେ ଆପଣମାନେ ତା' ବଦଳରେ ଆଣ୍ଠେଇବାକୁ ପସନ୍ଦ କଲେ ।"

ଏଠାରେ ଆଉ ଦୁଇଟି କଥା ବି ବେଶ ମହତ୍ତ୍ୱପୂର୍ଣ୍ଣ । ପ୍ରଥମ, ଯେଉଁ ଜନତା ପାର୍ଟି ଇନ୍ଦିରାଙ୍କୁ ପରାଜିତ କଲା, ସେହି ଜନତା ପାର୍ଟି ମଧ୍ୟ ସମ୍ବିଧାନକୁ ଉପେକ୍ଷା କଲା ଏବଂ ଇମର୍ଜେନ୍‌ସି ଘୋଷଣା ନକରି ମଧ୍ୟ ନିର୍ଦ୍ଦୟ ଭାବରେ ଗଣତାନ୍ତ୍ରିକ ନୀତି ନିୟମକୁ ଉଲଙ୍ଘନ କଲା । ଇନ୍ଦିରା, ଇନ୍ଦିରାଙ୍କ ପୁଅ ସଞ୍ଜୟ ଏବଂ ଅନ୍ୟ ସହଯୋଗୀମାନଙ୍କ ଉପରେ ପ୍ରତିଶୋଧ ପରାୟଣ ହୋଇ ଯାହାସବୁ ପଦକ୍ଷେପ ନିଆଗଲା ତାହା ଇମର୍ଜେନ୍‌ସିର ଦୌରାତ୍ମ୍ୟ ଅପେକ୍ଷା କମ୍ ଜଘନ୍ୟ ନୁହେଁ । ଦୁଃଖର କଥା ଯେ ଅଟଳ ବିହାରୀ ବାଜପାୟୀଙ୍କ ସରକାର ସମେତ ପରବର୍ତ୍ତୀ ସରକାରଗୁଡ଼ିକରେ ମଧ୍ୟ ପରିସ୍ଥିତିରେ କୌଣସି ପରିବର୍ତ୍ତନ ଦେଖାଯାଇନାହିଁ ।

ଦ୍ୱିତୀୟତଃ, ଆହୁରି ମହତ୍ତ୍ୱପୂର୍ଣ୍ଣ ବିଷୟ ହେଲା ଆଉ ଯାହା ହେଉନା କାହିଁକି ଇମର୍ଜେନ୍‌ସିରେ ଏହା ସାବ୍ୟସ୍ତ ହେଲା ଯେ କେବଳ ଗଣତାନ୍ତ୍ରିକ ପଦ୍ଧତିରେ ହିଁ ଯଥସମ୍ଭବ ଭାରତକୁ ଶାସନ କରାଯାଇପାରିବ, ଅନ୍ୟଥା ଆଦୌ ଶାସନ କରାଯାଇ ପାରିବ ନାହିଁ । ଅନ୍ୟ ଶବ୍ଦରେ କହିଲେ, ଯେଉଁ ଭାବରେ ବା ହେଉ ଭାରତ ସିଦ୍ଧ କରିଦେଲା ଯେ ଇମର୍ଜେନ୍‌ସିକୁ ଆଉ କଦାପି ଲାଗୁ କରାଯାଇ ନପାରେ ।

ଏହି ପରିପ୍ରେକ୍ଷୀରେ ଏହା ଆଦୌ ଅତିଶୟୋକ୍ତି ନୁହେଁ ଯେ ସ୍ୱେଚ୍ଛାରେ ନିର୍ବାଚନ ଘୋଷଣା କରି ଇନ୍ଦିରା ଅନ୍ତତଃ ନିଜକୁ ପାପମୁକ୍ତ କଲେ । ନିର୍ବାଚନ ଘୋଷଣା କରିବାକୁ ତାଙ୍କ ଉପରେ କୌଣସି ଚାପ ପଡ଼ି ନଥିଲା । ସାଙ୍ଗରେ ଏହା ମଧ୍ୟ କମ ଗୌରବର କଥା ନୁହେଁ ଯେ ନିର୍ବାଚନରେ ପରାଜିତ ହେବାପରେ ସେ ଅକ୍ଲେଶରେ କ୍ଷମତା ହସ୍ତାନ୍ତର କଲେ । ଏହା ସତ୍ତ୍ୱେ ଇମର୍ଜେନ୍‌ସି ତାଙ୍କ ଜୀବନ ଇତିହାସରେ ଏକ କଳଙ୍କିତ ଅଧ୍ୟାୟ ଭାବରେ ନିଶ୍ଚିତ ଭାବେ ସ୍ଥାନିତ ହୋଇ ରହିବ । କିନ୍ତୁ ତା ସହିତ ଏକଥା ବି ସତ ଯେ ସେହି କଳଙ୍କ ଦେଶ ପ୍ରତି ତାଙ୍କର ଅନନ୍ୟ ସେବାକୁ ପୋଛିଦେଇ ପାରିବ ନାହିଁ, ଊଣା ବି କରିପାରିବ ନାହିଁ ।



— ୯ —

# ବିଦାୟ ଇନ୍ଦିରା, ଜନତା ସ୍ୱାଗତଂ

୧୯୭୭ ନିର୍ବାଚନରେ ଇନ୍ଦିରାଙ୍କ ପରାଜୟକୁ ନେଇ କାହାରି ମନରେ ଦ୍ୱିଧା ନଥିଲା । ହେଲେ ନିର୍ବାଚନର ଫଳାଫଳ ସ୍ପଷ୍ଟହେବା ପରେ ସମସ୍ତେ ହତଚକିତ ରହିଗଲେ । ଲୋକସଭାର ୫୪୨ଟି ଆସନରୁ ଜନତା ଏବଂ ତା' ସହଯୋଗୀ ଦଳକୁ ୩୩୦ଟି ଆସନରେ ବିଜୟ ଲାଭ ହେଲା । ଜନତା ଓ ଗଣତାନ୍ତ୍ରିକ କଂଗ୍ରେସ ଦଳ ମିଶି ମୋଟ ୨୯୮ଟି ଲୋକସଭା ଆସନରେ ଜିଣି ପୂର୍ଣ୍ଣସଂଖ୍ୟା ଗରିଷ୍ଠତା ହାସଲ କଲେ । କଂଗ୍ରେସ ଦଳ ମାତ୍ର ୧୫୪ଟି ଆସନ ଲାଭ କଲା । ଦଳର ମୁଖ୍ୟ ନେତୃବୃନ୍ଦଙ୍କୁ ଶୋଚନୀୟ ପରାଜୟର ସମ୍ମୁଖୀନ ହେବାକୁ ପଡ଼ିଲା । ୧୯୭୧ ମସିହାରେ ମିଳିଥିବା ମୋଟ ୪୩.୬ ପ୍ରତିଶତ ଭୋଟରୁ ଆସି ୧୯୭୭ରେ ମିଳିଲା ମାତ୍ର ୩୪.୫ ପ୍ରତିଶତ । ତା'ଠାରୁ ମଧ୍ୟ ବଡ଼ ଧକ୍କା ହେଲା ନିଜ ପୁରୁଣା ପ୍ରତିଦ୍ୱନ୍ଦ୍ୱୀ ରାଜ ନାରାୟଣଙ୍କ ହାତରେ ଇନ୍ଦିରାଙ୍କ ବହୁମତ ବ୍ୟବଧାନରେ ପରାଜୟ । ସଞ୍ଜୟ ମଧ୍ୟ ଜଣେ ଅନାମଧେୟ ସ୍ଥାନୀୟ ପ୍ରତିଦ୍ୱନ୍ଦ୍ୱୀ ହାତରେ ଶୋଚନୀୟ ଭାବେ ପରାଜୟ ବରଣ କଲେ । ପରାଜୟ ପରି ଏକାମାତ୍ରାରେ ଉଲ୍ଲେଖନୀୟ ଥିଲା ମତଦାନ ବିଧିରେ ପ୍ରତିଫଳିତ ହୋଇଥିବା ଭୌଗୋଳିକ ପୃଥକୀକରଣ । ଉତ୍ତର ଭାରତରେ ଜନତା ପାର୍ଟି କଂଗ୍ରେସକୁ ନିଶ୍ଚିହ୍ନ କରି ନିର୍ବାଚନ ଜିଣିଲା । ଅଥଚ ଦକ୍ଷିଣ ଭାରତରେ ତାର କୌଣସି ପ୍ରବେଶ ରହିଲା ନାହିଁ । ସେଠାରେ କଂଗ୍ରେସର ସମର୍ଥନ ଅତୁଟ ରହିଲା । କଂଗ୍ରେସ ମୋଟ ୧୫୪ଟି ଆସନରୁ ୯୨ଟି ଆସନ ଜିଣିଥିଲା ଦକ୍ଷିଣ ଭାରତୀୟ ରାଜ୍ୟରେ । ଉତ୍ତର ଭାରତର ହିନ୍ଦୀ ବହୁଳ ରାଜ୍ୟରେ ତାକୁ ମାତ୍ର ଦୁଇଟି ଆସନ ଲାଭ ହେଲା ।

ଉତ୍ତର ଓ ଦକ୍ଷିଣରେ ଇମର୍ଜେନ୍‌ସି କେତେ ଦୃଢ଼ତାର ସହ ଲାଗୁ ହୋଇଥିଲା, ତାହା ମତଦାନ ବିଧିରୁ ପ୍ରତିଫଳିତ ହୁଏ । ଦକ୍ଷିଣରେ ଏବଂ ମହାରାଷ୍ଟ୍ର ଭଳି ପଶ୍ଚିମ ଭାଗରେ ଉତ୍ତର ଭାରତ ତୁଳନାରେ ଖୁବ୍ କମ ପରିମାଣରେ ନିୟମ ବହିର୍ଭୂତ ଗିରଫଦାରୀ, ବାଧ୍ୟତାମୂଳକ ବନ୍ଧ୍ୟାକରଣ ଏବଂ ଧମକ ଚମକର ଘଟଣା ଘଟିଥିଲା । ଛଅ ବର୍ଷ ପୂର୍ବରୁ ଇନ୍ଦିରାଙ୍କର ଆଶାତୀତ ବିଜୟକୁ ଲୋକ ଯେଉଁ ଉତ୍ସାହରେ ସ୍ୱାଗତ କରିଥିଲେ, ଏଥର ନିର୍ବାଚନ ଫଳାଫଳ ଦିନ ସେହି ଏକା ଉତ୍ସାହରେ ତାଙ୍କ ଶୋଚନୀୟ ପରାଜୟରେ ଲୋକ ବିଜୟୋତ୍ସବ ପାଳନ କରୁଥିଲେ ।

ଏଥିରୁ ବଳି ବିଡ଼ମ୍ବନାର ବିଷୟ ଆଉ କ'ଣ ବା ହୋଇପାରେ ? ସେଦିନ ରାତିରେ ଖୁବ୍ ଥଣ୍ଡା ପଡ଼ିଥାଏ । ତଥାପି ମଧ୍ୟରାତ୍ରିରେ ମୁଁ ଯେତେବେଳେ ଟାଇମ୍‌ସ ଅଫ୍ ଇଣ୍ଡିଆ ଅଫିସରୁ ଫେରିଲି ଚାରିଆଡ଼େ ବହୁ ସଂଖ୍ୟାରେ ଲୋକ ଏକତ୍ରିତ ହୋଇ କଂଗ୍ରେସ ପରାଜୟର ପ୍ରତ୍ୟେକଟି ଫଳାଫଳକୁ ଖୁସିରେ ସ୍ୱାଗତ କରୁଥାନ୍ତି । 'ଫ୍ଲିଟ ଷ୍ଟ୍ରିଟ୍'ର ଆଲୋକିତ ସୂଚନା ପଟଗୁଡ଼ିକରେ ଯେତେବେଳେ ଇନ୍ଦିରା ଗାନ୍ଧିଙ୍କ ବ୍ୟକ୍ତିଗତ ପରାଜୟର ଖବର ବାହାରିଲା, ଲୋକ ଖୁସିରେ ନାଚିବା ଆରମ୍ଭ କରିଦେଲେ । ଏମାନଙ୍କ ମଧ୍ୟରୁ ଅନେକ ଲୋକ ବ୍ୟାଙ୍କ ଜାତୀୟକରଣ ସମୟରେ ବି ନିଶ୍ଚୟ ଆନନ୍ଦ ମୁଖର ହୋଇ ନାଚିଥିବେ !

ପ୍ରଧାନମନ୍ତ୍ରୀ ନିବାସରେ ବିଷାଦ ଛାଇହୋଇ ରହିଥାଏ, ଅନ୍ୟପକ୍ଷରେ ଜନତା ପାର୍ଟି ପାଇଁ ବିଜୟୋତ୍ସବର ପ୍ରମୁଖ କେନ୍ଦ୍ର ହୋଇଥାଏ ଜଗଜୀବନ ରାମଙ୍କର ସରକାରୀ ବଙ୍ଗଳା । ମନ୍ତ୍ରୀ ପଦରୁ ଇସ୍ତଫା ଦେଲା ପରେ ଛଅ ମାସ ପର୍ଯ୍ୟନ୍ତ ସେଠି ସେ ନିୟମତଃ ରହିପାରିବେ । ସଞ୍ଜୟ ଗାନ୍ଧି ଏବଂ ତାଙ୍କ ସ୍ତ୍ରୀ ମନେକା ନିଜ ନିର୍ବାଚନ ମଣ୍ଡଳୀରୁ ଫେରି ନଥାନ୍ତି । ଇନ୍ଦିରାଙ୍କର ବଡ଼ ପୁଅ ରାଜୀବ ଓ ତାଙ୍କ ଇଟାଲୀ ଜନ୍ମିତ ପତ୍ନୀ ସୋନିଆ, ସେତେବେଳେ ରାଜନୀତିରୁ ପୂର୍ଣ୍ଣ ଦୂରତା ରଖୁଥିବା ସତ୍ତ୍ୱେ, ଦୁଃଖରେ ଏତେ ବିଷର୍ଣ୍ଣ ଯେ ରାତିରେ ଭୋଜନ କରିପାରିଲେ ନାହିଁ । ମାତ୍ର ଇନ୍ଦିରା ଭଲଭାବେ ଭୋଜନ କଲେ । ଦୁଇଦିନ ଉତ୍ତାରୁ ନିର୍ବାଚନର ଶେଷ ଫଳାଫଳ ଆସିବା ମାତ୍ରକେ ସେ ପଦରୁ ଇସ୍ତଫା ଦେଲେ । ତାଙ୍କର ଇସ୍ତଫା ଦେବାରେ ଏହି ଡ଼େରି ଯୋଗୁଁ ଉତ୍ତେଜନାମୂଳକ ଗୁଜବ ସୃଷ୍ଟି ହେଲା : ପଦତ୍ୟାଗ କରିବା ପରିବର୍ତ୍ତେ ସେ ସାମରିକ ବାହିନୀକୁ ରାଜନୀତିର କାଦୁଅ ଭିତରକୁ ଟାଣିବା ପାଇଁ ମସୁଧା କରୁଛନ୍ତି । ଗୁଜବ ଯେତେ ମାତ୍ରାରେ ଥିଲା ଆଧାରହୀନ ତତୋଽଧିକ ମାତ୍ରାରେ ଥିଲା ବିପଦଜନକ । ହେଲେ ଗୁଜବକୁ ନିରନ୍ତର ଖୋରାକ ମିଳୁଥାଏ । ଏଥିରୁ ସ୍ପଷ୍ଟ ହୁଏ, ବିଜୟୀ ଦଳ ଇନ୍ଦିରାଙ୍କ ଉପରେ କେତେ ମାତ୍ରାରେ ଅବିଶ୍ୱାସ କରୁଥିଲେ । ଏହାର ବିପରୀତ ଏକ ପରିଦୃଶ୍ୟ ଦେଖିବାକୁ ମିଳିଲା ମାର୍ଚ୍ଚ ୨୩ ତାରିଖ ଦିନ, ଯେତେବେଳେ ଇନ୍ଦିରା କାର୍ଯ୍ୟକାରୀ ରାଷ୍ଟ୍ରପତି ବି.ଡ଼ି. ଜତିଙ୍କ ହାତରେ ତ୍ୟାଗପତ୍ର ଦେବାପାଇଁ ରାଷ୍ଟ୍ରପତି ଭବନରେ ଯାଇ ପହଞ୍ଚିଲେ । ରାଷ୍ଟ୍ରପତି ଫକିରୁଦ୍ଦିନ ଅଲ୍ଲୀ ଅହମ୍ମଦ କିଛି ମାସ ଆଗରୁ ପ୍ରାଣ ହରାଇଥାନ୍ତି । ଜତି କାର୍ଯ୍ୟକାରୀ ରାଷ୍ଟ୍ରପତି ପଦରେ ଦାୟିତ୍ୱ ନିର୍ବାହ କରୁଥାନ୍ତି । ଜତିଙ୍କର ପତ୍ନୀ ଇନ୍ଦିରାଙ୍କୁ ଦେଖି ବିକଳ ଭାବରେ କାନ୍ଦିବାକୁ ଲାଗିଲେ ।

## ଜନତା ଅନ୍ତରା

ଜନସମର୍ଥନର ଜୁଆରରେ ଜନତା ପାର୍ଟି କ୍ଷମତାକୁ ଆସିଲା । ପୂର୍ବବର୍ତ୍ତୀ ସାଧାରଣ ନିର୍ବାଚନମାନଙ୍କର ଇନ୍ଦିରାଙ୍କ ବିଜୟ ଯେଉଁ ଆନନ୍ଦ ଉଲ୍ଲାସ ସୃଷ୍ଟି କରିଥିଲା, ତା ଅପେକ୍ଷା ଜନତା ପାର୍ଟିର ବିଜୟ ଦେଶରେ ବେଶି ଆନନ୍ଦ ଉଲ୍ଲାସ ସୃଷ୍ଟିକଲା । ମାତ୍ର ତାହା ବେଶିଦିନ ପର୍ଯ୍ୟନ୍ତ ରହିଲା ନାହିଁ । ମାତ୍ର ୨୮ ମାସରେ ଜନତା ସରକାର ଭାଙ୍ଗି ପଡ଼ିଲା । ପ୍ରାରମ୍ଭିକ କେତେ ମାସ ଖୁବ୍ ଖୁସିରେ କଟିଲା ।

ଜରୁରୀ ପରିସ୍ଥିତି ସମୟରେ ପ୍ରତ୍ୟାହାର କରି ନିଆଯାଇଥିବା ନାଗରିକ ଅଧିକାର ଏବଂ ଗଣତାନ୍ତ୍ରିକ ସ୍ୱାଧୀନତାର ପୁନଃପ୍ରତିଷ୍ଠା ପାଇଁ ପ୍ରଶଂସନୀୟ ପଦକ୍ଷେପମାନ ନିଆଗଲା । ଇନ୍ଦିରାଙ୍କ ବୟାଳିଶତମ ସମ୍ବିଧାନ ସଂଶୋଧନ ଅଧିନିୟମର ଅଧିକାଂଶ ଜଘନ୍ୟ ଏବଂ ଅଗଣତାନ୍ତ୍ରିକ ଉପାଦାନକୁ ଚଉରାଳିଶତମ ସମ୍ବିଧାନ ସଂଶୋଧନ ବିଧେୟକରେ ପ୍ରତ୍ୟାହାର କରି ନିଆଗଲା । ଏଥିରେ ଲୋକ ଖୁବ୍ ଉଲ୍ଲସିତ ହେଲେ । ଚଭନ ଓ ବ୍ରହ୍ମାନନ୍ଦ ରେଡ୍ଡିଙ୍କ ନେତୃତ୍ୱରେ ପରିଚାଳିତ କଂଗ୍ରେସ ପାର୍ଲାମେଣ୍ଟାରି ଦଳ ସହଯୋଗ ବିନା କଦାପି ଉକ୍ତ ସଂଶୋଧନ ସମ୍ଭବପର ହୋଇନଥାନ୍ତା । କାରଣ ଦୁଇ - ତୃତୀୟାଂଶ ସଂଖ୍ୟା ବହୁଳତା ତ ପଛ କଥା, ରାଜ୍ୟସଭାରେ ଜନତା ପାର୍ଟିର ଏପରିକି ସାଧାରଣ ବହୁମତ ବି ନଥିଲା ।

ଏହି ଅବଧି ଭିତରେ ଅଧିକାଂଶ ସମୟ ଇନ୍ଦିରା ଦୁଃଖରେ ମ୍ରିୟମାନ ହୋଇ ରହୁଥାନ୍ତି । ନିଜର ଅପମାନଜନକ ପରାଜୟ ଏବଂ ଅନିଶ୍ଚିତ ଭବିଷ୍ୟତକୁ ନେଇ ଦୁଃଶ୍ଚିନ୍ତା ଥାଏ । ମାତ୍ର ତାହା ଚିନ୍ତାର ପ୍ରମୁଖ କାରଣ ନୁହେଁ । ବଡ଼ ଦୁଶ୍ଚିନ୍ତା ହେଲା, ସଞ୍ଜୟର ସେମାନେ କ'ଣ ସବୁ କ୍ଷତିସାଧନ କରିବେ । ଜନତାପାର୍ଟିର ନିର୍ବାଚନ ବିଜୟ ଯାତ୍ରାରେ ଗୋଟାଏ ମୁଖ୍ୟ ସ୍ଲୋଗାନ ହେଲା, "ସଞ୍ଜୟକୁ ଫାଶି ଦିଅ" । ଦିଲ୍ଲୀର ତୁର୍କମାନ ଗେଟରେ ସହର ସୁନ୍ଦରୀକରଣ ପାଇଁ ବସ୍ତି ଉଚ୍ଛେଦ କାର୍ଯ୍ୟକ୍ରମର ବିରୋଧ କରି ପୋଲିସ ଗୁଳିରେ ଅନେକ ଲୋକ ପ୍ରାଣ ହରାଇଥିଲେ । ଦାବି ହେଉଥାଏ, ସେଠିକି ଆଣି ସଞ୍ଜୟ ଗାନ୍ଧିକୁ ଧରିବାନ୍ଧି ବନ୍ଧ୍ୟାକରଣ କରାଯାଉ ଏବଂ ତାଙ୍କୁ ତାଙ୍କ ନିଜ ତିଆରି ଔଷଧର ପରିଣାମ ଭୋଗିବାକୁ ବାଧ କରାଯାଉ । ସେ ଧରଣର କିଛି ଅଘଟଣ ଘଟିବାର ଆଶଙ୍କା କରି କର୍ତ୍ତୃପକ୍ଷ ଇନ୍ଦିରାଙ୍କର ସରକାରୀ ନିବାସରେ ଅଧିକ ସୁରକ୍ଷା ବ୍ୟବସ୍ଥା କରିଥାନ୍ତି । ପ୍ରଧାନମନ୍ତ୍ରୀ ପଦ ଗ୍ରହଣ କଲାପରେ ମୋରାରଜୀ ଦେଶାଇ ଇନ୍ଦିରାଙ୍କୁ ଭେଟିବାକୁ ଯାଇ ସେଠିକାର ସୁରକ୍ଷା ବ୍ୟବସ୍ଥା ଦେଖିଲେ । ଏହା ତାଙ୍କୁ ପସନ୍ଦ ହେଲାନାହିଁ । ଏମିତିରେ ବି ଇନ୍ଦିରାଙ୍କୁ ୧୨, ୱେଲିଂଟ୍‌ନ କ୍ରେସେଣ୍ଟର ଛୋଟିଆ ବଙ୍ଗଳାକୁ ଘର ବଦଳାଇବାର ଥିଲା । ସେଠି ସବୁକିଛି ପୂର୍ବାପେକ୍ଷା ବିପରୀତ ସ୍ଥିତିରେ । ଯେଉଁ ଗୁପ୍ତଚର ସଂସ୍ଥାମାନେ ତାଙ୍କ ଦୀର୍ଘ କାର୍ଯ୍ୟକାଳ ସମୟରେ ବିରୋଧୀମାନଙ୍କ ଗତିବିଧି ଉପରେ ତୀକ୍ଷ୍ଣ ଦୃଷ୍ଟି ରଖୁଥିଲେ, ଏବେ ସେମାନେ ସର୍ବଦା ତାଙ୍କ ଉପରେ ଆଖି ରଖିଛନ୍ତି । ପରିବେଶ ସାଙ୍ଗରେ ଖାପ ଖୁଆଇ ମିଶି ରହିବାପାଇଁ ସେମାନଙ୍କର ସବୁ ପ୍ରକାର ପ୍ରୟାସ ସତ୍ତ୍ୱେ ସେମାନେ ଧରାପଡ଼ିଯାଉଥାନ୍ତି, ଯାହା ପରିସ୍ଥିତିକୁ ଅଧିକ କୌତୁକପୂର୍ଣ୍ଣ କରେ ।

ସେ ଯାହାହେଉ, ସରକାରୀ ଗୁପ୍ତଚରମାନେ ଇନ୍ଦିରାଙ୍କୁ ଭେଟିବାକୁ ଆସୁଥିବା ଅତିଥିମାନଙ୍କର ନାଁ ଏବଂ ଗାଡ଼ି ନମ୍ବର ହିଁ କେବଳ ଟିପି ରଖୁଥାନ୍ତି । କାରଣ, ଇନ୍ଦିରା ନୀରବ, ନିଷ୍କ୍ରିୟ ହୋଇ ରହିଥାନ୍ତି । ଅନେକ ଦିନ ପର୍ଯ୍ୟନ୍ତ ସେ ତ ନିଜ ନୂଆ ଘର ବାହାରକୁ ବି ବାହାରି ନଥିଲେ । କଂଗ୍ରେସ କାର୍ଯ୍ୟକାରୀ ସମିତିର ପ୍ରଥମ ବୈଠକ ନିର୍ବାଚନ ପରିଣାମ ପ୍ରକାଶ ପାଇବାର ତିନିଦିନ ଉତ୍ତାରୁ ଅନୁଷ୍ଠିତ ହେଲା । ସେ ପ୍ରଧାନମନ୍ତ୍ରୀ ନିବାସ ଛାଡ଼ି ନଥାନ୍ତି । ସେ ବୈଠକରେ

ଯୋଗ ଦେବାକୁ ମନାକଲେ । ଶେଷରେ ଦଳର ତିନିଜଣ ବରିଷ୍ଠ ନେତା ଆସି ଅନୁରୋଧ କଲାପରେ ଯାଇ ନିଜ ନିଷ୍ପତ୍ତି ପରିବର୍ତ୍ତନ କଲେ । ବୈଠକରେ ସେ ଦଳର ଶୋଚନୀୟ ପରାଜୟ ପାଇଁ "ନିଜକୁ ସମ୍ପୂର୍ଣ୍ଣ" ଦାୟୀ କଲେ । ତା' ସାଙ୍ଗକୁ "ଜାତ ହୋଇଥିବା ଅଭାବନୀୟ ପରିସ୍ଥିତି ପାଇଁ ସେ ଗଭୀର ଦୁଃଖ ପ୍ରକାଶ" କଲେ । ମାତ୍ର ଇମର୍ଜେନ୍‌ସି ଘୋଷଣା ସମ୍ପର୍କରେ ତାଙ୍କର କୌଣସି ଅନୁଶୋଚନା ନଥିଲା । ବରଂ ଇମର୍ଜେନ୍‌ସିର ସେ ଯଥାର୍ଥତା ପ୍ରମାଣ କଲେ । ଏହାପରେ ସେ ବୈଠକରୁ ଉଠି ଚାଲିଆସିଲେ । ତାଙ୍କୁ ଜଣାଥିଲା ବୈଠକରେ ସମ୍ମିଳିତ ଅନେକ ନେତା, ଯେଉଁମାନେ ଇମର୍ଜେନ୍‌ସି ବେଳେ ଉଚ୍ଚ ପଦପଦବୀ ଲାଭ କରିଛନ୍ତି, ବିଦ୍ରୋହର ସ୍ୱର ବୁଣୁଥିଲେ । ଇମର୍ଜେନ୍‌ସିର 'ଦୌରାତ୍ମ୍ୟ' ତଥା ଇନ୍ଦିରା ଓ ସଞ୍ଜୟଙ୍କୁ ନିନ୍ଦା କରିବାପାଇଁ ସେମାନେ ସୁଯୋଗ ଉଣ୍ଢୁଥିଲେ । ଶେଷରେ ତାହା ହିଁ ହେଲା । ସିଦ୍ଧାର୍ଥ ଶଙ୍କର ରାୟ ଯିଏ 'ଆଭ୍ୟନ୍ତରୀଣ'ଜରୁରୀ ପରିସ୍ଥିତିର କଳ୍ପନା ଜଳ୍ପନାକୁ ଜନ୍ମ ଦେଇଥିଲେ, ଏବଂ ଦଳର ସଭାପତି ଦେବକାନ୍ତ ବରୁଆ, ଯିଏ "ଇନ୍ଦିରା ହିଁ ଭାରତ ଓ ଭାରତ ହିଁ ଇନ୍ଦିରା" ବୋଲି ଲଜ୍ଜାକର ସ୍ଲୋଗାନ ସୃଷ୍ଟି କରିଥିଲେ, ସେମାନେ ହିଁ ଇନ୍ଦିରା ବିରୋଧୀ ଆକ୍ରମଣକର ନେତୃତ୍ୱ ନେଲେ । ଯଶୋବନ୍ତ ରାଓ ବଳବନ୍ତ ରାଓ ଚଭନ, ଯିଏ କଂଗ୍ରେସ ପାର୍ଲିଆମେଣ୍ଟାରି ଦଳର ନେତା ଭାବେ ନିଯୁକ୍ତ ହୋଇଥିଲେ, ପ୍ରଧାନମନ୍ତ୍ରୀ ଦେଶାଇଙ୍କର ନିଲମ ସଂଜିବ ରେଡ୍ଡିଙ୍କୁ ସର୍ବସମ୍ମତି ଭାବେ ରାଷ୍ଟ୍ରପତି ପ୍ରାର୍ଥୀ କରିବା ସଂକ୍ରାନ୍ତୀୟ ପ୍ରସ୍ତାବକୁ ତତ୍‌କ୍ଷଣାତ୍ ସ୍ୱୀକାର କରିନେଲେ । ସେଥିପାଇଁ ଇନ୍ଦିରାଙ୍କ ଠାରୁ ସାମାନ୍ୟ ପରାମର୍ଶ ବି ନିଆଗଲା ନାହିଁ । ସଂଜିବ ରେଡ୍ଡିଙ୍କର ପ୍ରାର୍ଥିତ୍ୱକୁ ନେଇ ୧୯୬୯ ମସିହାରେ ଦିନେ କଂଗ୍ରେସ ଦଳ ବିଭାଜିତ ହୋଇଥିଲା । ପ୍ରସ୍ତାବ ଶୁଣି ଇନ୍ଦିରା ଚୁପ୍ ରହିଲେ ସିନା, ତାଙ୍କର ମନେ ହେଲା ତାଙ୍କୁ 'ପ୍ରତାରିତ' କରାଯାଇଛି ।

ସମୟକ୍ରମେ ବ୍ରହ୍ମାନନ୍ଦ ରେଡ୍ଡିଙ୍କ ସଭାପତିତ୍ୱରେ ପରିଚାଳିତ କଂଗ୍ରେସ କାର୍ଯ୍ୟକାରୀ କମିଟି ଏବଂ ପାର୍ଲିଆମେଣ୍ଟାରି ଦଳ ଅଭିଯୋଗ ଓ ପ୍ରତ୍ୟାଭିଯୋଗର ଆଘାତରେ ଖଣ୍ଡବିଖଣ୍ଡିତ ହେବାକୁ ଲାଗିଲା । ଇନ୍ଦିରା ଗାନ୍ଧିଙ୍କର ସକ୍ରିୟ ରାଜନୀତିକୁ ପୁନଃପ୍ରବେଶ ସମ୍ବନ୍ଧୀୟ ନିଷ୍ପତ୍ତିକୁ କଂଗ୍ରେସ ନେତୃବର୍ଗ ସନ୍ଦେହ ଦୃଷ୍ଟିରେ ଦେଖିବାକୁ ଲାଗିଲେ । ଇନ୍ଦିରା ଗାନ୍ଧିଙ୍କର କହିବା କଥା ଯେ, ତାଙ୍କ ଉପରେ ଏବଂ ବିଶେଷକରି ସଂଜୟ ଉପରେ ଜନତା ପାର୍ଟିର ଆକ୍ରମଣକୁ ପ୍ରତିରୋଧ କରିବାପାଇଁ ସକ୍ରିୟ ରାଜନୀତିରେ ପୁନଃପ୍ରବେଶ ହିଁ ଏକମାତ୍ର ବିକଳ୍ପ । ସାଧୁପୁରୁଷ ଜିଡୁ କୃଷ୍ଣମୂର୍ତ୍ତି ଯେତେବେଳେ ତାଙ୍କୁ ସକ୍ରିୟ ରାଜନୀତିକୁ ସମ୍ପୂର୍ଣ୍ଣ ରୂପେ ତ୍ୟାଗ କରିବାକୁ ପରାମର୍ଶ ଦେଲେ, ତାର ଉତ୍ତରରେ ଇନ୍ଦିରା କହିଲେ, "ମୋ ଆଗରେ କେବଳ ଦୁଇଟି ବିକଳ୍ପ ରହିଛି - "ହୁଏତ ଲଢ଼ିବି, ନୋହିଲେ ସେମାନେ ମୋତେ ନିଶ୍ଚିହ୍ନ କରିଦିଅନ୍ତୁ ବୋଲି ପଞ୍ଜୁରୀ ଭିତରେ ଚଢ଼େଇ ପରି ଚୁପ୍‌ଚାପ ବସି ରହିବି ।"

## ପ୍ରତିଶୋଧର ନାନାବିଧ ରୂପ

ଜନତା ପାର୍ଟିର ଘୋଷଣାପତ୍ର ଅନୁଯାୟୀ କେବଳ ଇମର୍ଜେନ୍‌ସି ପାଇଁ ଇନ୍ଦିରା ଗାନ୍ଧିଙ୍କୁ ଦାୟୀ କରାଯିବ ନାହିଁ, ସାଙ୍ଗରେ ତାଙ୍କର ଅନ୍ୟ ସମସ୍ତ ଭୁଲଭଟକା ପାଇଁ ବି ଦଣ୍ଡ ଦିଆଯିବ । ନିର୍ବାଚନ ପରେ ତାଙ୍କ ବିରୋଧରେ କଠୋର କାର୍ଯ୍ୟାନୁଷ୍ଠାନ ପାଇଁ ଅଧିକ ଦୃଢ଼ଭାବେ ଦାବି କରାଗଲା । ଏଥିରେ ଅବଶ୍ୟ ଆଶ୍ଚର୍ଯ୍ୟ ହେବାର କିଛି ନଥିଲା । ଉତ୍‌କ୍ଷିପ୍ତ ଜନମତକୁ ଯଦି ଉପେକ୍ଷା ବି କରାଯାଏ, ତେବେ ଜନତା ପାର୍ଟିର ୩୦୨ ଜଣ ନିର୍ବାଚିତ ଲୋକସଭା ସଦସ୍ୟଙ୍କ ମଧ୍ୟରୁ ୨୨୨ ଜଣ ସଦସ୍ୟ ଥିଲେ କେବଳ ହିନ୍ଦୀ ଭାଷୀ ଅଞ୍ଚଳରୁ, ଯେଉଁଠି ଇମର୍ଜେନ୍‌ସିର ଦୌରାତ୍ମ୍ୟ ସବୁ ସୀମାକୁ ଉଲଙ୍ଘନ କରି ଯାଇଥିଲା । ପ୍ରତି ଦଶଜଣଙ୍କ ମଧ୍ୟରୁ ଆଠ ଜଣ ସଦସ୍ୟ ଇମର୍ଜେନ୍‌ସିରେ ଜେଲଦଣ୍ଡ ଭୋଗିଥିଲେ । ଅଧିକାଂଶ ସଦସ୍ୟଙ୍କର କୌଣସି ନିର୍ବାଚିତ ପ୍ରତିନିଧି ସଭାରେ, ଏପରିକି ମ୍ୟୁନସିପାଲିଟିରେ ବି କାମ କରିବାର ଅଭିଜ୍ଞତା ନଥିଲା । ଆଉ ତ ଆଉ ଆଇନର ଶାସନ ସମ୍ବନ୍ଧରେ ବି ସେମାନଙ୍କର କୌଣସି ସ୍ୱଚ୍ଛ ଧାରଣା ନଥିଲା । ସବୁ ସଦସ୍ୟଙ୍କର କେବଳ ଗୋଟାଏ ପ୍ରବଳ ଇଚ୍ଛା, "ମା ଆଉ ପୁଅକୁ ତାଙ୍କର ଅପରାଧ ପାଇଁ ଶୀଘ୍ରାତିଶୀଘ୍ର ମନେରହିଲା ଭଳି କଠୋର ଦଣ୍ଡ ପ୍ରଦାନ କରାଯାଉ ।"

ଜନତା ପାର୍ଟିର ଦଳୀୟ ନେତୃତ୍ୱ ଭିତରେ ଏ କଥାକୁ ନେଇ ଭିନ୍ନ ଭିନ୍ନ ମତ ପ୍ରକାଶ ପାଉଥାଏ । ମୋରାରଜୀ ଦେଶାଇଙ୍କର ଆପ୍ତ ବାକ୍ୟ ହେଲା, ଆଇନ "ତା ବାଟରେ ଚାଲିବା ଉଚିତ" । ଗୃହମନ୍ତ୍ରୀ ଚରଣ ସିଂ, ଯାହାଙ୍କର ସରକାରୀ ପଦକ୍ଷେପକୁ କାର୍ଯ୍ୟକାରୀ କରିବା ହେଲା ଦାୟିତ୍ୱ, ଭୂତପୂର୍ବ ପ୍ରଧାନମନ୍ତ୍ରୀଙ୍କର ଅନ୍ତତଃ "ନ୍ୟୁରେଂବର୍ଗ କିସମର ବିଚାର" ହେଉ ବୋଲି ଚାହୁଁଥିଲେ । ଆଇନ ବିଶେଷଜ୍ଞମାନେ ଯେତେବେଳେ ପରାମର୍ଶ ଦେଲେ ଯେ ସମ୍ବିଧାନରେ କିମ୍ବା ଭାରତୀୟ ନ୍ୟାୟପାଳିକାରେ ସେ ଧରଣର ବିଚାର ପାଇଁ ବ୍ୟବସ୍ଥା ନାହିଁ, ସେ ସେମାନଙ୍କ କଥାକୁ ସ୍ୱୀକାର କରିବା ପାଇଁ ପ୍ରସ୍ତୁତ ନଥିଲେ ।

ଇନ୍ଦିରା, ସଞ୍ଜୟ ଏବଂ ଅନ୍ୟମାନଙ୍କୁ କେଉଁ ଧରଣର ଦଣ୍ଡ ଦିଆଯିବ, ସେ ନେଇ ଯେତେବେଳେ ଯୁକ୍ତିତର୍କ ଚାଲିଥାଏ ଦେଶାଇ ସରକାର ଅନେକଗୁଡ଼ିଏ ତଦନ୍ତ କମିଶନ ଗଠନ କରିବାକୁ ଲାଗିଲେ । ତନ୍ମଧ୍ୟରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ଏବଂ ସୁଦୂର ପ୍ରଭାବୀ ଥିଲା ଶାହ କମିଶନ । ଭାରତର ଜଣେ ଭୂତପୂର୍ବ ସର୍ବୋଚ୍ଚ ନ୍ୟାୟାଧୀଶ ଜେ.ସି. ଶାହ ଥିଲେ ଏହାର ଏକମାତ୍ର ସଦସ୍ୟ । ତାଙ୍କ ନାଁ ଅନୁସାରେ କମିଶନର ନାମକରଣ ହୋଇଥିଲା । ଇମର୍ଜେନ୍‌ସି ସମୟରେ ହୋଇଥିବା ସମସ୍ତ ପ୍ରକାର ଦୌରାତ୍ମ୍ୟ ଏବଂ କ୍ଷମତାର ଅପବ୍ୟବହାର ପ୍ରଶ୍ନକୁ ତଦନ୍ତ କରିବାପାଇଁ କମିଶନଙ୍କୁ ଦାୟିତ୍ୱ ଦିଆଯାଇଥିଲା । ଅପବ୍ୟବହାରକାରୀ "ସର୍ବୋଚ୍ଚ ରାଜନୀତିକ କ୍ଷମତାସୀନ ହେଉ ବା ତଳିଆ କର୍ମଚାରୀ ହୁଅନ୍ତୁ", ସେଥିରେ କିଛି ଯାଏ ଆସେ ନାହିଁ ।

୧୯୭୭ ମସିହା ସେପ୍‌ଟେମ୍ବର ୩୦ ତାରିଖ ଦିନ କମିଶନର କାର୍ଯ୍ୟ ଆରମ୍ଭ ହେଲା । ଆମେରିକା କଂଗ୍ରେସର ତଦନ୍ତ ଏବଂ ଚୀନର ଜନ ଅଦାଲତ ଭିତରେ ଏକ ମଝିମଝିକିଆ

ସଂସ୍ଥା ଭଳି ପ୍ରଥମରୁ ହିଁ କମିଶନ କାମ ଆରମ୍ଭ କଲା । କମିଶନର ଲୋକାରଣ୍ୟ ଚେମ୍ବରର ପରିବେଶ ଅତ୍ୟଧିକ ମାତ୍ରାରେ ଥାଏ ଇନ୍ଦିରା ବିରୋଧୀ । ଇନ୍ଦିରା ବିପକ୍ଷରେ ପ୍ରଦତ୍ତ ତଥ୍ୟକୁ ଶୁଣି ସେଠାରେ ଉପସ୍ଥିତ ଥିବା ଲୋକସମୂହ ଉଲ୍ଲସିତ ହୁଅନ୍ତି । ଇନ୍ଦିରା ସମର୍ଥନରେ ସାମାନ୍ୟ ମତଟିଏ ପ୍ରକାଶ ପାଇଲେ ବି ତାକୁ ଅଗ୍ରାହ୍ୟ କରିଦିଆଯାଏ । ଇନ୍ଦିରା ନିଜେ କମିଶନ ଆଗରେ ଦୁଇଥର ହାଜର ହେଲେ । ମାତ୍ର ଦୃଢ଼ତାର ସହ ସତ୍ୟପାଠ କରିବାକୁ ମନା କରିଦେଲେ । ପ୍ରଧାନମନ୍ତ୍ରୀ ପଦ ସମ୍ଭାଳିବା ବେଳେ ନେଇଥିବା ଗୋପନୀୟତାର ଶପଥକୁ ସେ ଉଲଙ୍ଘନ କରିପାରିବେ ନାହିଁ କିମ୍ବା ନିଜକୁ "ଅପରାଧୀ" ଘୋଷଣା କରିପାରିବେ ନାହିଁ ବୋଲି ସେ ଯୁକ୍ତି କଲେ । ଏଥିପାଇଁ ତାଙ୍କ ନାଁରେ ଆଉ ଏକ ଫୌଜଦାରୀ ମାମଲା ରୁଜୁ କରାଗଲା । ଅସଂଖ୍ୟ ମାମଲା ଭିତରେ ଗୋଟାଏ ହାସ୍ୟାସ୍ପଦ ମାମଲାରେ ତାଙ୍କ ବିରୋଧରେ ଅଭିଯୋଗ ଥିଲା ଯେ ସେ କେତୋଟି କୁକୁଡ଼ା "ଚୋରୀ" କରିଛନ୍ତି । ସଞ୍ଜୟ ବିରୁଦ୍ଧରେ ଦାୟର ହୋଇଥିବା ଫୌଜଦାରୀ ମାମଲାଗୁଡ଼ିକ ଥିଲା ଅତି ଗମ୍ଭୀର । ତନ୍ମଧ୍ୟରୁ ଗୋଟାକରେ ଅଭିଯୋଗ ହୋଇଥିଲା ଯେ ସେତେବେଳର ସୂଚନାମନ୍ତ୍ରୀ ବିଦ୍ୟାଚରଣ ଶୁକ୍ଳଙ୍କ ସାଙ୍ଗରେ ମିଶି ସେ "କିସ୍‌ସା କୁର୍ସି କା" (ଚଉକିର କାହାଣୀ) ନାମକ ଏକ ଇନ୍ଦିରା ବିରୋଧୀ ସିନେମାକୁ ପୋଡ଼ି ନଷ୍ଟ କରିଦେଇଥିଲେ । ଏଠି ଚଉକିକୁ "କ୍ଷମତା"ର ସାଙ୍କେତିକ ଅର୍ଥରେ ଆମକୁ ବୁଝିବାକୁ ହେବ ।

ସେ ଯାହାହେଉ ଶାହ କମିଶନର ବୈଠକ ପ୍ରତିଦିନ ଗଡ଼ି ଚାଲିଥାଏ । ଦିନକୁ ଦିନ ଫୌଜଦାରୀ ମାମଲାଗୁଡ଼ିକ କଚ୍ଛପଗତିରେ ଚାଲୁଥିବା ବିଚାର ବିଭାଗର ଜଳ ଭଉଁରିରେ ପଡ଼ି ଅନ୍ତର୍ଦ୍ଧାନ ହେବାକୁ ବସିଲେ । ଏତେବେଳକୁ ଜନତା ପାର୍ଟିର ଦୁର୍ଭାଗ୍ୟ ଓ ଇନ୍ଦିରାଙ୍କର ସୌଭାଗ୍ୟକୁ ଦେଶରେ ଅନେକ ନୂଆ ପରିବର୍ତ୍ତନମାନ ଦେଖିବାକୁ ମିଳିଲା । କେତୋଟି ପ୍ରାରମ୍ଭିକ ଯଶଲାଭ ପରେ ଜନତା ସରକାର ଫମ୍ପା ପ୍ରମାଣିତ ହେଲା, ଲୋକସମ୍ମାନ ହରାଇଲା । ବିଡ଼ମ୍ବନାର ବିଷୟ ଏହି ଯେ ଇମର୍ଜେନ୍‌ସି ଉଠାରୁ ସ୍ୱାଭାବିକତା ଫେରିଲା, ସାଙ୍ଗରେ ବିଶୃଙ୍ଖଳା ମଧ୍ୟ ବୃଦ୍ଧି ପାଇଲା । କାରଣ, ରାଜନୈତିକ ବନ୍ଦୀଙ୍କ ସାଙ୍ଗରେ ଜନତା ସରକାର ଅନେକ ଅପରାଧୀ, "ଗୁଣ୍ଡା" ଚୋରାବେପାରୀ, ଲାଭଖୋର ଏବଂ ମହଜୁଦକାରୀଙ୍କୁ ମଧ୍ୟ ଜେଲରୁ ମୁକ୍ତ କରିଥିଲେ । ଦେଶର ଖୋଦ ରାଜଧାନୀରେ ଅପରାଧ ଏତେ ମାତ୍ରାରେ ବୃଦ୍ଧି ପାଇଲା ଯେ କିଛି ଲୋକ ଇମର୍ଜେନ୍‌ସିର "ଶୃଙ୍ଖଳାବୋଧ"କୁ ଝୁରି ହେଲେ । ଚାରିଆଡ଼େ ପୋଲିସ ଦଳ ବିଶୃଙ୍ଖଳା ଓ ବିଶ୍ୱାସଘାତକତାର ଶିକାର ହେଲା, କାରଣ ଅଧା ପୋଲିସ ବଳକୁ ଆଉ ଅର୍ଦ୍ଧେକ ପୋଲିସ ବିରୁଦ୍ଧରେ ଇମର୍ଜେନ୍‌ସି ଦୌରାତ୍ମ୍ୟକୁ ତଦନ୍ତ କରିବାକୁ ନିର୍ଦ୍ଦେଶ ମିଳିଲା । ଚାରିଆଡ଼େ ପୋଲିସ ବିଭାଗ ଭିତରେ ଅଶାନ୍ତି ଓ ବିଦ୍ରୋହର ସୂତ୍ରପାତ ହେଲା । ଜନତା ପାର୍ଟିର ଦୁର୍ଭାଗ୍ୟକୁ ସେତେବେଳେ ଦେଶର ଆର୍ଥିକସ୍ଥିତି ମଧ୍ୟ ସଙ୍କଟାପନ୍ନ । ତା' ପଛରେ ଅନ୍ୟତମ କାରଣ ହେଲା ଅନାବୃଷ୍ଟି । ସାଙ୍ଗକୁ ଆଉ ଏକ ପ୍ରମୁଖ କାରଣ ହେଲା ଲୋଭୀ ବେପାରୀମାନେ ଉନ୍ମୁକ୍ତତାର ଫାଇଦା ନେଇ ବିନା ପ୍ରତିବନ୍ଧକରେ ମନମୁତାବକ ଦରଦାମ ବୃଦ୍ଧି କରିବାରେ ଲାଗିଲେ ।

ଜନତା ସରକାର ସମୟରେ ଅରାଜକ ଶାସନ ଯୋଗୁଁ ହେଉ ବା ପ୍ରଶାସନିକ ଦୁର୍ବଳତା ଯୋଗୁଁ ହେଉ ସବୁଠାରୁ ବେଶି ଓ ମାତ୍ରାଧିକ ଅତ୍ୟାଚାର ହେଲା ହରିଜନମାନଙ୍କ ଉପରେ । ଆଜିକାଲି ଅବଶ୍ୟ ସେମାନେ ଦଳିତ ନାମରେ ପରିଚିତ । ଏଭଳି ଭୟାବହ କାଣ୍ଡ ଆଗରୁ ବି ଘଟିଛି, ମାତ୍ର ତାର ସଂଖ୍ୟା ଓ ନୃଶଂସତାର ପରିମାଣ ଅତୀତରେ କେବେ ଏତେ ତୀବ୍ର ନଥିଲା । ଜନତା ପାର୍ଟିର ସମର୍ଥକ ଜାତି ସାଙ୍ଗରେ ସମସ୍ୟାଟିର କିଛି କିଛି ସମ୍ପର୍କ ରହିଥିଲା । ଚରଣ ସିଂଙ୍କ ପ୍ରତି ଆନୁଗତ୍ୟ ରଖିଥିବା ମଝି ମଝିକିଆ ଜାତିର ଲୋକ ଇମର୍ଜେନ୍‌ସି ସମୟରେ ହରିଜନମାନଙ୍କୁ ମିଳିଥିବା ଛୋଟକାଟର ସୁବିଧାକୁ ସହ୍ୟ କରିପାରିଲେ ନାହିଁ ।

ଜନତା ସରକାରର ଏତେ ଶୀଘ୍ର ଅଧୋପତନ ହେବା ପଛରେ ଆଉ ଏକ ମୌଳିକ କାରଣ ହେଲା ଶୀର୍ଷ ସ୍ଥାନୀୟ ନେତୃବୃନ୍ଦଙ୍କ ମଧ୍ୟରେ ରହିଥିବା ତୀବ୍ର ଓ ନିରନ୍ତର ଅନ୍ତର୍ବିବାଦ । ଦଳ ଚାରୋଟି ଭିନ୍ନ ଭିନ୍ନ ଦଳକୁ ନେଇ ଗଠିତ ହୋଇଥିଲା । ଏହି ଦଳମାନେ ନିରନ୍ତର ନିଜ ନିଜ ଭିତରେ ଶକ୍ତି ପ୍ରଦର୍ଶନ କରିବାକୁ ଲାଗିଲେ । ଶେଷରେ ଏହା ହିଁ ଜନତା ସରକାରର ଅଧୋପତନର ବାଟ ସୃଷ୍ଟିକଲା । ଇନ୍ଦିରାଙ୍କର ପରାଜୟ ଓ ଜନତା ପାର୍ଟିର ବିଜୟ ଉଲ୍ଲାସରେ ନେତା ନିର୍ବାଚନବେଳେ ଦଳର ଅସାମର୍ଥ୍ୟକୁ ଦେଶ ଯଥେଷ୍ଟ ଗୁରୁତ୍ୱ ଦେଇନଥିଲା । ମୋରାରଜୀ ଦେଶାଇ, ଚରଣ ସିଂ ଓ ଜଗଜୀବନ ରାମ ଥିଲେ ଦଳର ତିନି ଜଣ ଶୀର୍ଷ ସ୍ତରୀୟ ନେତା । ସେମାନେ କେହି କାହାରି ନେତୃତ୍ୱକୁ ସ୍ୱୀକାର କରିବାପାଇଁ ପ୍ରସ୍ତୁତ ନଥିଲେ । ଜେପି ଏବଂ ସକ୍ରିୟ ରାଜନୀତିରୁ ଉର୍ଦ୍ଧ୍ୱରେ ରହିଥିବା ଅନ୍ୟଜଣେ ସମ୍ମାନୀୟ ନେତା, ଆଚାର୍ଯ୍ୟ କୃପାଲିନି ଶେଷରେ ମୋରାରଜୀ ଦେଶାଇଙ୍କ ସମର୍ଥନରେ ଅନ୍ୟ ଦୁହିଁଙ୍କୁ କୌଣସି ମତେ ରାଜି କରାଇଲେ । ହେଲେ ଏହା ବେଶିଦିନ ପର୍ଯ୍ୟନ୍ତ ଫଳପ୍ରଦ ହେଲାନାହିଁ । ଇନ୍ଦିରାଙ୍କୁ "ଯଥୋଚିତ ଦଣ୍ଡ" ଦେବା ପ୍ରଶ୍ନକୁ ନେଇ ସେମାନଙ୍କ ମଧ୍ୟରେ ଅନ୍ତର୍ବିବାଦ ଘନୀଭୂତ ହେବାକୁ ଲାଗିଲା ।

ଠିକ୍ ଏହି ସମୟରେ ୧୯୭୭ ମେ ୨୩ ତାରିଖ ଦିନ ପାର୍ଲିଆମେଣ୍ଟରେ ଚରଣ ସିଂ ଅଭିଯୋଗ କଲେ ଯେ ଇନ୍ଦିରା ଗାନ୍ଧି "ଇମର୍ଜେନ୍‌ସି ବେଳେ ସମସ୍ତ ବିରୋଧୀ ଦଳ ନେତାଙ୍କୁ ହତ୍ୟା କରିବାପାଇଁ ଯୋଜନା କିମ୍ବା ଷଡ଼ଯନ୍ତ୍ର କରିଥିଲେ ।" ସୁଯୋଗ ଅପେକ୍ଷାରେ ଥିବା ଇନ୍ଦିରାଙ୍କୁ ଏହା ଜନତା ସରକାରକୁ ପ୍ରତିଆକ୍ରମଣ କରିବାପାଇଁ ଅବସର ଦେଲା । ଗୃହମନ୍ତ୍ରୀଙ୍କ ଅଭିଯୋଗକୁ ସେ "ହାସ୍ୟାସ୍ପଦ ଓ ଜଘନ୍ୟ" ଆଖ୍ୟା ଦେଇ ଖଣ୍ଡନ କଲେ । ସାଙ୍ଗରେ ଏକଥା ବି କହିଲେ ନିଜେ ଚରଣ ସିଂ ଏବଂ ଅଟଳ ବିହାରି ବାଜପାୟୀଙ୍କ (ଜନତା ସରକାରରେ ବୈଦେଶିକ ମନ୍ତ୍ରୀ) "ସ୍ୱାସ୍ଥ୍ୟହାନି ହେବାର ପ୍ରଥମ ସୂଚନା" ମିଳିବା ମାତ୍ରକେ ସେମାନଙ୍କୁ ଜେଲରୁ ମୁକ୍ତି ଦିଆଯାଇଥିଲା । "ହତ୍ୟା ପାଇଁ ଚକ୍ରାନ୍ତ କରିଥିବା" ବ୍ୟକ୍ତି କେବେ ତାହା କରିନପାରେ । ଜନତା ସରକାର ତାଙ୍କ ଉପରେ ଅଯଥା "କାଦୁଅ ବୋଳିବା" ବନ୍ଦ କରି ବରଂ "ହରିଜନଙ୍କ ଉପରେ ଅତ୍ୟାଚାର", "ଆଇନ ବିଶୃଙ୍ଖଳା" ଏବଂ "ଦରଦାମ ବୃଦ୍ଧି" ଆଦି ଜଟିଳ ସମସ୍ୟା ଉପରେ ଧ୍ୟାନ ଦେବା କଥା ।

ଏହି ବିବୃତ୍ତି ଦେଲାପରେ ସେ ବିହାରର ଏକ ନିପଟ ମଫସଲ ଗାଁ ବେଲଚି ଅଭିମୁଖେ ପ୍ରସ୍ଥାନ କଲେ । ନିରସ୍ତ୍ର ହରିଜନମାନଙ୍କ ଉପରେ ସେଠି ଏକ ଜଘନ୍ୟ ହତ୍ୟାକାଣ୍ଡ ସଂଘଟିତ ହୋଇଥାଏ । କୋଡ଼ି କୋଡ଼ି ଲୋକଙ୍କୁ ଜୀଅନ୍ତା ଜାଳିପୋଡ଼ି ଦିଆଯାଇଥାଏ । ସାଙ୍ଗରେ ହରିଜନ ମହିଳାମାନଙ୍କ ଉପରେ ଗଣଧର୍ଷଣ କରାଯାଇଥାଏ । ବର୍ଷା ଦିନ । ବେଲଚିକୁ ଯାଇଥିବା ସବୁ ରାସ୍ତାରେ ଆଣ୍ଠୁଏ ଲେଖା କାଦୁଅ । ସେଠି ପ୍ରବେଶର ସବୁ ରାସ୍ତା ବନ୍ଦ । ଜଣେ ଗ୍ରାମବାସୀଠାରୁ ହାତୀଟିଏ ମାଗି ତା'ଉପରେ ବସି ଇନ୍ଦିରା ବେଲଚିରେ ଯାଇ ପହଞ୍ଚିଲେ । ଅନାହାର ଆଉ ଅର୍ଦ୍ଧାହାରରେ ଦିନ କାଟୁଥିବା ତଥା ଜଘନ୍ୟ ଅତ୍ୟାଚାରର ଶିକାର ହୋଇଥିବା ଲୋକଙ୍କର ଦୁଃଖ ଦେଖି ସେ କାନ୍ଦି ପକାଇଲେ । ସେଠାକାର ଲୋକ ବି ଅଶ୍ରୁପାତ କଲେ ଏବଂ ତାଙ୍କ ବିରୁଦ୍ଧରେ ଗତ ନିର୍ବାଚନରେ ଭୋଟ ଦେଇଥିବା ହେତୁ କ୍ଷମାଭିକ୍ଷା କଲେ । ଇନ୍ଦିରା ଗର୍ବିତ ଅନୁଭବ କଲେ । ତାଙ୍କର ମନେହେଲା, ଏବେ ବି ସବୁକିଛି ଶେଷ ହୋଇଯାଇନାହିଁ ।

ବେଲଚିର ହାତୀ ଆରୋହଣ ଉତ୍ତାରୁ ସେ ଟ୍ରେନ୍ ଏବଂ ମୋଟର ଚଢ଼ି ନିଜ ନିର୍ବାଚନ ମଣ୍ଡଳୀ ଲକ୍ଷ୍ନୌ ନିକଟସ୍ଥ ରାଏବରେଲୀକୁ ଗସ୍ତ କଲେ । କାରଣ "ବିମାନ ଟିକେଟ କିଣିବା ପାଇଁ ତାଙ୍କର ସାମର୍ଥ୍ୟ ନଥିଲା ।" ଗାର୍ଡ଼ିଆନ ପତ୍ରିକାର ସମ୍ବାଦଦାତା ସାଇମନ ୱିନଚେଷ୍ଟର ଇନ୍ଦିରାଙ୍କ ସାଙ୍ଗରେ ଯାତ୍ରା କରୁଥିଲେ । ସେ ଲେଖିଲେ, ତାଙ୍କୁ ଯେଉଁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ବାଟସାରା ମିଳୁଥାଏ ତାର ସିଧାସିଧା ଅର୍ଥ ହେଲା ନିର୍ବାଚନକର୍ତ୍ତା ଜନତା "ତାଙ୍କୁ ପୂରାପୂରି କ୍ଷମାକରି ସାରିଲେଣି ।" ଅଧିକାଂଶ ଭାରତୀୟ ସମ୍ବାଦପତ୍ରମାନେ କିନ୍ତୁ ଏହାର ଠିକ୍ ଓଲଟା ଲେଖିଲେ । ସେମାନଙ୍କର ବିସ୍ତୃତ ବିବରଣୀରେ ଇନ୍ଦିରାଙ୍କ ଆଗରେ ପ୍ରଦର୍ଶିତ କଳା ପତାକାକୁ ମହତ୍ତ୍ୱ ଦିଆଗଲା । ଇମର୍ଜେନ୍ସି ବେଳେ ଆକ୍ରମଣର ଶିକାର ହୋଇଥିବା ଏବଂ ବର୍ତ୍ତମାନ ପ୍ରତିଆକ୍ରମଣ କରୁଥିବା ଗଣମାଧ୍ୟମର ଇନ୍ଦିରାଙ୍କ ପ୍ରତି ରହିଥିବା ପକ୍ଷପାତିତା ଏଥିରୁ ସ୍ପଷ୍ଟ ଜଣାପଡ଼େ । ତା ସହିତ ଏକଥା ବି ସ୍ପଷ୍ଟ ହୁଏ ଯେ ଯେତେବେଳ ଯାଏଁ ଇନ୍ଦିରା ହିଁ ଲକ୍ଷ୍ୟ କେହି ବସ୍ତୁନିଷ୍ଠା ପାଇଁ ଆଗ୍ରହୀ ନୁହନ୍ତି । ଉଭୟ ପବିତ୍ର ନଗରୀ ହରିଦ୍ୱାର ଏବଂ ଐତିହାସିକ ନଗରୀ ଆଗ୍ରାରେ ବିଶାଳ ଜନତା ତାଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଦେଲେ । ସାଙ୍ଗରେ ଅଳ୍ପ କେତେକ ଲୋକ ତାଙ୍କ ବିରୁଦ୍ଧରେ କଳାପତାକା ମଧ୍ୟ ପ୍ରଦର୍ଶନ କଲେ । ଜନତା ପାର୍ଟିର କିଛି ସମର୍ଥକ ତାଙ୍କ କାର ଉପରକୁ ଟେକା ମଧ୍ୟ ଫିଙ୍ଗିଲେ ।

ଏସବୁ ଦେଖି ଜନତା ପାର୍ଟିର କଠୋରପନ୍ଥୀମାନେ ରାଗରେ ନିଆଁବାଣ ହୋଇପଡ଼ିଲେ । ସେମାନଙ୍କର ଦାବି ଯେ, ଇନ୍ଦିରାଙ୍କୁ ଦେଶସାରା ସଗର୍ବେ ଅଭିଯାନରେ ଯିବାପାଇଁ ସରକାର ଅନୁମତି ନଦେଇ ବରଂ ତାଙ୍କ ନିମିତ୍ତ ଯଥୋଚିତ ସ୍ଥାନ, ଜେଲର ସେଲରେ ତାଙ୍କୁ ରଖନ୍ତୁ । ଗୃହମନ୍ତ୍ରୀ ଚରଣ ସିଂ ତୁରନ୍ତ କାର୍ଯ୍ୟାନୁଷ୍ଠାନ ଆରମ୍ଭକଲେ । ଗାନ୍ଧି ଦିବସର ପରଦିନ ଅର୍ଥାତ୍ ଅକ୍ଟୋବର ତିନି ତାରିଖରେ କେନ୍ଦ୍ରୀୟ ତଦନ୍ତ ବ୍ୟୁରୋର ଅଧିକାରୀମାନେ ସ୍ଥାନୀୟ ପୋଲିସ ସାଙ୍ଗରେ ମିଶି ଇନ୍ଦିରାଙ୍କୁ ଗିରଫ କରିବା ସକାଶେ ତାଙ୍କ ନିବାସରେ ଯାଇ ପହଞ୍ଚିଲେ । ଯା ପରେ ଆଶାତୀତ ଭାବରେ ପରିସ୍ଥିତି ଏମିତି ଜଟିଳ ହୋଇପଡ଼ିଲା ଯେ ଶେଷରେ ଜନତା

ପାର୍ଟିକୁ ହିଁ ଅପମାନ ସହ୍ୟ କରିବାକୁ ପଡ଼ିଲା । ପୋଲିସ ସାଙ୍ଗରେ ଯିବାପାଇଁ ଇନ୍ଦିରା ପ୍ରସ୍ତୁତ ହେବାବେଳେ ଘର ଆଗରେ ସମର୍ଥକମାନଙ୍କର ଏକ ବିଶାଳ ଭିଡ଼ ଜମାହୋଇ ତାଙ୍କ ଗିରଫଦାରୀର ବିରୋଧ କଲେ । ଲୋକ ପୋଲିସ ଜିପର ଅନୁସରଣ କଲେ । ଯେତେବେଳେ ଦିଲ୍ଲୀ ସୀମା ପାରହୋଇ ତାଙ୍କୁ ପଡ଼ୋଶୀ ହରିଆନା ସୀମାନ୍ତକୁ ନିଆଗଲା, ସେ ଏକ ରାସ୍ତାକଡ଼ର ପୁଲିଆ ଉପରେ ବସିପଡ଼ି ଆଗକୁ ଯିବାକୁ ସିଧା ମନା କଲେ । ଇତ୍ୟବସରରେ ସମର୍ଥକଙ୍କ ଭିଡ଼ ବୃଦ୍ଧି ପାଉଥାଏ, ବିରୋଧର ମାତ୍ରା ବି ବୃଦ୍ଧି ପାଉଥାଏ । ପରିଶେଷରେ ପୋଲିସ ତାଙ୍କୁ ଦିଲ୍ଲୀ ଫେରସ୍ତ ଆଣିଲା ଏବଂ ପୋଲିସ ଲାଇନରେ ରାତିଟିଏ ବନ୍ଦୀ ଅବସ୍ଥାରେ ରଖିଲା । ପରଦିନ କଂଗ୍ରେସର ଅସମ୍ଭବ ଭିଡ଼ ଓ ଉତ୍ତେଜନାପୂର୍ଣ୍ଣ ପରିସ୍ଥିତିରେ ମାଜିଷ୍ଟ୍ରେଟ୍ କେବଳ ଦୁଇମିନିଟରେ "ତାଙ୍କ ବିରୁଦ୍ଧରେ କୌଣସି ଅଭିଯୋଗ ନାହିଁ", କହି ଇନ୍ଦିରାଙ୍କୁ ଜାମିନରେ ଖଲାସ କରିଦେଲେ । ଯେମିତି ଆକସ୍ମିକ ଭାବେ ତାଙ୍କୁ ଗିରଫ କରାଯାଇଥିଲା, ସେମିତି ଆକସ୍ମିକ ଭାବେ ତାଙ୍କୁ ଖଲାସ ମଧ୍ୟ କରିଦିଆଗଲା । ଏହା ଜନତା ସରକାରର ସ୍ଥିତିକୁ ଖୁବ୍ ହାସ୍ୟାସ୍ପଦ କରିଦେଲା । ଏହାଦ୍ୱାରା ଇନ୍ଦିରା ମଧ୍ୟ ପୁଣି ଥରେ ବିଜୟ ଯାତ୍ରାର ଅଭିଯାତ୍ରୀ ଭାବେ ପ୍ରତିଷ୍ଠା ପାଇଲେ । ଏଣିକି ଅଧିକରୁ ଅଧିକ ସଂଖ୍ୟକ ଦେଶବାସୀ ଏବଂ ସାଙ୍ଗରେ କିଛି ସମାଲୋଚକ ମଧ୍ୟ ଅନୁଭବ କଲେ ଯେ ତାଙ୍କ ବିରୋଧରେ କୌଣସି ଆଇନଗତ କାର୍ଯ୍ୟାନୁଷ୍ଠାନ ଗ୍ରହଣ ନକରି ଅଯଥା ତାଙ୍କୁ ନିର୍ଯାତନା ଦିଆଯାଉଛି । ପରବର୍ତ୍ତୀ ସମୟରେ ପପୁଲ ଜୟକାରଙ୍କ ସଙ୍ଗେ ଏକ ଟେପ୍ ସାକ୍ଷାତକାରରେ ସ୍ୱୟଂ ଅଟଳ ବିହାରୀ ବାଜପେୟୀ ମଧ୍ୟ ଏକଥା ସ୍ୱୀକାର କରିଛନ୍ତି ।

ଗିରଫଦାରୀ ନାଟକର ବହୁ ପୂର୍ବରୁ ଦକ୍ଷିଣ ଗୁଜରାଟର ଆଦିବାସୀ ଅଞ୍ଚଳକୁ ଗସ୍ତ କରିବେ ବୋଲି ଇନ୍ଦିରା ଘୋଷଣା କରିଥିଲେ । ସୁରାଟ ରାସ୍ତାରେ ଯେତେବେଳେ ସେ ବମ୍ବେ ବିମାନ ବନ୍ଦରରେ ପହଞ୍ଚିଲେ, ତାଙ୍କ ସମ୍ବର୍ଦ୍ଧନା ପାଇଁ ଏକତ୍ରିତ ହୋଇଥିବା ବିଶାଳ ଜନସମାଗମକୁ ଦେଖି ବିସ୍ମୟାଭିଭୂତ ହୋଇପଡ଼ିଲେ । ପୁଣି, ସମଗ୍ର ସୁରାଟ ଜିଲ୍ଲାରେ ଆଦିବାସୀମାନେ ଯେଉଁ ସମ୍ମାନର ସହିତ ତାଙ୍କୁ ଅଭ୍ୟର୍ଥନା ଓ ଅଭିନନ୍ଦନ ଜଣାଇଲେ, ତାହା ଏଯାଏଁ ଦିଆଯାଇଥିବା ସବୁ ଅଭ୍ୟର୍ଥନାକୁ ବଳି ପଡ଼ିଲା ।

ଏହାପରେ କ୍ରୋଧ ଜର୍ଜରିତ ଚରଣ ସିଂ, ଦେଶାଇଙ୍କୁ ଏକ କଟୁ ପତ୍ର ଲେଖିଲେ । ସେଥିରେ ସେ ଇନ୍ଦିରାଙ୍କୁ ଶାସ୍ତି ଦେବାରେ ଅସମର୍ଥ ମନ୍ତ୍ରୀମଣ୍ଡଳକୁ, ଯାହାର ସେ ନିଜେ ବି ଜଣେ ବରିଷ୍ଠ ସଦସ୍ୟ, "ନପୁଂସକର ଦଳ" ବୋଲି ଅଭିହିତ କଲେ । ଚିଠି ପାଇ ଦେଶାଇ ତୁରନ୍ତ ଚରଣ ସିଂଙ୍କ ଠାରୁ ଇସ୍ତଫା ଦାବି କଲେ । କାଳବିଳମ୍ବ ନକରି ଚରଣ ସିଂ ମଧ୍ୟ ମନ୍ତ୍ରୀମଣ୍ଡଳରୁ ଇସ୍ତଫା ପତ୍ର ପ୍ରଦାନ କଲେ । ଏହାର ସୁଯୋଗ ନେଇ ଦେଶାଇ ଚରଣ ସିଂଙ୍କ ପଛୁଆଳ ସ୍ୱାସ୍ଥ୍ୟମନ୍ତ୍ରୀ ରାଜନାରାୟଣଙ୍କୁ ମଧ୍ୟ ମନ୍ତ୍ରୀମଣ୍ଡଳରୁ ବିଦାୟ ଦେଲେ । ଦେଶାଇ ଥିଲେ ଜଣେ ଆତ୍ମତୁଷ୍ଟୀଗ୍ରସ୍ତ ଏବଂ ଆତ୍ମନୀତିନିଷ୍ଠ ବ୍ୟକ୍ତି । ସେ ବୁଝିପାରୁ ନଥିଲେ ଯେ ତାଙ୍କ ସରକାରର ପତନର ମଞ୍ଜି ସେ ନିଜେ ବୁଣୁଛନ୍ତି । ଏପଟେ ଚରଣ ସିଂଙ୍କର ସର୍ବଦା ପ୍ରଧାନମନ୍ତ୍ରୀ ପଦ ପାଇଁ

ଭାଳସା ରହିଥିଲା । ଏବେ ଦେଶାଇଙ୍କୁ ଗାଦିଚ୍ୟୁତ କରି ତାଙ୍କ ସ୍ଥାନରେ ଚରଣ ସିଂଙ୍କୁ ଅଧିଷ୍ଠିତ କରିବାପାଇଁ କୁଟିଳ ବିଦୁଷକ ରାଜନାରାୟଣ ଦୃଢ଼ ସଂକଳ୍ପ ନେଲେ । ସେମାନଙ୍କୁ ଅବଶ୍ୟ ଏଥିପାଇଁ ବେଶି ସମୟ ଅପେକ୍ଷା କରିବାକୁ ପଡ଼ିଲା ନାହିଁ ।

## କଂଗ୍ରେସର ଦ୍ୱିତୀୟ ବିଭାଜନ

ଗୋଟାଏ ପକ୍ଷରେ ଯେତେବେଳେ ଇନ୍ଦିରାଙ୍କ ଲୋକପ୍ରିୟତା ପୁଣି ଥରେ ବଢ଼ି ବଢ଼ି ଚାଲିଲା, ଅନ୍ୟପକ୍ଷରେ ବାକି କଂଗ୍ରେସ ନେତୃତ୍ୱ ସାଙ୍ଗରେ ତାଙ୍କ ସମସ୍ୟା ମଧ୍ୟ ବହୁଗୁଣିତ ହେଲା । କଂଗ୍ରେସ ସଭାପତି ଭାବରେ ବ୍ରହ୍ମାନନ୍ଦ ରେଡ୍ଡି ତାଙ୍କ ପ୍ରତି ଉପେକ୍ଷା ଭାବ ପ୍ରଦର୍ଶନ କଲେ ।

କଂଗ୍ରେସ ସଂସଦୀୟ ଦଳର ନେତା ଚଭନ ଥିଲେ ବ୍ୟବହାରରେ ମାର୍ଜିତ, ଅଥଚ ସମସ୍ୟା ପ୍ରତି ଉଦାସୀନ । ସିଦ୍ଧାର୍ଥ ଶଙ୍କର ରାୟ ଓ.ଟି.ଏ. ପାଇ ସମେତ ଆଉ କେତେକ ପୂର୍ବତନ ମନ୍ତ୍ରୀ ଯେଉଁମାନେ ସଞ୍ଜୟଙ୍କ ନିର୍ଦ୍ଦେଶ ପାଳନ କରିବାକୁ ଆଣ୍ଠୁଭାଙ୍ଗି ରହୁଥିଲେ, ଏବେ ଖୁସିରେ ଶାହ କମିଶନ ଆଗରେ ଯାଇ ଇନ୍ଦିରା ଓ ସଞ୍ଜୟ ବିରୁଦ୍ଧରେ ସାକ୍ଷ୍ୟ ପ୍ରଦାନ କରିବାକୁ ଲାଗିଲେ ।

ଇନ୍ଦିରା ସ୍ଥିର ନିଶ୍ଚିତ ହେଲେ ଯେ କଂଗ୍ରେସର ନେତୃତ୍ୱ ସାଙ୍ଗରେ ମିଶି ସେ କାମ କରିପାରିବେ ନାହିଁ । ତେଣୁ ୧୯୭୮ ମସିହା ନୂଆବର୍ଷ ଦିନ କେବଳ ଗୋଟାଏ ଦଶନ୍ଧି ଭିତରେ ଦ୍ୱିତୀୟ ଥର ପାଇଁ କଂଗ୍ରେସକୁ ସେ ବିଭାଜିତ କରିଦେଲେ । ନିଷ୍କପଟ ଭାବେ ଏଥରକ ନୂଆ ଦଳର ନାଁ ରଖାଗଲା ଇନ୍ଦିରା କଂଗ୍ରେସ ବା କଂଗ୍ରେସ (ଆଇ) । ଆରମ୍ଭରେ ତାଙ୍କର ଘନିଷ୍ଠ ବନ୍ଧୁମାନେ ମଧ୍ୟ ତାଙ୍କ ପଦକ୍ଷେପକୁ ନେଇ ସନ୍ଦେହ ପ୍ରକଟ କରୁଥିଲେ । ମାତ୍ର ମାର୍ଚ୍ଚ ମାସରେ ପାଞ୍ଚୋଟି ରାଜ୍ୟର ବିଧାନସଭା ପାଇଁ ଯେତେବେଳେ ନିର୍ବାଚନ ହେଲା, ଇନ୍ଦିରାଙ୍କ ପ୍ରତି କ୍ରମବର୍ଦ୍ଧିଷ୍ଣୁ ଜନସମର୍ଥନକୁ ଦେଖି ଅଚିରେ ସେମାନଙ୍କର ସନ୍ଦେହ ଦୂରିଭୁତ ହେଲା । ଅତ୍ୟଧିକ ଆନୁଗତ୍ୟ ରହିଥିବା ଆନ୍ଧ୍ର ଓ କର୍ଣ୍ଣାଟକରେ ଇନ୍ଦିରା କଂଗ୍ରେସକୁ ବିପୁଳ ବିଜୟ ଲାଭ ହେଲା । ମୋଟରେ ଦଳ ୩୪୯ଟି ବିଧାନସଭା ଆସନରେ ଜୟଯୁକ୍ତ ହେଲା । ଜନତା ପାର୍ଟିକୁ ମିଳିଲା ୨୭ଟି ଆସନ ଓ କଂଗ୍ରେସ (ଏସ୍)କୁ ମିଳିଲା ୧୪୭ଟି ଆସନ । ବ୍ରହ୍ମାନନ୍ଦ ରେଡ୍ଡିଙ୍କ ପରେ ସ୍ୱରଣ ସିଂ କଂଗ୍ରେସ ଦଳର ସଭାପତି ପଦ ବହନ କରିଥିବାରୁ କଂଗ୍ରେସ ଦଳକୁ ଏବେ କଂଗ୍ରେସ (ଏସ) ବୋଲି ନାମିତ କରାଯାଇଥିଲା । ବିଶେଷ ପ୍ରଶଂସନୀୟ ହେଲା ଯଶବନ୍ତ ରାଓ ବଳବନ୍ତ ରାଓ ଚଭନଙ୍କ ଗଡ଼ ଭାବେ ପରିଚିତ ମହାରାଷ୍ଟ୍ରରେ କଂଗ୍ରେସ (ଇ)ର ପ୍ରଭାବଶାଳୀ ପ୍ରଦର୍ଶନ । ଇନ୍ଦିରା ତାଙ୍କୁ ଏବେ "ଦ୍ୱିତୀୟ ଜନତା ଦଳର" କପ୍ତାନ ନାମରେ ଅଭିହିତ କରୁଥିଲେ ।

ଏହି ସମୟରେ ଶାହ କମିଶନର ପ୍ରଥମ ରିପୋର୍ଟ ପ୍ରକାଶ ପାଇଲା । ଏଥିରେ ସ୍ପଷ୍ଟ ଭାବରେ ଜରୁରୀ ପରିସ୍ଥିତି ଘୋଷଣାକୁ ଏକ "ପ୍ରତାରଣା" ବୋଲି ଉଲ୍ଲେଖ କରାଯାଇଥାଏ । ପୁଣି, "ନିଜ ବିରୁଦ୍ଧରେ ଦିଆ ଯାଇଥିବା କୋର୍ଟର ରାୟ ଅନୁସାରେ ନେବାକୁ ଥିବା ନ୍ୟାୟିକ

ପଦକ୍ଷେପ ଏଡ଼ିବା ସକାଶେ "ଇନ୍ଦିରା ଗାନ୍ଧି ଯେଉଁ ପ୍ରାଣପଣେ ଉଦ୍ୟମ" କରୁଥିଲେ, ଇମର୍ଜେନ୍‌ସିକୁ ତାର ନଗ୍ନରୂପ ବୋଲି କୁହାଯାଇଥିଲା । କିନ୍ତୁ ଇନ୍ଦିରାଙ୍କ କ୍ରମବର୍ଦ୍ଧିଷ୍ଣୁ ଲୋକପ୍ରିୟତାରେ ରିପୋର୍ଟର କୌଣସି ପ୍ରଭାବ ପଡ଼ିଲାନାହିଁ । ଦେଶର ଗୋଟାଏ କୋଣରୁ ଅନ୍ୟ କୋଣକୁ ସେ ନିୟମିତ ଗସ୍ତ କଲେ । ସଂଜୟଙ୍କର ସୁରକ୍ଷା ପାଇଁ ପ୍ରାର୍ଥନା କରିବାକୁ ସେ କର୍ଣ୍ଣାଟକର ମଠ ଓ ମନ୍ଦିର ପରିଦର୍ଶନ କଲେ । ପୂଜାବିଧିରେ ପ୍ରଗାଢ଼ ବିଶ୍ୱାସ ରଖିବା ଥିଲା ତାଙ୍କର ଏକ ଦୁର୍ବଳତା । ତାଙ୍କର ଆଶଙ୍କା ଯେ ସଞ୍ଜୟ ଉପରେ ବିପତ୍ତି ପଡ଼ିଛି । ସରକାରୀ ସାକ୍ଷ୍ୟକୁ ସଞ୍ଜୟ କାଳେ "ପ୍ରଭାବିତ ଓ ନଷ୍ଟ" କରିପାରନ୍ତି ଆଶଙ୍କା କରି ସୁପ୍ରିମକୋର୍ଟ ତାଙ୍କୁ "ମାସେ କାଳ ଜେଲରେ ଅଟକ ରଖିବା" ପାଇଁ ଆଦେଶ ଜାରି କରିଥିଲେ । ଖବର ପାଇଲା ମାତ୍ରକେ ଇନ୍ଦିରା ସାଙ୍ଗେ ସାଙ୍ଗେ ବିମାନରେ ଦିଲ୍ଲୀ ଆସି ପହଞ୍ଚିଲେ ଏବଂ ପ୍ରିୟ ପୁତ୍ରକୁ ଭେଟିବାପାଇଁ ବିମାନ ବନ୍ଦରରୁ ସିଧା ତିହାର ଜେଲକୁ ଗଲେ । ସେ ପୁଅକୁ ଆଶ୍ୱାସନା ଦେଲେ ଯେ ଜେଲରେ ହିଁ ହେବ ତାଙ୍କର "ରାଜନୈତିକ ପୁନର୍ଜନ୍ମ" । ଆପାତତଃ ସେ ଭୁଲିଗଲେ ଯେ ଏହାର ମାତ୍ର କେତେ ମାସ ପୂର୍ବରୁ ସେ ଅନିବିଷ୍ଟ ଭାବରେ ସଞ୍ଜୟ "କେବେ ବି ରାଜନୀତି"ରେ ନଥିଲେ ବୋଲି ଦାବି କରିଥିଲେ । ସଞ୍ଜୟ ଜେଲରୁ ଛାଡ଼ ପାଇଲାପରେ ତିନୋଟି ମହତ୍ତ୍ୱପୂର୍ଣ୍ଣ ଘଟଣା ଘଟିଲା । ଇନ୍ଦିରା ଲୋକସଭା ପାଇଁ ପୁନଃପ୍ରତିଦ୍ୱନ୍ଦ୍ୱିତା କରିବାକୁ ନିଷ୍ପତ୍ତି ନେଲେ । ତା'ଠାରୁ ବଡ଼ କଥା, ଅନ୍ତର୍ଦ୍ୱନ୍ଦ୍ୱର ତୀବ୍ରତା ଯୋଗୁଁ ଜନତା ପାର୍ଟି ଭାଙ୍ଗିବାକୁ ଲାଗିଲା । ଦୁଃଖର କଥା ଯେ ଏଥର ଜନତା ପାର୍ଟିକୁ ଆତ୍ମଘାତୀ ଆକ୍ରମଣରୁ ରକ୍ଷା କରିବାପାଇଁ ପାଖରେ ଜେପି ନଥିଲେ । କ୍ଷମତାସୀନ ହେଲା ପରେ ପରେ ଜନତା ସରକାର ତାର ସ୍ରଷ୍ଟାକୁ ଉପେକ୍ଷା କରିବା ଆରମ୍ଭ କରିଦେଲା । ବିଶେଷକରି ଦେଶାଇ ନିଜ ଶୁଭାକାଂକ୍ଷୀଙ୍କୁ ଖୋଲାଖୋଲି ଭାବେ ଅବଜ୍ଞା କଲେ । ଅତ୍ୟନ୍ତ ମାନସିକ ଯାତନାର ଶିକାର ହୋଇ ଜେପି ପାଟନାରେ ଯାଇ ଅବସର ନେଲେ ।

ସବୁ ଘଟଣା ଇନ୍ଦିରାଙ୍କ ସପକ୍ଷରେ, ହେଲେ ସେ ସଞ୍ଜୟଙ୍କର ଭାଗ୍ୟ ଓ ଭବିଷ୍ୟତକୁ ନେଇ ଅତିମାତ୍ରାରେ ଚିନ୍ତାଗ୍ରସ୍ତ । କୌଣସି କାରଣରୁ ତାଙ୍କ ମନରେ ବଦ୍ଧଧାରଣା ସୃଷ୍ଟି ହୋଇଥାଏ ଯେ ଜନତା ସରକାର ହୁଏତ 'କିସା କୁର୍ସିକା' ମାମଲାରେ ଅନ୍ୟୁନ ସାତବର୍ଷ ପାଇଁ ସଞ୍ଜୟଙ୍କୁ ଜେଲରେ ଅଟକ ରଖିବେ ଏବଂ ସେହି ଅବଧି ଭିତରେ ତାଙ୍କ ଉପରେ ଭୀଷଣ ଅତ୍ୟାଚାର କରାଯିବ । ଏହି ଦୁଶ୍ଚିନ୍ତା ତାଙ୍କ ମନରେ ୧୯୭୯ ଫେବୃଆରି ମାସ ଯାଏଁ ରହିଲା, ଯେତେବେଳେ ସମ୍ପୃକ୍ତ ଅଦଲାତ ସଞ୍ଜୟ ଓ ଶୁକ୍ଳଙ୍କୁ ଦୁଇ ବର୍ଷ ପାଇଁ ଜେଲଦଣ୍ଡ ଦେଲେ । ମାତ୍ର ଅଦାଲତର ରାୟ ବିରୁଦ୍ଧରେ ଉପର ଅଦାଲତରେ ଅପିଲ କରିବା ସକାଶେ ଦୁହିଁଙ୍କୁ ଜାମିନ ପାଇଁ ମଧ୍ୟ ଅନୁମତି ଦିଆଗଲା ।

ପାଞ୍ଚଗୋଟି ରାଜ୍ୟ ବିଧାନସଭା ପାଇଁ ଅନୁଷ୍ଠିତ ହୋଇଥିବା ନିର୍ବାଚନ ଉତ୍ତାରୁ ଅର୍ଥାତ ୧୯୭୮ ମାର୍ଚ୍ଚ ମାସ ପରଠାରୁ କଂଗ୍ରେସ (ଏସ୍)ରୁ କଂଗ୍ରେସ (ଆଇ)କୁ ପ୍ରବଳ ମାତ୍ରାରେ ଦଳତ୍ୟାଗ ଆରମ୍ଭ ହେଲା । କର୍ଣ୍ଣାଟକର ଚିକମାଗ୍ଲୁର ଲୋକସଭା ଉପନିର୍ବାଚନରେ ସେ ବହୁ

ସଂଖ୍ୟାରେ ଭୋଟ ପାଇ ନିର୍ବାଚିତ ହେବାପରେ ଦଳତ୍ୟାଗର ଅର୍ଥାତ କଂଗ୍ରେସ (ଆଇ)ରେ ଯୋଗଦାନର ପରିମାଣ ଆହୁରି ବୃଦ୍ଧି ପାଇଲା ।

ଚିକମାଗୁଲୁର ଉପନିର୍ବାଚନକୁ ଅବଶ୍ୟ ଜାତୀୟ ରେଫେରେଣ୍ଡମ ବୋଲି କୁହାଯାଇ ନପାରେ । ମାତ୍ର ଜନତା ସରକାର ତାଙ୍କୁ ପରାଜିତ କରିବା ନିମିତ୍ତ ସବୁପ୍ରକାର ସତ୍ - ଅସତ ଉପାୟ ଅବଲମ୍ବନ କଲେ । ଏହା ଇନ୍ଦିରାଙ୍କ ବିଜୟକୁ ଆହୁରି ଗୌରବମଣ୍ଡିତ କଲା । ଦୈବାତ୍ ସେ ୧୯୭୮ ନଭେମ୍ବର ୭ ତାରିଖ ଦିନ ଦିଲ୍ଲୀ ଫେରିଥାନ୍ତି । ସେଦିନ ସୋଭିଏତ୍ ରୁଷର ଜାତୀୟ ଦିବସ । ସୋଭିଏତ ପ୍ରଧାନମନ୍ତ୍ରୀ ଆଲେକ୍ସି କୋସିଜିନ ଦିଲ୍ଲୀ ଗସ୍ତରେ ଆସିଥାନ୍ତି । ସୋଭିଏତ୍ ଦୂତାବାସରେ ଏକ ବଡ଼ ଧରଣର ସମାରୋହ ଆୟୋଜିତ ହୋଇଥାଏ । ଇନ୍ଦିରା ବିଜୟ ଉଲ୍ଲାସରେ ସମାରୋହରେ ଯାଇ ଯୋଗଦେଲେ । ଆୟୋଜକମାନେ ଭୀଷଣ ଅଡୁଆରେ ପଡ଼ିଗଲେ । ମୁଖ୍ୟ ଅତିଥି ଭାବେ ଯୋଗ ଦେଇଥିବା ପ୍ରଧାନମନ୍ତ୍ରୀ ଦେଶାଇଙ୍କର ବିରକ୍ତି ସେଦିନ ବାହାରକୁ ସୁଦ୍ଧା ସ୍ପଷ୍ଟ ଜଣାପଡ଼ିଗଲା ।

## ଚିକମାଗୁଲୁରରୁ ତିହାର

ଏଥରକ ମାତ୍ର ଛଅ ସପ୍ତାହ ପାଇଁ ଇନ୍ଦିରା ଗାନ୍ଧି ଲୋକସଭାର ସଦସ୍ୟ ହୋଇ ରହିଲେ । ଯେଉଁ ମାଧମ ଅବଲମ୍ବନ କରି ଜନତା ପାର୍ଟି ତାଙ୍କର ସଭ୍ୟପଦ ରଦ୍ଦ କଲା, ତାର ପଟାନ୍ତର ନାହିଁ । ପରିଶେଷରେ ତାହା ହିଁ ସମସ୍ତଙ୍କ ସକାଶେ ଭାଗ୍ୟ ନିର୍ଦ୍ଧାରକର କାମକଲା ।

ଶାହ କମିଶନ ଇନ୍ଦିରା ଗାନ୍ଧିଙ୍କୁ ଏକ ଫୌଜଦାରୀ ମାମଲାରେ ଜଡ଼ିତ କରିଥିଲେ ।ମାମଲାଟି ହେଲା ଯେ, ଇମର୍ଜେନ୍‌ସି ଲାଗୁ ହେବାର ଅବ୍ୟବହିତ ପୂର୍ବରୁ ଚାରିଜଣ ସରକାରୀ ଅଧିକାରୀଙ୍କୁ ଇନ୍ଦିରା ଉଦ୍ଦେଶ୍ୟମୂଳକ ଭାବେ "ହଇରାଣ" କରୁଥିଲେ । କାରଣ ସେମାନେ ଏକ ପାର୍ଲ୍ୟାମେଣ୍ଟ ପ୍ରଶ୍ନର ଉତ୍ତର ପ୍ରସ୍ତୁତ କରିବା ବାହାନାରେ ସଞ୍ଜୟଙ୍କ ମାରୁତି ପ୍ରକଳ୍ପ ସମ୍ବନ୍ଧରେ ନାନା ତଥ୍ୟ ସଂଗ୍ରହ କରିବାକୁ ପ୍ରୟାସ କରୁଥିଲେ । ଯେହେତୁ ଉକ୍ତ ଅଧିକାରୀମାନେ ପାର୍ଲିଆମେଣ୍ଟ ପକ୍ଷରୁ କାର୍ଯ୍ୟରତ ଥିଲେ, ଜନତା ସରକାର ଇନ୍ଦିରାଙ୍କ ବିରୁଦ୍ଧରେ ସଂସଦର ସ୍ୱାଧିକାର ଭଙ୍ଗ ପ୍ରସ୍ତାବ ଆଗତ କଲେ । ତୁରନ୍ତ ସ୍ୱାଧିକାର କମିଟି ରିପୋର୍ଟରେ ତାଙ୍କୁ 'ଦୋଷୀ ସାବ୍ୟସ୍ତ' କରାଗଲା । କମିଟି ଆଗରେ ଉପସ୍ଥିତ ହେବାପାଇଁ ଯେହେତୁ ସେ ମନା କରିଥିଲେ, "ପାର୍ଲିଆମେଣ୍ଟର ଅବମାନନା" ଅପରାଧରେ ମଧ୍ୟ ସେ ଦୋଷୀ ହେଲେ । ଚିକମାଗୁଲୁରରୁ ଜୟଲାଭ କଲାପରେ ପାର୍ଲିଆମେଣ୍ଟରେ ନିଜ ସ୍ଥାନ ଗ୍ରହଣ କରିବାର ମାତ୍ର ୨୪ଘଣ୍ଟା ପରେ ଏତେ ସବୁ ପଦକ୍ଷେପ ନିଆଗଲା ।

ଜନତା ପାର୍ଟିର ନେତୃବୃନ୍ଦ ସ୍ପଷ୍ଟକଲେ ଯେ ଇନ୍ଦିରା ଯଦି କ୍ଷମା ପ୍ରାର୍ଥନା କରନ୍ତି ଅଥବା ଘଟଣାଟି ପାଇଁ ଦୁଃଖ ପ୍ରକାଶ କରନ୍ତି, ତେବେ ମାମଲାର ସମାଧାନ ହୋଇଯିବ । ଇନ୍ଦିରା ଦୃଢ଼ଭାବରେ ଉଭୟ ବିକଳ୍ପକୁ ଅସ୍ୱୀକାର କଲେ । ପରିଣାମସ୍ୱରୂପ ତାଙ୍କୁ ନେଇ ଲୋକସଭାରେ

ଅଯଥା ଅନେକ ସମୟଧରି ଘୋର ଯୁକ୍ତିତର୍କ ଚାଲିଲା । ଶେଷରେ ୧୯୭୮ ଡ଼ିସେମ୍ବର ୧୯ ତାରିଖରେ ପୂର୍ବତନ ପ୍ରଧାନମନ୍ତ୍ରୀଙ୍କୁ ଲୋକସଭାରୁ "ବହିଷ୍କାର" କରିଦିଆଗଲା ଏବଂ "ଗୃହ ମୁଲତବୀ ରହିବା ପର୍ଯ୍ୟନ୍ତ" ତାଙ୍କୁ ଜେଲରେ ଅଟକ ରଖିବାକୁ ନିଷ୍ପତ୍ତି ନିଆଗଲା । ଫଳରେ, ଇନ୍ଦିରାଙ୍କୁ ତିହାର ଜେଲରେ ସପ୍ତାହଟିଏ ବନ୍ଦୀ ଭାବରେ ରହିବାକୁ ପଡ଼ିଲା । ତାଙ୍କୁ ରଖାଯାଇଥିବା ଜେଲର କୋଠରି ଅତି ସଂକୀର୍ଣ୍ଣ ନଥିଲା । ଘର ଖାଦ୍ୟ ଖାଇବାପାଇଁ ମଧ୍ୟ ତାଙ୍କୁ ଅନୁମତି ମିଳିଥିଲା । ତା' ସତ୍ତ୍ୱେ ପାର୍ଲ୍ୟାମେଣ୍ଟର ଏହି ନିଷ୍ପତ୍ତି ବିରୁଦ୍ଧରେ ଆନ୍ଦୋଳନ ଆରମ୍ଭ ହେଲା ଏବଂ ହଜାର ହଜାର ସଂଖ୍ୟାରେ ଇନ୍ଦିରା ସମର୍ଥକ ସ୍ୱେଚ୍ଛାରେ ଗିରଫଦାରୀ ଦେଲେ । ଉତ୍ତରପ୍ରଦେଶର ଦୁଇଜଣ ଯୁବ ସମର୍ଥକ, ପାଣ୍ଡେ ବନ୍ଧୁ, ଗୋଟାଏ ଖେଳଣା ବନ୍ଧୁକ ଦେଖାଇ ଏକ ଯାତ୍ରୀବାହୀ ବିମାନକୁ ଅପହରଣ କରିନେଲେ । ଶେଷରେ ସେମାନଙ୍କୁ କାବୁ କରି ଜେଲକୁ ପଠାଗଲା । ୧୯୮୦ ମସିହାରେ ଯେତେବେଳେ ଇନ୍ଦିରା କ୍ଷମତାକୁ ପ୍ରତ୍ୟାବର୍ତ୍ତନ କଲେ, ଦୁଇଭାଇଙ୍କୁ ଉତ୍ତରପ୍ରଦେଶର ବିଧାନସଭା ପାଇଁ କଂଗ୍ରେସ ଦଳରୁ ଟିକେଟ ଦିଆଗଲା । ଏହି ପ୍ରକାରେ ସେମାନେ ନିଜ ଆନୁଗତ୍ୟ ପାଇଁ ପୁରସ୍କୃତ ହେଲେ ।

## ଜନତା ସରକାରର ପତନ

ପୂର୍ବରୁ ସ୍ପଷ୍ଟ ହୋଇସାରିଛି ଯେ, ୧୯୭୮ ମସିହାର ଗ୍ରୀଷ୍ମରେ ଚରଣ ସିଂ କେବିନେଟରୁ ବହିଷ୍କୃତ ହେବାପାଇଁ ନିଜ ବାଟ ନିଜେ ପରିଷ୍କାର କରିଦେଇଥିଲେ । ହେଲେ, କେବଳ ଦେଶାଇଙ୍କୁ ବାଦ୍ ଦେଲେ ଅନ୍ୟ ନେତାମାନଙ୍କୁ ଜଣାଥିଲା ଯେ ଚରଣ ସିଂକୁ ଅଲଗା କରି ସରକାର ଚାଲିପାରିବ ନାହିଁ । ପ୍ରଧାନମନ୍ତ୍ରୀ ଓ ଚରଣ ସିଂଙ୍କ ଭିତରେ କୌଣସି କିସମର ବୁଝାମଣା ପାଇଁ ଜନତା ନେତୃବୃନ୍ଦ ପ୍ରବଳ ଉଦ୍ୟମ କଲେ । ମାତ୍ର ତାହା ଫଳପ୍ରଦ ହେଲାନାହିଁ, କାରଣ ରାଜନାରାୟଣଙ୍କୁ ମଧ୍ୟ ମନ୍ତ୍ରୀମଣ୍ଡଳକୁ ପୁଣି ଥରେ ସାମିଲ କରିବାପାଇଁ ଚରଣ ସିଂ ଜୋର ଦେଲେ । ଏହାକୁ ଦେଶାଇ କୌଣସି ମତେ ଗ୍ରହଣ କରିପାରିଲେ ନାହିଁ । ତା' ଛଡ଼ା, ପ୍ରଧାନମନ୍ତ୍ରୀଙ୍କ ପୁଅ କାନ୍ତି ଦେଶାଇ ବିରୁଦ୍ଧରେ ଚରଣ ସିଂ ଏବଂ ଚରଣ ସିଂଙ୍କ ସ୍ତ୍ରୀ ବିରୁଦ୍ଧରେ ଦେଶାଇ ଦୁର୍ନୀତି ଅଭିଯୋଗ କରୁଥାନ୍ତି । ଏହା ଦଳୀୟ ସଂକଟକୁ ଅଧିକ ଘନୀଭୂତ କଲା ।

ଇନ୍ଦିରା ଜେଲରୁ ଖଲାସ ହୋଇ ନଥାନ୍ତି । ଚରଣ ସିଂ ଶକ୍ତି ପ୍ରଦର୍ଶନ ପାଇଁ ନିଜ ଜନ୍ମଦିନ ଉପଲକ୍ଷେ ପାର୍ଲିଆମେଣ୍ଟ ନିକଟରେ ଏକ ବିଶାଳ ରାଲିର ଆୟୋଜନ କଲେ । ଇନ୍ଦିରାଙ୍କ ତରଫରୁ ତାଙ୍କର ଜଣେ ସମର୍ଥକ "ଜନ୍ମିତ ଶିଶୁ" ପାଇଁ ପୁଷ୍ପଗୁଚ୍ଛ ଉପହାର ଦେଲେ । ଏହି ଘଟଣା ସମ୍ଭବତଃ ଜନତା ପରିବାର ଭିତରେ ବୁଝାମଣାର ପ୍ରକ୍ରିୟାକୁ ତ୍ୱରାନ୍ୱିତ କଲା । ଜନତା ସରକାରର ଭବିଷ୍ୟତକୁ ନେଇ ଉଦବିଗ୍ନ ମଧ୍ୟସ୍ଥିମାନେ ବୁଝାମଣାର ଚୁକ୍ତି ପ୍ରସ୍ତୁତ କଲେ । ଚୁକ୍ତି ଅନୁଯାୟୀ, ୧୯୭୯ ଜାନୁଆରୀରେ ଚରଣ ସିଂ ଉପ-ପ୍ରଧାନମନ୍ତ୍ରୀ ଓ ଅର୍ଥମନ୍ତ୍ରୀ ପଦବୀରେ ସରକାରକୁ ପ୍ରତ୍ୟାବର୍ତ୍ତନ କଲେ । ଇନ୍ଦିରା ଗାନ୍ଧି ସରକାରରେ ଏକଦା ଦେଶାଇଙ୍କୁ ଏହି ଦ୍ୱୈତ

ପଦବୀ ମିଳିଥିଲା । ଗୃହବିଭାଗ ହାତରୁ ଯିବା ପରେ କ୍ଷତିପୂର୍ତ୍ତି ପାଇଁ ଚରଣ ସିଂଙ୍କ ହାତରେ ଉଚ୍ଚ ପଦବୀ ଅର୍ପଣ କରାଯାଇଥିଲା । ହେଲେ ଉପ - ପ୍ରଧାନମନ୍ତ୍ରୀ ପଦକୁ ତାଙ୍କୁ ଏବଂ ବରିଷ୍ଠତାକୁ ନେଇ ଅତ୍ୟନ୍ତ ସ୍ପର୍ଶକାତର ଜଗଜୀବନ ରାମଙ୍କ ସାଙ୍ଗରେ ଭାଗ କରିବାକୁ ପଡ଼ିଲା । ଦେଶାଇଙ୍କ ନିର୍ଦ୍ଦେଶରେ ରାଜନାରାୟଣଙ୍କୁ ସମ୍ପୂର୍ଣ୍ଣ ଉପେକ୍ଷା କରାଗଲା । ଏହାଥିଲା ଅନମନୀୟ ଦେଶାଇଙ୍କ ପକ୍ଷରେ ଏକ ବିରାଟ ଭୁଲ୍ । କାରଣ, ରାଜନାରାୟଣ ସାଙ୍ଗେ ସାଙ୍ଗେ ଜନତା ପାର୍ଟିରୁ ଇସ୍ତଫା ଦେଇ ଧର୍ମନିରପେକ୍ଷ ଜନତା ପାର୍ଟି ନାଁରେ ଏକ ନୂଆ ଦଳ ଗଠନକଲେ । ଜନତା ପାର୍ଟି ଭିତରେ ପୂର୍ବତନ ଜନସଂଘ ଗୋଷ୍ଠୀର "ଦ୍ୱେତ ଆନୁଗତ୍ୟ" ପ୍ରଶ୍ନକୁ ନେଇ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘର ଉଗ୍ର ହିନ୍ଦୁବାଦୀ ନୀତି ବିରୁଦ୍ଧରେ ଏକ ତୀବ୍ର ସ୍ୱର ଆଗରୁ ଶୁଣାଯାଉଥିଲା । ତେଣୁ, ଚାଲାକ ରାଜନାରାୟଣ ନୂଆ ଦଳରେ ଏକ ଧର୍ମନିରପେକ୍ଷ ତତ୍ତ୍ୱ ଯୋଡ଼ି ଶାସକ ଗୋଷ୍ଠୀକୁ ଆକ୍ରମଣ କରିବାକୁ ମସୁଧା କଲେ । ଏହି ଅଭିଯାନରେ ରାଜନାରାୟଣ ଏକାକୀ ନଥିଲେ । ତାଙ୍କ ସାଙ୍ଗରେ ଅନେକ ଜନତା ପାର୍ଟି ନେତା ଯୋଗଦେଇ ବିରୋଧୀ ପକ୍ଷରେ ବସିଲେ । ଅତି କ୍ଷୀଣ ଆକାରରେ ଆରମ୍ଭ ହୋଇଥିବା ଏହି ମୁଣ୍ଡବ୍ୟଥା ଶେଷରେ ବଢ଼ିପାଣି ଭଳି ଜନତା ପାର୍ଟିକୁ ଓହଲାଇ ନେଇଗଲା ।

ଏହି ସମୟରେ ସାଧାରଣ ବିଚାର ପ୍ରକ୍ରିୟାରେ ହେଉଥିବା ଅନାବଶ୍ୟକ ବିଳମ୍ବକୁ ଏଡ଼ିବା ସକାଶେ ଜନତା ସରକାର ଏକ ସ୍ୱତନ୍ତ୍ର ବିଚାରାଳୟ ସ୍ଥାପନ କରିବାକୁ ଆଇନ ପ୍ରଣୟନ କଲେ । ତେଣିକି ଇନ୍ଦିରା, ସଂଜୟ ଏବଂ ଅନ୍ୟ "ଅପରାଧୀ"ମାନଙ୍କର ମାମଲାଗୁଡ଼ିକୁ ବିଚାର କରିବାପାଇଁ କୌଣସି ବିଳମ୍ବ ଘଟିବ ନାହିଁ । କଂଗ୍ରେସ (ଏସ)ର ବିନା ସମର୍ଥନରେ ଏହି ଆଇନ ହୁଏତ ପାସ୍ ହୋଇପାରିଥାନ୍ତା । ମାତ୍ର ତା'ଠାରୁ ବଡ଼ କଥା ହେଲା ଯେ, କଂଗ୍ରେସ (ଆଇ)ର କେତେକ ସଦସ୍ୟ ମଧ୍ୟ ସ୍ୱତନ୍ତ୍ର ବିଚାରାଳୟ ପ୍ରସ୍ତାବର ସମର୍ଥନରେ ପାର୍ଲ୍ୟାମେଣ୍ଟରେ ମତଦାନ କରିଥିଲେ ।

ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଯଥେଷ୍ଟ ମାତ୍ରାରେ ଜନସମର୍ଥନ ଓ ଲୋକ ଆନୁଗତ୍ୟ ଅର୍ଜନ କରିବା ସତ୍ତ୍ୱେ ଇନ୍ଦିରା ତାଙ୍କ ନିଜ ଦଳରେ ଏବେବି ଏକାକୀ ପଡ଼ି ଯାଇଥିଲେ । ଏହାର ମୁଖ୍ୟକାରଣ ହେଲା ଶକ୍ତିର ଏକ ଉତ୍ସରୂପେ ସଞ୍ଜୟଙ୍କର ପୁନରୁତ୍‌ଥାନ ଏବଂ ଯୁବକଂଗ୍ରେସର ଅଭ୍ୟୁତ୍‌ଥାନ, ଏବଂ ତା' ପ୍ରତି କ୍ରମବର୍ଦ୍ଧିଷ୍ଣୁ ଆନ୍ତରିକ ବିରୋଧ । କର୍ଣ୍ଣାଟକର ମୁଖ୍ୟମନ୍ତ୍ରୀ ଦେବରାଜ ଅର୍ସ, ଯିଏ କି ଇନ୍ଦିରାଙ୍କ ଚିକମାଗ୍ଲୁରରେ ବିଜୟ ପାଇଁ ନିଜକୁ ସମସ୍ତ ଶ୍ରେୟ ଦେଉଥିଲେ ଏବଂ ଇନ୍ଦିରାଙ୍କୁ ଦୃଢ଼ ସମର୍ଥନ କରୁଥିଲେ, ସଞ୍ଜୟଙ୍କ ବିରୁଦ୍ଧରେ ହେବାକୁ ଥିବା ଆକ୍ରମଣର ନେତୃତ୍ୱ ନେଲେ । ପ୍ରତିଆକ୍ରମଣରେ ଦେବରାଜ ଅର୍ସଙ୍କ ପାଖରୁ ରାଜ୍ୟର ଦଳୀୟ ସଙ୍ଗଠନକୁ ଛଡ଼େଇ ଆଣିବା ପାଇଁ ଇନ୍ଦିରା ପ୍ରୟାସ କଲେ । ଆନ୍ତରିକ ବିବାଦ କଳାରେ ସିଦ୍ଧହସ୍ତ ଅର୍ସ କର୍ଣ୍ଣାଟକ କଂଗ୍ରେସ (ଆଇ) ଶାଖାକୁ ମୂଳରୁ ଉତ୍ପାଟନ କରି କଂଗ୍ରେସ (ଏସ)ରେ ଯାଇ ସାମିଲ ହେଲେ । ଫଳରେ, "ପୁରୁଣା କଂଗ୍ରେସ" ତାଙ୍କ ପ୍ରତି ଏତେ ମାତ୍ରାରେ କୃତଜ୍ଞ ହୋଇପଡ଼ିଲା

ଯେ ତାଙ୍କୁ ଦଳର ସଭାପତି ପଦରେ ନିଯୁକ୍ତ କରାଗଲା ଏବଂ ତାଙ୍କ ନାଁ ଅନୁସାରେ ଦଳର ନୂଆ ନାଁ ହେଲା କଂଗ୍ରେସ ଅର୍ସ ।

ଜନତା ପାର୍ଟି ମଧ୍ୟରେ ଯେଉଁ "ନାହିଁ ନଥିବା ଝଡ଼"ର ଆରମ୍ଭ ହେଲା, ତା' ତୁଳନାରେ ଇନ୍ଦିରାଙ୍କ ଦଳୀୟ ସମସ୍ୟାର ପରିମାଣ ଅତି କମ । ଶେଷରେ ଏମିତି ସ୍ତରରେ ଝଡ଼ ଯାଇ ପହଞ୍ଚିଲା ଯେ ଇନ୍ଦିରାଙ୍କ ବିରୁଦ୍ଧରେ "ନ୍ୟୁରେଂବର୍ଗ ଭଳି ବିଚାର" ଦାବି କରିଥିବା ଚରଣ ସିଂ ଇନ୍ଦିରାଙ୍କ ସହ ଗୋପନୀୟ ଭାବେ ସମ୍ପର୍କ ରଖିଲେ । କିଏ ବିଶ୍ୱାସ କରିବ ଯେ "ଇନ୍ଦିରା ହଟାଅ" ସ୍ଲୋଗାନର ସ୍ରଷ୍ଟା ଏବଂ "ରାମଚନ୍ଦ୍ର" ଚରଣ ସିଂଙ୍କ ଆତ୍ମଘୋଷିତ "ହନୁମାନ" ଇନ୍ଦିରାଙ୍କ ଚିରଶତ୍ରୁ ରାଜନାରାୟଣ ପୁଣି ଗୋପନୀୟ ସମ୍ପର୍କର ସୂତ୍ରଧର ଭୂମିକାରେ ମଞ୍ଚକୁ ଆସିବେ ? ଇନ୍ଦିରାଙ୍କ ତରଫରୁ ଗୋପନୀୟ ବୁଝାମଣା ପାଇଁ ସଞ୍ଜୟ ଦାୟିତ୍ୱ ବହନ କଲେ ।

ଚରଣ ସିଂ ଓ ରାଜନାରାୟଣ ଚାହୁଁଥିଲେ, ସରକାରରେ ଯୋଗ ନଦେଇ ସୁଦ୍ଧା ଇନ୍ଦିରା କଂଗ୍ରେସ ଚରଣ  ସିଂଙ୍କ ନେତୃତ୍ୱରେ ଗଠିତ ସରକାରକୁ "ସହଯୋଗ" କରୁ । ଏହା ଇନ୍ଦିରାଙ୍କ ଯୋଜନାକୁ ଖୁବ୍ ସୁହାଇଲା । ଇନ୍ଦିରାଙ୍କର ଇଚ୍ଛା ଜନତା ପାର୍ଟିର ବିଭାଜନ । "ଜୀବନର ସର୍ବୋଚ୍ଚ ଅଭିଳାଷ" ପ୍ରଧାନମନ୍ତ୍ରୀତ୍ୱ ପାଇବା ପାଇଁ ଚରଣ ସିଂ ଏହି ପ୍ରକ୍ରିୟାରେ ପୂର୍ଣ୍ଣ ସହଯୋଗ କରିବାକୁ ଗୋଡ଼ ଟେକିଥିଲେ । ଚାଲାକ ଇନ୍ଦିରା ଭଲଭାବେ ଜାଣନ୍ତି ଯେ, କ୍ଷମତା ବାହାରେ ରହିବାର ଅଭ୍ୟାସ ଚହ୍ୱାନ ଓ କଂଗ୍ରେସ (ଏସ)ର ଅନ୍ୟ ନେତାମାନଙ୍କର ନାହିଁ । ତେଣୁ ଯେ କୌଣସି ସର୍ତ୍ତରେ ସରକାରରେ ସାମିଲ ହେବାପାଇଁ ସେମାନେ ରାଜି ହୋଇଯିବେ । ପ୍ରକୃତରେ ଶେଷକୁ ତାହା ହିଁ ହେଲା ।

ଏଗାର ଜୁଲାଇ ୧୯୭୯ ଦିନ ପାର୍ଲିଆମେଣ୍ଟର ମୌସୁମୀ ଅଧିବେଶନ ଆରମ୍ଭ ହେଲା । ସେହିଦିନ ବିରୋଧୀ ଦଳ ନେତା ଚହ୍ୱାନ ଦେଶାଇ ସରକାର ବିରୁଦ୍ଧରେ ଔପଚାରିକ ଭାବରେ ଏକ ଅନାସ୍ଥା ପ୍ରସ୍ତାବ ଆଗତ କଲେ । ତେଣିକି ଯେଉଁ ବିଦ୍ୟୁତ ବେଗରେ ପୂର୍ଣ୍ଣ ବହୁମତରେ ଥିବା ଏକ ସରକାର ଚୁରମାର ହୋଇ ଭାଙ୍ଗିପଡ଼ିଲା, ତାହା ସମଗ୍ର ଦେଶକୁ ଆଚମ୍ବିତ କରିଦେଲା । ପ୍ରସ୍ତାବଟି ଉପରେ କାର୍ଯ୍ୟାନୁଷ୍ଠାନ ଆରମ୍ଭ ହେଲାକ୍ଷଣି, ଚରଣ ସିଂ ମନ୍ତ୍ରୀମଣ୍ଡଳରୁ ଇସ୍ତଫା ପ୍ରଦାନ କଲେ । ତାଙ୍କ ପରେ ପରେ ଅନ୍ୟମାନେ ମଧ୍ୟ ଇସ୍ତଫା ଦେଲେ । ଯେଉଁମାନେ ସରକାରରେ ରହିଲେ ସେମାନଙ୍କ ମଧ୍ୟରୁ ବରିଷ୍ଠ ମନ୍ତ୍ରୀ ବା ନେତା କେହି ସରକାରଙ୍କ ସପକ୍ଷରେ ବିତର୍କ କରିବା ପାଇଁ ପ୍ରସ୍ତୁତ ହେଲେ ନାହିଁ । ଜୁଲାଇ ୧୪ ତାରିଖରେ ଜନତା ପାର୍ଲିଆମେଣ୍ଟରୀ ବୋର୍ଡ଼ ଦେଶାଇଙ୍କୁ ବିଧିବଦ୍ଧ ଭାବେ ନେତୃତ୍ୱରୁ ଓହରି ଯିବାକୁ ଅନୁରୋଧ କଲା, ଯାହାଫଳରେ ଜଗଜୀବନ ରାମ ପରି କେହି ବରିଷ୍ଠ ନେତା ଜନତା ସରକାରକୁ ଆସନ୍ନ ଦୁର୍ବିପାକରୁ ରକ୍ଷା କରିପାରିବେ । ଦେଶାଇ ଏଥିରେ ରାଜି ହେଲେ ନାହିଁ । ପରଦିନ ସମଗ୍ର ସୋସିଆଲିଷ୍ଟ ଗୋଷ୍ଠୀ ଜନତା ପାର୍ଟିରୁ ଇସ୍ତଫା ପ୍ରଦାନ କଲେ । ଦେଶାଇଙ୍କର ବହୁମତ ବାଷ୍ପରେ ପରିଣତ ହେଲା । ଏକ ରବିବାରର ଅପରାହ୍ଣରେ ଦେଶାଇ ଶେଷକୁ ଇସ୍ତଫା ପ୍ରଦାନ କଲେ । ମାତ୍ର ତାଙ୍କର ଦାବି

ଥିଲା, ଯେହେତୁ ତାଙ୍କ ଦଳ ଏବେ ସୁଦ୍ଧା ପାର୍ଲିଆମେଣ୍ଟର ସବୁଠାରୁ ବଡ଼ ଦଳ, ତାଙ୍କୁ ସରକାର ଗଠନ ପାଇଁ ପ୍ରଥମ ସୁଯୋଗ ମିଳିବା ଉଚିତ ।

ସରକାର ଗଠନ କରିବାପାଇଁ ଚରଣ ସିଂଙ୍କର ଦାବିରେ ବେଶି ବଳ ରହିଥିଲା । ତାଙ୍କ ନେତୃତ୍ୱରେ ଗଠିତ ହେବାକୁ ଯାଉଥିବା ସରକାରରେ କଂଗ୍ରେସ (ଅର୍ସ) ଯୋଗ ଦେବାକୁ ଖୁସିରେ ରାଜି ହେଲା । ନୂଆ ସରକାରରେ ଚବ୍ହାଣ ହେବେ ଉପପ୍ରଧାନମନ୍ତ୍ରୀ । ଇନ୍ଦିରା କଂଗ୍ରେସ ମଧ୍ୟ "ବାହାରୁ" ସମର୍ଥନ ଦେବାକୁ ସହମତି ପ୍ରକାଶ କଲା । ତା' ସତ୍ତ୍ୱେ ରାଷ୍ଟ୍ରପତି ନିଲମ ସଂଜୀବ ରେଡ୍ଡି ନିଜେ ସମସ୍ୟାର ସମାଧାନ କରି ଦୁଇଜଣ ଯାକ ଦାବିଦାରଙ୍କୁ ନିଜ ନିଜର ସମର୍ଥକଙ୍କର ସୂଚୀ ପ୍ରଦାନ କରିବାକୁ ନିର୍ଦ୍ଦେଶ ଦେଲେ । ପରିହାସର ବିଷୟ ଏହି ଯେ, ଦେଶାଇଙ୍କ ସମର୍ଥକ ସୂଚୀରେ ଏମିତି କେତେଜଣ ଲୋକସଭା ସଦସ୍ୟଙ୍କ ନାଁ ଥିଲା ଯେଉଁମାନେ କସ୍ମିନକାଳେ ଦେଶାଇଙ୍କୁ ସମର୍ଥନ ଜଣାଇବା କଥା ପ୍ରକାଶ କରିନଥିଲେ । ଏକଥା ଜଣାପଡ଼ିବା ପରେ ପାପର ପ୍ରାୟଶ୍ଚିତ ସ୍ୱରୂପ ଦେଶାଇ ପାର୍ଲିଆମେଣ୍ଟରୁ ଇସ୍ତଫା ଦେଲେ । ତାଙ୍କ ସ୍ଥାନରେ ଜଗଜୀବନ ରାମ ଜନତା ପାର୍ଟିର ନେତା ନିର୍ବାଚିତ ହେଲେ । ମାତ୍ର ଏତେବେଳକୁ ଆଉ କିଛି ବାକି ନଥିଲା । ଜନତା ସରକାର ଅତୀତର ଉପାଦାନ, ଇତିହାସ ପାଲଟି ଗଲା । ରାଷ୍ଟ୍ରପତି ବିକଳ୍ପ ସରକାର ଗଠନ ପାଇଁ ଚରଣ ସିଂଙ୍କୁ ଔପଚାରିକ ଆମନ୍ତ୍ରଣ ଜଣାଇଲେ । ଜୁଲାଇ ୨୭ ତାରିଖ ଦିନ ନୂଆ ସରକାର ଶପଥ ଗ୍ରହଣ କରି କାର୍ଯ୍ୟଭାର ସମ୍ଭାଳିଲା ।

୧୯୭୭ ମସିହାରେ ଇନ୍ଦିରାଙ୍କ ଶୋଚନୀୟ ପରାଜୟ ଉତ୍ତାରୁ ଅଟଳ ବିହାରୀ ବାଜପେୟୀ ଘୋଷଣା କରିଥିଲେ, "ଇନ୍ଦିରାଙ୍କୁ ଏଣିକି ଇତିହାସର ଅଳିଆଗଦାକୁ ଫିଙ୍ଗି ଦିଆଗଲା ।" ବିରୋଧୀମାନଙ୍କ ଉଦ୍ଦେଶ୍ୟରେ ଇନ୍ଦିରା, ଅବଶ୍ୟ ଘରୋଇ ଭାବରେ, ସମାଧି - ଲିପି ଲେଖିଲେ, "ସିଂହନାଦ କରି କ୍ଷମତାସୀନ ହୋଇଥିବା ଜନତା ସରକାର ପଳାୟନ କଲାବେଳେ ମୂଷା ପରି ଚିଁ ଚିଁ ସୁଦ୍ଧା କରିପାରିଲା ନାହିଁ ।"

## ଚରଣ ସିଂଙ୍କ ପାଇଁ ସବୁ ରାସ୍ତା ବନ୍ଦ

ଚରଣ ସିଂ କେବଳ ଆନନ୍ଦାତିଶଯ୍ୟରେ ପଦାର୍ପଣ କରି ନଥିଲେ ଅତ୍ୟନ୍ତ ସୌଭାଗ୍ୟବାନ ପରି ସଗର୍ବେ ପ୍ରଦକ୍ଷୀଣ କରିବା ବି ଆରମ୍ଭ କରିଦେଲେ । ଲୋକସଭାରେ ବହୁମତ ସିଦ୍ଧ କରିବା ପାଇଁ ତାଙ୍କୁ ମାସେ କାଳ ସମୟ ମିଳିଥିଲା । ତାଙ୍କର ବିଶ୍ୱାସ ଥିଲା ଯେ ଆସ୍ଥା ଭୋଟରେ ଉଦ୍ଦିଷ୍ଟ ଅଗଷ୍ଟ ୨୦ ତାରିଖ ଦିନ ସେ ଜୟଲାଭ କରିବେ । ଧାର୍ଯ୍ୟ ସମୟର ଠିକ ଗୋଟାଏ ଦିନ ଆଗରୁ ତାଙ୍କୁ ଏକ ଗଭୀର ଧକ୍କା ମିଳିଲା । ଇନ୍ଦିରା ଚାହୁଁଥିଲେ ପୁନି ନିର୍ବାଚନ ହେଉ । ଚରଣ ସିଂଙ୍କ ନୂଆ ସରକାରକୁ ଚଳେଇ ନେବା ପାଇଁ ତାଙ୍କର କୌଣସି ଆଗ୍ରହ ନଥିଲା । ଶେଷ ସମୟ ଯାଏଁ ସେ ଚୁପ୍‌ଚାପ ରହିଲେ । ପରିଶେଷରେ କଂଗ୍ରେସ (ଆଇ)ର ସମର୍ଥନ ପ୍ରତିବଦଳରେ ଚରଣ ସିଂ ସରକାର ଆଗରେ ଏକ ସର୍ତ୍ତ ରଖିଲେ : ସ୍ୱତନ୍ତ୍ର ବିଚାରାଳୟକୁ ଉଠେଇ ଦିଅ । ଚରଣ ସିଂ ଏହି

ମୂଲ୍ୟ ଦେବାପାଇଁ କଦାପି ରାଜି ହୋଇପାରିଲେ ନାହିଁ । ପରିଣାମ ସ୍ୱରୂପ, ଏପରିକି ଗୋଟାଏ ଦିନ ପାଇଁ ମଧ୍ୟ ପାର୍ଲିଆମେଣ୍ଟର ସମ୍ମୁଖୀନ ହୋଇ ନଥିବା ପ୍ରଥମ ପ୍ରଧାନମନ୍ତ୍ରୀର ଅପଯଶ ନେଇ ଚରଣ ସିଂ ପ୍ରଧାନମନ୍ତ୍ରୀ ପଦରୁ ଇସ୍ତଫା ଦେଲେ ଏବଂ ସାନି ନିର୍ବାଚନ ନିମିତ୍ତ ରାଷ୍ଟ୍ରପତିଙ୍କୁ ଅନୁମୋଦନ କଲେ । ଦୁଇଦିନ ପରେ ସଞ୍ଜୀବ ରେଡ୍ଡି ଲୋକସଭା ଭଙ୍ଗକରି ଡ଼ିସେମ୍ବର ମାସର ଉତ୍ତରାର୍ଦ୍ଧରେ ମଧ୍ୟାବଧି ନିର୍ବାଚନ କରିବାପାଇଁ ନିର୍ଦ୍ଦେଶ ଦେଲେ । "କାମଚଳା ସରକାର"ର କାର୍ଯ୍ୟକାରୀ ପ୍ରଧାନମନ୍ତ୍ରୀ ଭାବେ ଚରଣ ସିଂ ସରକାରରେ ଅବସ୍ଥାପିତ ହେଲେ । ତାଙ୍କୁ କଡ଼ା ନିର୍ଦ୍ଦେଶ ଦିଆଗଲା ଯେ ତାଙ୍କ ସରକାର କୌଣସି ନୀତିଗତ ନିଷ୍ପତ୍ତି ନେଇପାରିବେ ନାହିଁ, କିମ୍ବା ସରକାରର ନୂଆ ଖର୍ଚ୍ଚ ହେଲା ଭଳି କୌଣସି କାର୍ଯ୍ୟ କରିବେ ନାହିଁ ।

ତୀବ୍ର ଗୋଷ୍ଠୀ କନ୍ଦଳ ଯୋଗୁଁ ଯେହେତୁ ଉଭୟ ଇନ୍ଦିରା କଂଗ୍ରେସ ଓ ଜନତା ପାର୍ଟି ଭାଗଭାଗ ହୋଇ ଯାଇଥିଲେ କୌଣସି ଗୋଟାଏ ଦଳକୁ ନିର୍ବାଚନରେ ପୂର୍ଣ୍ଣ ବହୁମତ ମିଳିବ ବୋଲି କେହି ଆଶା କରୁ ନଥିଲେ । ପ୍ରଧାନମନ୍ତ୍ରୀ ଆସନ ପାଇଁ ମୁଖ୍ୟତଃ ତିନି ଜଣଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ରହିଥିବା କଥା ନିର୍ବାଚନ ବିଷାରଦ ଓ ରାଜନୀତିବେତ୍ତାମାନେ କହୁଥାନ୍ତି । କ୍ରମାନ୍ୱୟରେ ଉକ୍ତ ତିନିଜଣ ପ୍ରତିଦ୍ୱନ୍ଦ୍ୱୀ ହେଲେ ଚରଣ ସିଂ, ଜଗଜୀବନ ରାମ ଓ ଇନ୍ଦିରା ଗାନ୍ଧି । ମାତ୍ର କେତେଜଣ ସୂକ୍ଷ୍ମଦର୍ଶୀ ବିଷାରଦ ଲକ୍ଷ୍ୟକଲେ ଯେ ଯଥୋଚିତ ଦଳୀୟ ସଙ୍ଗଠନର ଅଭାବ ସତ୍ତ୍ୱେ ଇନ୍ଦିରା କଂଗ୍ରେସର ନିର୍ବାଚନ ପ୍ରଚାରରେ ଚିତ୍ତାକର୍ଷକ ଲୋକ ସମର୍ଥନ ରହୁଛି ଏବଂ ତା' ପାଇଁ ମାଧ୍ୟମ ହେଲା ସଂଜୟ ନେତୃତ୍ୱାଧୀନ ଯୁବକଂଗ୍ରେସ । ସୁଯୋଗକୁ ହାତଛଡ଼ା ନକରି ସଞ୍ଜୟ ଏକତୃତୀୟାଂଶ ଦଳୀୟ ଟିକେଟ କେବଳ "ନିଜ ଲୋକଙ୍କୁ" ପ୍ରଦାନ କରିଥିଲେ । ଇନ୍ଦିରା ଗାନ୍ଧିଙ୍କ ଗଣ ସମର୍ଥନର ପୁନରୁତ୍‌ଥାନ କଥା ମଧ୍ୟ ଅଳ୍ପ କେତେକ ବିଷାରଦ ଲକ୍ଷ୍ୟ କରୁଥିଲେ । ଜନତା ପାର୍ଟି ସରକାରର ଅକ୍ଷମତା ଓ ଅସାମର୍ଥ୍ୟ ଏତେ ବିଶାଳ ଆକାର ଧାରଣ କରିଥିଲା ଯେ, ତାକୁ ଆଧାର କରି ଇନ୍ଦିରା ଏକ ଯୁଗୋପଯୋଗୀ ସ୍ଲୋଗାନ ଦେଲେ, "ଆମର ଦରକାର କାମିକା ସରକାର ।"

୧୯୮୦ ଜାନୁଆରୀ ୩ ତାରିଖ ଦିନ ଭୋଟଗଣତି ଆରମ୍ଭ ହେଲା । ଘଣ୍ଟାକ ମଧ୍ୟରେ ସ୍ପଷ୍ଟ ଜଣାପଡ଼ିଲା ଯେ କେବଳ ପଶ୍ଚିମବଙ୍ଗକୁ ବାଦ ଦେଲେ ସମଗ୍ର ଭାରତରେ ଇନ୍ଦିରାଙ୍କୁ ଅଭୂତପୂର୍ବ ସଫଳତା ମିଳିଛି । ପରଦିନ ସକାଳେ ଟାଇମ୍‌ସ ଅଫ୍ ଇଣ୍ଡିଆ ପତ୍ରିକାର ମୁଖ୍ୟ ସମ୍ବାଦର ଶିରୋନାମା ଥିଲା "ଚାରିଆଡ଼େ କେବଳ ଇନ୍ଦିରା ଓ ଇନ୍ଦିରା ।"

## ୧୦



# ଇନ୍ଦିରା ଆମ୍ମାଙ୍କର ପ୍ରତ୍ୟାବର୍ତ୍ତନ

୧୯୭୭ ସାଧାରଣ ନିର୍ବାଚନରେ ଇନ୍ଦିରା ଗାନ୍ଧିଙ୍କର ଶୋଚନୀୟ ପରାଜୟକୁ ଅଧିକାଂଶ ଦେଶବାସୀ "ଭୋଟ ବାକ୍ସରେ ବିପ୍ଳବ" ବୋଲି ଅଭିହିତ କରିଥିଲେ । ଏହାକୁ ଅତିଶୟୋକ୍ତି ବୋଲି ଆଦୌ କୁହାଯାଇନପାରେ । ହେଲେ ବିପ୍ଳବଟିକୁ ଶେଷରେ ତାର ସନ୍ତାନମାନେ ହିଁ ସଫାଚଟ କରିଗଲେ । ପୂର୍ବ ଅଧ୍ୟାୟରେ ଜନତା ପାର୍ଟିର ତୀବ୍ର ଅଧୋପତନ ପଛରେ ରହିଥିବା କାରଣଗୁଡ଼ିକ ଦର୍ଶାଯାଇଛି । ଏହି ସଂଦର୍ଭରେ ଏତିକି କହିବା ଯଥେଷ୍ଟ ହେବ ଯେ ପରିଶେଷରେ ଦଳ ଭାଙ୍ଗିଲା ଦଳର ତିନିଜଣ ସର୍ବୋଚ୍ଚ ନେତାଙ୍କର ଓଜନରେ ଯାହାଙ୍କର ସର୍ବମୋଟ ବୟସ ୨୩୫ ବର୍ଷ ଓ ଅଭିମାନ ମହାକାଶଛୁଆଁ । ସେମାନଙ୍କର ପରସ୍ପର ପରିପନ୍ଥୀ ଉଚ୍ଚାକାଂକ୍ଷା ଓ ପରସ୍ପର ପ୍ରତି ବ୍ୟକ୍ତିଗତ ଅସୂୟାଭାବ ଦଳର ବିଘଟନକୁ ତ୍ୱରାନ୍ୱିତ କଲା ।

ଜଣେ ବିଶିଷ୍ଟ ରାଜନୀତିତତ୍ତ୍ୱବିଦ୍ ରମେଶ ଠାକୁରଙ୍କ ବିଶ୍ଳେଷଣ ଅନୁଯାୟୀ ଜନତାପାର୍ଟିର ଲଜ୍ଜାଜନକ ପଶ୍ଚାତଗତି ପଛରେ ଆଉ ଏକ ବଡ଼ କାରଣ ହେଲା "ଶ୍ରୀମତୀ ଇନ୍ଦିରା ଗାନ୍ଧିଙ୍କୁ ଅପଦସ୍ତ ଓ ଅପମାନ ଦେବାପାଇଁ ସେମାନଙ୍କର ପାଗଳ ପ୍ରାୟ ବଦ୍ଧପରିକରତା ।" ସେ ବୋଧେ ଠିକ୍ କହିଛନ୍ତି ଯେ, ଶାହ କମିଶନଙ୍କ ରିପୋର୍ଟ ଥିଲା ତଥ୍ୟାତ୍ମକ, ଯୁକ୍ତିସିଦ୍ଧ, ସୁ - ବିଜ୍ଞପ୍ତିଯୁକ୍ତ ମଧ୍ୟ । ହେଲେ ତାହା ଏତେ ମାତ୍ରାରେ ଇନ୍ଦିରା ବିରୋଧୀ ଯେ ଲୋକ ଅତିଷ୍ଠ ହୋଇପଡ଼ିଥିଲେ । ଏହି ମତକୁ ଆହୁରି ଅଧିକ ସଂପ୍ରେଷିତ କରି ଜଣେ ପ୍ରତିବଦ୍ଧ ସାମ୍ବାଦିକ, ଇନ୍ଦିରାଙ୍କର ତୀବ୍ର ସମାଲୋଚକ ତଥା ଅଟଳବିହାରୀ ବାଜପାୟୀଙ୍କ ମନ୍ତ୍ରୀମଣ୍ଡଳର ଅନ୍ୟତମ ମନ୍ତ୍ରୀ ଅରୁଣ ସୌରୀ ଲେଖିଛନ୍ତି ଯେ, ୧୯୭୯ ମସିହାର ନିର୍ବାଚନ ସମୟରେ ଶାହ କମିଶନ ଇନ୍ଦିରାଙ୍କ ପାଇଁ ନୁହେଁ, ବରଂ ଜନତା ପାର୍ଟି ପାଇଁ ଏକ ଘୋର ଲଜ୍ଜାର ପ୍ରସଙ୍ଗ ସିଦ୍ଧ ହେଲା ।

ଆଶାତୀତ ସଫଳତାର ସହ କ୍ଷମତାକୁ ପ୍ରତ୍ୟାବର୍ତ୍ତନ କଲାପରେ ଇନ୍ଦିରାଙ୍କ ଖୁସି ଦ୍ୱିଗୁଣିତ ହେଲା । ତାଙ୍କ ଖୁସି ନିଜପାଇଁ, କିନ୍ତୁ ତା'ଠାରୁ ଅଧିକ ସଂଜୟଙ୍କ ପାଇଁ । ପୂର୍ବରୁ ଜରୁରୀ ପରିସ୍ଥିତିର ଛତ୍ରଛାୟାରେ ପରିଗଠିତ ହୋଇଥିବା ସଂଜୟଙ୍କର ଯେଉଁ ପ୍ରଭୁତ ପ୍ରତିପତ୍ତି ଓ ଉତ୍ତରାଧିକାରୀତ୍ୱ ନଷ୍ଟ ହୋଇଥିଲା, ତାକୁ ଏବେ ଏକ ରକମର ସ୍ୱୀକୃତି ମିଳିଗଲା । ଅନ୍ୟ ପକ୍ଷରେ ସଂଜୟଙ୍କର ବ୍ୟବହାରରେ ନୂଆକରି କିଛି ଶୁଦ୍ଧତା ଆସି ନଥିଲା । ତା'ସତ୍ତ୍ୱେ ତାଙ୍କ

ଯୁବରାଜ ପଦବୀ ଏବେ ଗ୍ରହଣୀୟ ହୋଇପଡ଼ିଲା । ଶାସକ କଂଗ୍ରେସ (ଆଇ) ଦଳ ଭିତରେ ସଂଜୟ ଅନୁଗତଙ୍କ ସଂଖ୍ୟା ବୃଦ୍ଧି ପାଇଲା । ସଂଜୟଙ୍କ ପ୍ରତି ତୀବ୍ର ଆନୁଗତ୍ୟ ଯୋଗୁଁ ସେମାନେ ସଂଜୟଙ୍କ ଆଦେଶକୁ ହିଁ ଆଇନର ସଜ୍ଞା ଦେଲେ । ଯଦି ଇନ୍ଦିରା ସଂଜୟଙ୍କୁ କେବିନେଟରେ ସ୍ଥାନ ଦେଇଥାନ୍ତେ, ହୁଏତ କାହାରି ଭୃକୁଞ୍ଚନ ସୁଦ୍ଧା ହୋଇନଥାନ୍ତା । ମାତ୍ର ଇନ୍ଦିରାଙ୍କୁ ବାସ୍ତବିକତା ଭଲଭାବେ ଜଣାଥିଲା । ସେ ତାହା କଲେନାହିଁ । ଏପରିକି ସଂଜୟଙ୍କୁ ଦେଶର ସର୍ବାପେକ୍ଷା ବୃହତ ଓ ରାଜନୀତିର କେନ୍ଦ୍ରସ୍ଥଳୀ ଉତ୍ତରପ୍ରଦେଶର ମୁଖ୍ୟମନ୍ତ୍ରୀ ପଦରେ, ପ୍ରାୟୋଜିତ ଦାବୀ ସତ୍ତ୍ୱେ, ଅଧିଷ୍ଠିତ ମଧ୍ୟ କଲେନାହିଁ । ଅନ୍ୟପକ୍ଷରେ ସଂଜୟଙ୍କର କର୍ତ୍ତୃତ୍ୱକୁ ଉପେକ୍ଷା ନକରି ସେ ତାଙ୍କୁ ଅଖିଳ ଭାରତୀୟ କଂଗ୍ରେସ କମିଟିର ସାଧାରଣ ସମ୍ପାଦକ ପଦରେ ନିଯୁକ୍ତ କଲେ ।

ଦ୍ୱିତୀୟଥର କ୍ଷମତାକୁ ଆସିବାପରେ ଇନ୍ଦିରାଙ୍କର ଅନ୍ୟତମ ପ୍ରଥମ ପଦକ୍ଷେପ ହେଲା ଜନତା ପାର୍ଟିକୁ ତା' ନିଜ ତରାଜୁରେ ପାଉଣା ଦେବା । ତିନି ବର୍ଷ ତଳେ ନଅଟି ରାଜ୍ୟରେ, ଯେଉଁଠି କଂଗ୍ରେସ ଦଳ ନିର୍ବାଚନରେ ପରାଜିତ ହୋଇଥିଲା, କଂଗ୍ରେସ ସରକାରକୁ ଦେଶାଇ ସରକାର ବରଖାସ୍ତ କରିଥିଲେ । ସେତେବେଳେ ଜନତା ପାର୍ଟିର ଯୁକ୍ତି ଥିଲା, କଂଗ୍ରେସ ଉକ୍ତ ରାଜ୍ୟମାନଙ୍କରେ ଲୋକ ସମର୍ଥନ ହରାଇଛି । ସୁପ୍ରିମକୋର୍ଟ ମଧ୍ୟ ଏହି ଯୁକ୍ତିକୁ ସ୍ୱୀକାର କରିଥିଲେ । ବିଧାନସଭା ନିର୍ବାଚନରେ ସେହି ରାଜ୍ୟଗୁଡ଼ିକରେ ଜନତା ଓ ତାଙ୍କ ସହଯୋଗୀ ଦଳକୁ ସଫଳତା ମିଳିଥିଲା । ସେହି ଏକା ଯୁକ୍ତି ଆଧାରରେ ଇନ୍ଦିରା ନଅଟି ରାଜ୍ୟ ବିଧାନସଭାକୁ ଭଙ୍ଗକଲେ ଏବଂ ମଧ୍ୟାବଧି ନିର୍ବାଚନ ପାଇଁ ଆଦେଶ ଦେଲେ । ଏଥର କଂଗ୍ରେସ ମଧ୍ୟ ପ୍ରତ୍ୟେକ ରାଜ୍ୟରେ ଜୟଲାଭ କଲା । ଆଠଗୋଟି ରାଜ୍ୟରେ ଏହାକୁ ଯେସାକୁ ତେସା ନୀତି ଅନୁଯାୟୀ ସ୍ୱୀକୃତି ମଧ୍ୟ ମିଳିଲା । ମାତ୍ର ସମଗ୍ର ଶିଖ୍ ସମ୍ପ୍ରଦାୟକୁ ପ୍ରତିନିଧିତ୍ୱ କରିବାର ଦାବି କରୁଥିବା ପଞ୍ଜାବ ସରକାରରୁ ବହିଷ୍କୃତ ଅକାଳୀ ଦଳର ପ୍ରତିକ୍ରିୟା ଚରମ ରାଗର ରୂପ ନେଲା । ଦଳର ଅଭିଯୋଗ ଯେ "ଶିଖମାନଙ୍କର ପାର୍ଟି"କୁ ଅନ୍ୟାୟଭାବେ କ୍ଷମତାଚ୍ୟୁତ କରିବା ସକାଶେ ନଅଟି ରାଜ୍ୟର ନିର୍ବାଚନ ଡ୍ରାମା ଏକ "ବାହାନା" ବ୍ୟତୀତ ଭିନ୍ନ କିଛି ନୁହେଁ ।

ଦେଶ ବିଭାଜନ ଓ ସ୍ୱାଧୀନତା ପରଠାରୁ ଅକାଳୀମାନେ କେବେ କ୍ଷମତାକୁ ଆସିନଥିଲେ । ଦେଶର ମୋଟ ଜନସଂଖ୍ୟାର ମାତ୍ର ଦୁଇ ପ୍ରତିଶତ ସେମାନଙ୍କର ମୋଟ ସଂଖ୍ୟା । ପଞ୍ଜାବ ସୁବାର ଗଠନ ପରେ ସେଠି ସେମାନଙ୍କର ସଂଖ୍ୟାବହୁଳତା ହିନ୍ଦୁ ତୁଳନାରେ ମାତ୍ର ଅଳ୍ପ ବେଶୀ । ତା' ସତ୍ତ୍ୱେ ଅକାଳୀମାନେ କେବଳ ନିଜ ବଳରେ ସରକାର ଗଠନ କରିପାରି ନଥିଲେ । କଂଗ୍ରେସ ଦଳକୁ ହିନ୍ଦୁ ଭୋଟ ମିଳେ, ସାଙ୍ଗରେ ଅନେକ ଶିଖଙ୍କର ଭୋଟ ବି ମିଳେ । ଖାସ୍‌କରି 'ତଳ' ମଜବି ଜାତିର ଶିଖମାନେ ହେଲେ କଂଗ୍ରେସ ସମର୍ଥିତ । କାରଣ ତାଙ୍କ ବିରୋଧୀ ସମ୍ପନ୍ନ ବର୍ଗର ଜାଠମାନେ ହେଲେ ଶିଖ ସମ୍ପ୍ରଦାୟର ହର୍ତ୍ତାକର୍ତ୍ତା । ଷାଠିଏ ଦଶକରେ ଦୁଇଥର ଅବଶ୍ୟ ଅକାଳୀମାନେ ପଞ୍ଜାବରେ କ୍ଷମତାର ସ୍ୱାଦ ଚାଖିଥିଲେ, ମାତ୍ର ହିନ୍ଦୁତ୍ୱର ପକ୍ଷଧର ଜନସଂଘ ସହ ନିର୍ବାଚନ ବୁଝାମଣା କରି । ଦୁଇଥର ଯାକ ଅସହଜତା ଯୋଗୁଁ ମେଣ୍ଟ କ୍ଷଣସ୍ଥାୟୀ

ପ୍ରମାଣିତ ହେଲା । ୧୯୭୭ ମସିହାର ଇମର୍ଜେନ୍‌ସି ବିରୋଧୀ ହାୱାରେ ପ୍ରଥମ ଥର ପାଇଁ ନିଜ ତାକତରେ ଅକାଳୀଦଳ କ୍ଷମତାକୁ ଆସିଲା । ମାତ୍ର ଉଭୟ ସ୍ତରରେ ଅର୍ଥାତ୍ ରାଜ୍ୟ ଓ କେନ୍ଦ୍ର ସ୍ତରରେ ଦଳ ଜନତା ପାର୍ଟି ସହ ମେଣ୍ଟକରି କ୍ଷମତା ଭାଗ ବଣ୍ଟା କଲା । ୧୯୮୦ ମସିହାର ପାର୍ଲିଆମେଣ୍ଟ ନିର୍ବାଚନ ଆକଳୀ ପାର୍ଟିକୁ ଏକ ଶୋଚନୀୟ ଧକ୍କା ଦେଲା । ମୋଟ ଷୋହଳଟି ଆସନ ମଧ୍ୟରୁ କେବଳ ଗୋଟିଏ ଆସନରେ ଦଳ ଜୟଯୁକ୍ତ ହେଲା । ମାତ୍ର ବିଧାନସଭାରେ ଦଳର ବହୁମତ ରହିଥିବା ଯୋଗୁଁ ଦଳକୁ ପାଞ୍ଚ ବର୍ଷ ସମୟ ସୀମା ଶେଷହେବା ଯାଏଁ କ୍ଷମତାରେ ରହିବାକୁ ଦିଆଯାଉ ବୋଲି ଏହା ଦାବି କଲା । ନଅଟି ରାଜ୍ୟ ବିଧାନସଭା ଭଙ୍ଗ ହେଲା ଉତ୍ତାରୁ ସଂଘଟିତ ହୋଇଥିବା ବିଧାନସଭା ନିର୍ବାଚନରେ ଅକାଳୀଦଳ ପୁଣି ଶୋଚନୀୟ ପରାଜୟର ସମ୍ମୁଖୀନ ହେଲା । ପରିଣାମବଶତଃ ଅକାଳୀମାନଙ୍କର ଯେଉଁ ରାଗ ସୃଷ୍ଟିହେଲା ଏବଂ ସମ୍ପନ୍ନ ଶିଖ୍ ସମ୍ପ୍ରଦାୟ ଭିତରେ ଯେଉଁ ପ୍ରତିବାଦ ଓ ପ୍ରତିରୋଧର ବହ୍ନି ଜଳିଉଠିଲା, ତାହା ଦୀର୍ଘ ଦଶ ବର୍ଷ ଯାଏ ପଞ୍ଜାବକୁ ଧୂମାୟିତ କରିପକାଇଲା । ଏବଂ ଶେଷରେ ଏହା ଇନ୍ଦିରାଙ୍କର ମଧ ପ୍ରାଣ ନେଲା ।

ସେ ଯାହାହେଉ ଇନ୍ଦିରା କ୍ଷମତାକୁ ଫେରିବାର ବର୍ଷକ ପରେ ପଞ୍ଜାବର ଦୁଃସମୟ ଆରମ୍ଭ ହେଲା । ଏବେ ଇନ୍ଦିରାଙ୍କ ମନରେ ପ୍ରମୁଖ ସମସ୍ୟା ହୋଇ ରହିଥିଲା ଆଫଗାନିସ୍ତାନ, ଭାରତ ଉପମହାଦେଶ ଓ ରୁଷ୍ ମଧ୍ୟରେ ଥିବା ଚିରାଚରିତ 'ବଫର' ରାଷ୍ଟ୍ର, ଭାରତର ସୁରକ୍ଷା ଓ ସ୍ୱାର୍ଥ ଦୃଷ୍ଟିରୁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ରାଷ୍ଟ୍ର ; ବଡ଼ ଶିକାର ପାଇଁ ସବୁରି ନିଘା ତାହାରି ଉପରେ ।

## ଆଫଗାନ : ବିଛୁଆତିର ଜ୍ୱାଳା

୧୯୭୯ ମସିହା ୨୬ ଡ଼ିସେମ୍ବର ଦିନ ସୋଭିଏତ ଟ୍ୟାଙ୍କ ଓ ସେନା କାବୁଲରେ ପ୍ରବେଶ କଲେ । ଉଦ୍ଦେଶ୍ୟ ଥିଲା ଭାଙ୍ଗି ପଡୁଥିବା ମିତ୍ର ସରକାରକୁ ବଞ୍ଚାଇ ରଖିବା । ଭାରତ ସେତେବେଳେ ଏତେ ମାତ୍ରାରେ ସାଧାରଣ ନିର୍ବାଚନକୁ ନେଇ ବ୍ୟସ୍ତ ଥିଲା ଯେ ଜଟିଳ ରୂପ ଧାରଣ କରିସାରିଥିବା ଆଫଗାନ ପରିସ୍ଥିତି ପ୍ରତି ଯଥେଷ୍ଟ ଧ୍ୟାନ ଦେଇପାରିଲା ନାହିଁ । ଚରଣ ସିଂ ହେଲେ କାମଚଳା ପ୍ରଧାନମନ୍ତ୍ରୀ । ମାତ୍ର ସମସ୍ୟାର ଜଟିଳତାକୁ ନେଇ ତାଙ୍କର ବିଶେଷ ଅବଧାରଣା ମଧ୍ୟ ନଥିଲା । ନିର୍ବାଚନରେ ତାଙ୍କର ଶୋଚନୀୟ ପରାଜୟ ପରେ ମଧ୍ୟ ପରିସ୍ଥିତିରେ କୌଣସି ଉନ୍ନତି ପରିଲକ୍ଷିତ ହେଲାନାହିଁ । କାରଣ, ୧୯୮୦ ଜାନୁୟାରୀ ୬ ତାରିଖରେ ଇନ୍ଦିରା ଗାନ୍ଧି ବିପୁଳ ବିଜୟ ହାସଲ କଲେ ସତ, ମାତ୍ର ୧୪ ଜାନୁଆରୀ ମକର ସଂକ୍ରାନ୍ତି ଶୁଭବେଳା ପୂର୍ବରୁ ସେ ଶପଥ ଗ୍ରହଣ କରିବାକୁ ମନାକଲେ । ଗୋଟାଏ ପଟେ ଇନ୍ଦିରାଙ୍କ ୧୨, ୱେଲିଂଡ଼ନ କ୍ରେସେଣ୍ଟର ଏକ ସାଧାରଣ ବଙ୍ଗଳାରେ ଉତ୍ସବମୁଖର ଜନସମାଗମ ଦିନକୁ ଦିନ ବୃଦ୍ଧି ପାଉଥାଏ । ଅନ୍ୟପଟେ କାମଚଳା ସରକାର ବଦଳରେ ନୂଆ ସରକାର ଗଠିତ ହେବାରେ ବିଳମ୍ବ ଘଟୁଥାଏ । ଫଳରେ ଜାତିସଂଘରେ ଅବସ୍ଥାପିତ ଭାରତୀୟ ରାଷ୍ଟ୍ରଦୂତଙ୍କ ପାଖକୁ ଆଫଗାନ ନୀତି ସମ୍ବନ୍ଧରେ ସ୍ପଷ୍ଟ

ନିର୍ଦ୍ଦେଶ ପହଞ୍ଚି ପାରିଲାନାହିଁ । ଯୁକ୍ତରାଷ୍ଟ୍ର ଆମେରିକା ଏବଂ ଚୀନ୍ ପରି ତାଙ୍କର ବନ୍ଧୁରାଷ୍ଟ୍ରମାନେ ଏକ କ୍ଷୁଦ୍ର ପଡ଼ୋଶୀ ରାଷ୍ଟ୍ର ଉପରେ ସୋଭିଏତ୍ ରୁଷର ଆକ୍ରମଣକୁ କଟୁ ସମାଲୋଚନା କରୁଥାନ୍ତି । ସାଙ୍ଗରେ ରୁଷର "ଶଇତାନ ସାମ୍ରାଜ୍ୟ" ବିରୋଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ଦାବି କରୁଥାନ୍ତି । ଏହି ପ୍ରକ୍ରିୟାରେ ଏକ ଧାରଣା ସୃଷ୍ଟିହେଲା ଯେ ଭାରତ "ପୂର୍ଣ୍ଣତଃ ଅଗ୍ରହଣୀୟ" ସୋଭିଏତ ହସ୍ତକ୍ଷେପ ପ୍ରତି "ଅଧିକ ସହନଶୀଳ" ମନୋବୃତ୍ତି ଧାରଣ କରୁଛି । ଇନ୍ଦିରା କ୍ଷମତାକୁ ଆସିଲାପରେ ଶୀଘ୍ର ପଦକ୍ଷେପ ଗ୍ରହଣକଲେ ଏବଂ ଜଟିଳ ବୈଦେଶିକ ନୀତିକୁ ଦିଶା ନିର୍ଦ୍ଦେଶ ଦେବାରେ ନିଜର ବିଚକ୍ଷଣ ବୁଦ୍ଧିର ପରିଚୟ ଦେଲେ ।

୧୯୫୦ ଦଶକରୁ ସୋଭିଏତ ୟୁନିୟନ ଓ ଭାରତ ମଧ୍ୟରେ ସମ୍ପର୍କ ମୈତ୍ରୀପୂର୍ଣ୍ଣ ରହିଥିଲା । ଇନ୍ଦିରାଙ୍କ ପ୍ରଥମ ପ୍ରଧାନମନ୍ତ୍ରୀତ୍ୱ ସମୟର ଏଗାର ବର୍ଷକାଳ ଏବଂ ତାଙ୍କ ପିତାଙ୍କ ସମୟରେ ଏହି ସମ୍ବନ୍ଧରେ ବିଶେଷ ଉନ୍ନତି ଘଟିଥିଲା । ଇନ୍ଦିରାଙ୍କ ସମୟରେ ଭାରତ ସୋଭିଏତ ଚୁକ୍ତିନାମା ସ୍ୱାକ୍ଷରିତ ହେଲା । ରୁଷ ସରକାର ସର୍ବଦା ତାଙ୍କ ପ୍ରତି ଖୁବ୍ ସମ୍ମାନ ପ୍ରଦର୍ଶନ କରୁଥିଲେ । ମାତ୍ର ୧୯୭୭ ମସିହାର ପରାଜୟ ପରେ ବୋଧହୁଏ ଜନତା ସରକାର ଅନୁରୋଧ କଲେ ଯେ ବୈଦେଶିକ ରାଷ୍ଟ୍ରମାନେ ଇନ୍ଦିରାଙ୍କ ସହ କୌଣସି ସମ୍ପର୍କ ରଖିବେ ନାହିଁ । ସେହି କାରଣରୁ ସୋଭିଏତ ସରକାର ଇନ୍ଦିରାଙ୍କ ପ୍ରତି ଯଥୋଚିତ ବ୍ୟବହାର ପ୍ରଦର୍ଶନ କରିନଥିଲେ । ତେଣୁ ସୋଭିଏତ ୟୁନିୟନର ସହାୟତା ନିମିତ୍ତ ଇନ୍ଦିରାଙ୍କର ବିଶେଷ ଆଗ୍ରହ ଦେଖାଇବାର କୌଣସି କାରଣ ନଥିଲା । ମାତ୍ର, ଏକଥା ବି ସତ ଯେ ନିଜର ବ୍ୟକ୍ତିଗତ ଇଚ୍ଛା ବା ଅନିଚ୍ଛା ପାଇଁ ସେ ଦେଶର ଜାତୀୟ ସ୍ୱାର୍ଥକୁ କେବେ ବଳି ପଡ଼ିବାକୁ ଦେବେ ନାହିଁ ।

ବିଦେଶରୁ ନୂଆଦିଲ୍ଲୀକୁ ଆସୁଥିବା ଅଭ୍ୟାଗତମାନଙ୍କ ଆଗରେ ସେ ତାଙ୍କର ଆଫଗାନ ନୀତି ସମ୍ବନ୍ଧରେ ସ୍ପଷ୍ଟୀକରଣ ଦେବାକୁ ଆରମ୍ଭକଲେ । ଭାରତ ଗସ୍ତରେ ଆସିଥିବା ଫ୍ରାନ୍ସ ରାଷ୍ଟ୍ରପତି ଗିସକାର୍ଡ୍ ଡ଼ି ଇଷ୍ଟେଂଗଙ୍କ ସାଙ୍ଗରେ ଇନ୍ଦିରା ଯେଉଁ ମିଳିତ ବିବୃତ୍ତି ଦେଲେ, ପରବର୍ତ୍ତୀ ସମୟରେ ତାହା ଗୋଷ୍ଠୀ ନିରପେକ୍ଷ ବିଦେଶ ମନ୍ତ୍ରୀ ବୈଠକର ସହମତି ସକାଶେ ଆଧାର ସୃଷ୍ଟିକଲା । ବଡ଼ କଥା ହେଲା ଯେ ଏହି ବୈଠକରେ ପାକିସ୍ତାନ ଓ ଆଫଗାନିସ୍ତାନ ମଧ୍ୟ ସାମିଲ ହୋଇଥିଲେ । ସହମତିର ସାରତତ୍ତ୍ୱ ହେଲା ଯେ କୌଣସି ଦେଶରେ ବୈଦେଶିକ ସେନା ପ୍ରବେଶ କରିବା ଉଚିତ୍ ନୁହେଁ ଏବଂ ଆଫଗାନିସ୍ତାନ ସମସ୍ୟାର ସାମରିକ ସମାଧାନ ବଦଳରେ ରାଜନୈତିକ ସମାଧାନ ନିମନ୍ତେ ବିକଳ୍ପ ଖୋଜାଯିବା ବାଞ୍ଛନୀୟ । ତେଣିକି ସୋଭିଏତ ୟୁନିୟନକୁ ଶୀଘ୍ରାତିଶୀଘ୍ର ସୈନ୍ୟ ଅପସାରଣ ପାଇଁ କୁହାଯାଇ ପାରିବ । ଫ୍ରାନ୍ସ ରାଷ୍ଟ୍ରପତିଙ୍କ ଭାରତ ଗସ୍ତ ପରେ ପରେ ପୋଖତ ସୋଭିଏତ ବୈଦେଶିକ ମନ୍ତ୍ରୀ (ପରବର୍ତ୍ତୀ କାଳରେ ସୋଭିଏତ ରାଷ୍ଟ୍ରପତି) ଆନ୍ଦ୍ରେ ଗ୍ରୋମିକୋ ଭାରତ ଗସ୍ତରେ ପଦାର୍ପଣ କଲେ । ତାଙ୍କ ସାଙ୍ଗରେ ଇନ୍ଦିରାଙ୍କ ବୈଠକକୁ ବିଶ୍ୱ ସ୍ୱତନ୍ତ୍ର ଦୃଷ୍ଟିରେ ଦେଖୁଥାଏ । ଗ୍ରୋମିକୋଙ୍କର ଦୀର୍ଘ ବକ୍ତବ୍ୟକୁ ଇନ୍ଦିରା ଧ୍ୟାନ ସହକାରେ ଶୁଣିଲେ ଏବଂ ଆଦୌ ପ୍ରତିକ୍ରିୟା ପ୍ରକାଶ କଲେନାହିଁ । ଦକ୍ଷ କୂଟନୀତିଜ୍ଞ ଗ୍ରୋମିକୋ ଯେତେବେଳେ

ସୂଚିତ କଲେ ଯେ ସେ ଏ ସମ୍ପର୍କରେ ଇନ୍ଦିରାଙ୍କର ପ୍ରତିକ୍ରିୟା ଜାଣିବାକୁ ଚାହାନ୍ତି, ଇନ୍ଦିରା ଉତ୍ତର ଦେଲେ, "ଓ ଏମିତି କଥା । ଏଥିରେ ନା ଆପଣଙ୍କୁ ମୁଁ ସମର୍ଥନ କରିପାରିବି, ନା ସାହାଯ୍ୟ କରିପାରିବି ।" ଅନ୍ୟ ପକ୍ଷରେ ସେ ଯୁକ୍ତରାଷ୍ଟ୍ର ଆମେରିକା ଓ ଚୀନ ନେତୃତ୍ୱରେ ଚାଲିଥିବା "ସୋଭିଏତ ୟୁନିୟନର ନିନ୍ଦା ଗାନ"ରେ ମଧ୍ୟ ଭାଗ ନେବାକୁ ମନାକଲେ ।

ଏହାର ଠିକ୍ ପରେ ପରେ ଭାରତର ସୁରକ୍ଷା ନିମନ୍ତେ ଆଫଗାନ ସମସ୍ୟା ଏମିତି ସଂକଟ ସୃଷ୍ଟିକଲା ଯାହା ଇନ୍ଦିରାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ମୁଣ୍ଡବଥା ହୋଇ ରହିଲା । ବାଂଲାଦେଶର ମୁକ୍ତି ପରେ ପାକିସ୍ତାନ ଆଉ ଭାରତ ପାଇଁ ବଡ଼ ବିପଦ ହୋଇ ନଥିଲା । ୧୯୭୯ ଏପ୍ରିଲ ମାସରେ ଆମେରିକା ଇସଲାମାବାଦକୁ ସବୁପ୍ରକାର ସହାୟତା ଦେବା ବନ୍ଦକଲା । ପାକିସ୍ତାନର ପ୍ରଥମ ଏବଂ ସେ ପର୍ଯ୍ୟନ୍ତ ଏକମାତ୍ର ନିର୍ବାଚିତ ପ୍ରଧାନମନ୍ତ୍ରୀ ଜୁଲି ଫିକର ଅଲି ଭୁଟ୍ଟୋଙ୍କୁ ଜେନେରାଲ ଜିଆ ଉଲ ହକଙ୍କ ସାମରିକ ଶାସନ ମୃତ୍ୟୁଦଣ୍ଡ ଦେବାର ଶାସ୍ତିରୂପେ ଆମେରିକା ଏହି କଠୋର ପଦକ୍ଷେପ ଗ୍ରହଣ କରିଥିଲା । ତେଣୁ ପାକିସ୍ତାନ ଅନ୍ୟମାନଙ୍କ ଦୃଷ୍ଟିରେ ଅସ୍ପୃଶ୍ୟ ରୂପେ ପରିଗଣିତ ହେଲା । ମାତ୍ର ହଠାତ କେବଳ ଗୋଟିଏ ରାତିରେ "ଆଫଗାନିସ୍ତାନର ଆକ୍ରମଣକାରୀ" ବିରୁଦ୍ଧରେ ସଂଗଠିତ ସଂଗ୍ରାମରେ ଏହା 'ଆଗୁଆ ରାଷ୍ଟ୍ର"ର ମର୍ଯ୍ୟାଦା ପାଇଲା । ରାଷ୍ଟ୍ରପତି ଜିମି କାର୍ଟର ପାକିସ୍ତାନକୁ ୪୦୦ ମିଲିଅନ ଡ଼ଲାର ମୂଲ୍ୟର ସାମରିକ ଉପକରଣ ଯାଚିଲେ । ଏହାକୁ ହେୟଜ୍ଞାନ କରି ଜିଆ ସାହାଯ୍ୟ ଗ୍ରହଣ କରିବାକୁ ଅସ୍ୱୀକାର କଲେ ଏବଂ କହିଲେ ସାହାଯ୍ୟର ଏହି ପରିମାଣ "ସମୁଦ୍ରକୁ ଶଙ୍ଖେ ପାଣି" ଭଳି । ଏହାପରେ ଆମେରିକା ତିନି ବିଲିଅନ ଡ଼ଲାର ମୂଲ୍ୟର ଏକ ସାମରିକ ଓ ଆର୍ଥିକ ସହାୟତା ପେକେଜ ପାକିସ୍ତାନକୁ ଦେବାପାଇଁ ସମ୍ମତ ହେଲା । ସାହାଯ୍ୟ ଭିତରେ ପ୍ରସିଦ୍ଧ ଆଣବିକ ଶକ୍ତିସମ୍ପନ୍ନ ଏଫ୍-୧୬ ବିମାନ ଅନ୍ତର୍ଭୁକ୍ତ ଥିଲା । ଏହି ଘଟଣା ଇନ୍ଦିରାଙ୍କୁ ଭୀଷଣଭାବେ ବିଚଳିତ କଲା । ତେଣିକି ପାକିସ୍ତାନ ଓ ଶକ୍ତିଶାଳୀ ଚୀନ ବିପକ୍ଷରେ ଆବଶ୍ୟକ ଦ୍ୱି-ପକ୍ଷୀୟ ପ୍ରତିରକ୍ଷା ବ୍ୟବସ୍ଥା ଗ୍ରହଣ କରିବାକୁ ତାଙ୍କୁ ଖୁବ୍ ଅଧିକ ମାତ୍ରାରେ ଶକ୍ତି ଓ ସାମର୍ଥ୍ୟ ନିୟୋଜିତ କରିବାକୁ ପଡ଼ିଲା ।

## ବିଜୟର ଦୁଃଖାନ୍ତକ ଅବସାନ

ଆଫଗାନିସ୍ତାନ ପ୍ରତି ନିରନ୍ତର ସତର୍କତାର ଆବଶ୍ୟକତା ରହିଥିଲା । ମାତ୍ର ଇନ୍ଦିରାଙ୍କୁ ଜଣାଥିଲା ଯେ ତାଙ୍କର ପ୍ରକୃତ ସମସ୍ୟା ହେଲା ଦେଶ ଭିତରେ । ହରିଜନମାନଙ୍କ ଉପରେ ଅତ୍ୟାଚାର, ସାମ୍ପ୍ରଦାୟିକ ଦଙ୍ଗା, ଜାତି ବିବାଦ, ଆଦିବାସୀ ବିଦ୍ରୋହ ଏବଂ ଦରଦାମ ବୃଦ୍ଧି ଆଦି ଜଣାଶୁଣା ବିକଟ ସମସ୍ୟାଗୁଡ଼ିକ ତାଙ୍କ ୩୩ ମାସର ଅନୁପସ୍ଥିତି ଭିତରେ ଅତି ବିକଟ ଆକାର ଧାରଣ କରିଥାନ୍ତି । ଅବଶ୍ୟ ଜୁନ୍ ମାସର ମଧ୍ୟବର୍ତ୍ତୀ ସମୟରେ ଉଭୟ ଇନ୍ଦିରା ଓ ସଂଜୟଙ୍କ ପାଇଁ ବିଶେଷ ଚିନ୍ତାର କିଛି କାରଣ ସୃଷ୍ଟି ହୋଇନାହିଁ । ଅନ୍ୟ ପକ୍ଷରେ କେତେଗୋଟି ସମସ୍ୟା ଅତ୍ୟନ୍ତ ବିକଟ ଆକାର ଧାରଣ କରିଥିଲା ସତ । ମାତ୍ର ସାମଗ୍ରିକ ପରିସ୍ଥିତି ଯାହା, ତାକୁ ଚିନ୍ତାଜନକ

ବୋଲି କୁହାଯାଇ ନପାରେ । ଉଦାହରଣସ୍ୱରୂପ ପ୍ରଧାନମନ୍ତ୍ରୀ ଭାବରେ ଚତୁର୍ଥ ଏବଂ ଶେଷଥର ପାଇଁ ଶପଥ ନେବାର ପରଦିନ ତାଙ୍କ ବିଚାର ପାଇଁ ଜନତା ସରକାର ଦ୍ୱାରା ନିଯୁକ୍ତ ଦୁଇଟିଯାକ ସ୍ୱତନ୍ତ୍ର କୋର୍ଟର ବିଚାରପତିମାନେ "ଅସାମ୍ବିଧାନିକ" କହି ନିଜ ନିଜ କୋର୍ଟକୁ "ବରଖାସ୍ତ" କରିଦେଲେ । "କିସ୍‌ସା କୁର୍ସିକା" ସିନେମାର ନିର୍ମାତା ଅମୃତ ନାହାଟା, ଯିଏ ସିନେମାର ଫିଲ୍ମ ରିଲକୁ ପୋଡ଼ିଯିବା ପରେ ପ୍ରଥମେ ଅଭିଯୋଗ ଆଣିଥିଲେ, ଏକ ଶପଥ ପତ୍ରରେ ଅନୁଶୋଚନା ପ୍ରକାଶକରି ସୂଚିତ କଲେ ଯେ ସଂଜୟ ଓ ବିଦ୍ୟାଚରଣ ଶୁକ୍ଳଙ୍କ ନାମରେ "ପ୍ରତିଶୋଧ ପରାୟଣ" ହୋଇ ସେ ଏମିତି "ମିଥ୍ୟା ଅଭିଯୋଗ" କରିଥିଲେ ।

ସେପଟେ ଇନ୍ଦିରା ଗାନ୍ଧିଙ୍କ ଠାରୁ ଅଲଗା ହୋଇଥିବା "ପୁରୁଣା କଂଗ୍ରେସ" ନେତାମାନଙ୍କର କଂଗ୍ରେସ (ଆଇ)ରେ ସାମିଲ ହେବାପାଇଁ ଲମ୍ବା ଲାଇନ ଲାଗିଥାଏ । ଏଥିରେ ମୁଖ୍ୟ ଭୂମିକା ନେଇଥିଲେ ହରିଆନାର ଜନତାଦଳ ମୁଖ୍ୟମନ୍ତ୍ରୀ ଭଜନଲାଲ । ସେ ୧୨, ୱେଲିଂଡ଼ନ କ୍ରେସେଣ୍ଟରେ ପହଞ୍ଚି ସଂଜୟଙ୍କ ଗଳାରେ ଫୁଲମାଳ ପିନ୍ଧାଇଲେ, ଇନ୍ଦିରାଙ୍କ ଆଗରେ ଭକ୍ତିପୂତ ଭାବେ ପଦାନତ ହେଲେ ଏବଂ ହରିଆନାର ଜନତା ସରକାର ଏଣିକି କଂଗ୍ରେସ (ଆଇ) ସରକାରରେ ପରିଣତ ହେଲା ବୋଲି ଘୋଷଣା କଲେ ।

ଅବଶ୍ୟ ଏଥିରୁ ବଳି ଉଲ୍ଲେଖନୀୟ ଥିଲା ନଅଟି ରାଜ୍ୟର ବିଧାନସଭା ନିର୍ବାଚନରେ କଂଗ୍ରେସ (ଆଇ)ର ଜୟଯୁକ୍ତ ହେବା । ଏହା ଫଳରେ ସଂଜୟଙ୍କ କ୍ଷମତା ଆହୁରି ବିସ୍ତାର ଲାଭ କଲା, କାରଣ ନଅଟିଯାକ ରାଜ୍ୟରେ ମୁଖ୍ୟମନ୍ତ୍ରୀ ପଦ ପାଇଁ ନେତା ମନୋନୟନର ଦାୟିତ୍ୱ ରହିଲା ତାଙ୍କ ହାତରେ । ତାଙ୍କଠାରୁ ପୂର୍ବର ଆଶଙ୍କା ମତେ କେତୋଟି ରାଜ୍ୟରେ ମନୋନୟନ ଯଥୋଚିତ ହେଲାନାହିଁ । ଏହାର ଦୁଷ୍ପରିଣାମ ପରେ ଇନ୍ଦିରାଙ୍କ ନିମନ୍ତେ ଲଜ୍ଜାଜନକ ପରିସ୍ଥିତି ସୃଷ୍ଟିକଲା । ଦଳର ସାଧାରଣ ସମ୍ପାଦକ ପଦରେ ଆନୁଷ୍ଠାନିକ ନିଯୁକ୍ତି ପାଇଁ ସଂଜୟ ଯେତେବେଳେ ମା'ଙ୍କ ସାଙ୍ଗରେ ଅଖିଳ ଭାରତୀୟ କଂଗ୍ରେସ କମିଟି ମୁଖ୍ୟାଳୟରେ ପଦାର୍ପଣ କଲେ ମା'ପୁଅ ଦୁହେଁ ଖୁବ୍ ଖୁସି ଜଣାପଡୁଥାନ୍ତି ।

ଏହାର ଠିକ୍ ଦଶଦିନ ପରେ ୧୯୮୦ ଜୁନ୍ ୨୩ ତାରିଖ ଦିନ ବିମାନ ଚାଳନା ସମୟରେ ଷ୍ଟଣ୍ଟ କରୁଥିବା ବେଳେ ଦୁର୍ଘଟଣାଗ୍ରସ୍ତ ହୋଇ ସଂଜୟ ପ୍ରାଣତ୍ୟାଗ କଲେ । ଇନ୍ଦିରାଙ୍କ ପାଇଁ ଏଥିରୁ ବଡ଼ ବା ଅଧିକ ଦାରୁଣ ଆଘାତ ଆଉ କିଛି ହୋଇନପାରେ । ସେତେବେଳେ ସଂଜୟଙ୍କ ବୟସ ମାତ୍ର ୩୩ ବର୍ଷ । ତାଙ୍କ ପଛରେ ସେ ଶୋକ ଜର୍ଜରିତା ମା, ଯୁବତୀ ପତ୍ନୀ ମାନେକା ଏବଂ ମାତ୍ର ତିନ ମାସର ଶିଶୁପୁତ୍ର ଫିରୋଜ ବରୁଣଙ୍କୁ ଛାଡ଼ିଦେଇଗଲେ ।

ସଂଜୟଙ୍କର ଆକସ୍ମିକ ମୃତ୍ୟୁ ଯୋଗୁଁ ଇନ୍ଦିରା ଯେଉଁ ଆଘାତ ପାଇଲେ ତାର ପ୍ରଭାବ ବିଷୟରେ ଅନେକ ଚର୍ଚ୍ଚା ଅତୀତରେ ହୋଇସାରିଛି । ଏ ସମ୍ବନ୍ଧରେ ଏତିକି କହିବା ଉଚିତ ହେବ ଯେ ସେ ଏହି ଦୁଃଖରୁ ଶେଷଯାଏଁ ଆଉ "ଉଭୁରି" ପାରିଲେ ନାହିଁ ଏବଂ ତାଙ୍କ ନିଜ ଭାଷାରେ କହିଲେ ସେହି "ଦୁଃଖ ସାଙ୍ଗରେ ବଞ୍ଚିବା" ନିମନ୍ତେ ଶିକ୍ଷା ଗ୍ରହଣ କଲେ । ଇନ୍ଦିରାଙ୍କ

ପାଖରେ ଦୀର୍ଘ ସମୟଧରି ବ୍ୟକ୍ତିଗତ ସଚିବ ରୂପେ କାମ କରୁଥିବା ଦୁଇଜଣ ବ୍ୟକ୍ତିଙ୍କ ମଧ୍ୟରେ ଏନ୍.କେ. ଶେଷନ ହେଲେ ଅନ୍ୟତମ । ସେ ଯେତେ ସ୍ପଷ୍ଟବାଦୀ, ସେତେ ସ୍ପଷ୍ଟକାମୀ ମଧ୍ୟ । ନିଜ ମତକୁ ଗୋପନୀୟ ନରଖି ସେ ପ୍ରକାଶ କରିଛନ୍ତି ଯେ, "ଇନ୍ଦିରାଙ୍କ ଜୀବନରେ ଯଦି କେବେ ସଂଜୟ ରହିନଥାନ୍ତେ ତେବେ ସେ ଆହୁରି ବଡ଼ ନେତ୍ରୀ ହୋଇପାରିଥାନ୍ତେ ।" ତାଙ୍କ ବ୍ୟକ୍ତିଗତ ମତରେ ସଂଜୟଙ୍କର ମୃତ୍ୟୁ ଇନ୍ଦିରାଙ୍କ ଜୀବନରେ ଏମିତି ଏକ "ଶୂନ୍ୟସ୍ଥାନ" ସୃଷ୍ଟିକଲା, ଯାହାକୁ କେହି, "ଏପରିକି ରାଜୀବ ମଧ୍ୟ" ପୂରଣ କରିପାରିଲେ ନାହିଁ ।

ସଂଜୟଙ୍କ ମୃତ୍ୟୁ ମା'ଙ୍କୁ ନିଷେତ କରିଦେଲା । ସାଙ୍ଗରେ ସରକାର ଏବଂ ମା'ଙ୍କ ଉପରେ ତାଙ୍କର ଯେଉଁ ପ୍ରଭୁତ ପ୍ରଭାବ ତାର କୁପରିଣାମ ମଧ୍ୟ କ୍ରମଶଃ ସ୍ପଷ୍ଟତର ହେଲା । ଇନ୍ଦିରା ଜାଣିନଥିଲେ ଯେ ବେସାମରିକ ବିମାନସେବାର ମହାନିର୍ଦ୍ଦେଶକ ଏୟାର ମାର୍ଶାଲ ଜେ. ଜହିରଙ୍କୁ ଅପମାନଜନକ ଭାବରେ ତାଙ୍କ ପଦବୀରୁ ଓହରି ଯିବାକୁ ପଡ଼ିଥିଲା, କାରଣ ସେ ପ୍ରଧାନମନ୍ତ୍ରୀଙ୍କୁ ସତର୍କ କରିଦେବାକୁ ଚାହୁଁଥିଲେ ଯେ ତାଙ୍କ ପୁଅ ବିମାନ ସୁରକ୍ଷା ନିୟମକୁ ଉଲଙ୍ଘନ କରୁଛନ୍ତି । ଫଳରେ ତାଙ୍କ ନିଜ ଜୀବନ ତଥା ଅନ୍ୟମାନଙ୍କ ଜୀବନ ପ୍ରତି ବିପଦର ଯଥେଷ୍ଟ ଆଶଙ୍କା ରହିଛି । ପୁଣି ଜଣାପଡ଼ିଲା ଯେ ଯେଉଁ ବିମାନଟି ସଂଜୟଙ୍କର ମୃତ୍ୟୁର କାରଣ ହେଲା ତାକୁ ସଂଜୟଙ୍କର ଘନିଷ୍ଠ ବନ୍ଧୁ ପ୍ରଧାନମନ୍ତ୍ରୀ ନିବାସର ମୁକ୍ତ ଆଗନ୍ତୁକ "ସାଧୁ ପୁରୁଷ" ଧୀରେନ୍ଦ୍ର ବ୍ରହ୍ମଚାରୀଙ୍କୁ ତାଙ୍କର ଜଣେ କେହି ଶିଷ୍ୟ "ଉପହାର" ସୂତ୍ରରେ ପ୍ରଦାନ କରିଥିଲେ ଏବଂ ସରକାରୀ ନୀତି ନିୟମକୁ ଉପେକ୍ଷାକରି ତାର ଆମଦାନି ଶୁଳ୍କ ପଇଠ କରାଯାଇନଥିଲା । ସଂଜୟଙ୍କର ଦାହ ସଂସ୍କାର ହେଲା ପ୍ରବାଦ ପୁରୁଷ ତାଙ୍କ ଅଜା, ନେହେରୁଙ୍କ ସମାଧିସ୍ଥଳ ପାଖରେ । ସେଥିପାଇଁ ଯେଉଁ ଅର୍ଥର ଅପଖର୍ଚ୍ଚ କରାଗଲା ତା' ବି କଟୁ ସମାଲୋଚନାର ବିଷୟ ହେଲା । ତାରିଖ ଅଲ୍ଲିଙ୍କ ଭାଷାରେ "ଖୋସାମଦ ବିଶୁଦ୍ଧ ଭାବାବେଗକୁ ତଳି ତଳାନ୍ତ କରିଦେଲା ।"

ତେଣିକି ସଂଜୟଙ୍କ ନାମରେ ସ୍ମୃତିସୌଧ ନିର୍ମାଣର ଲୀଳା ଆରମ୍ଭ ହେଲା । ନାନା ସ୍ଥାନରେ ତାଙ୍କ ପ୍ରତିମୂର୍ତ୍ତି ଶୋଭା ପାଇଲା । ଯେଉଁଠି ନୂଆ ସ୍କୁଲ, ଡ଼ାକ୍ତରଖାନା ଆଦି ତାଙ୍କ ନାମରେ ନିର୍ମିତ ହୋଇପାରିଲା ନାହିଁ, ସେଠି ଆଗରୁ ରହିଥିବା ରାସ୍ତା ତଥା ସଂସ୍ଥାଗୁଡ଼ିକୁ ତାଙ୍କ ନାମରେ ନାମିତ କରାଗଲା । ସ୍ମୃତିସଭାରେ ତାଙ୍କ ଗୁଣ କୀର୍ତ୍ତନର ସୀମା ରହିଲାନାହିଁ । ବରିଷ୍ଠ ସରକାରୀ ଅଫିସର ଓ ଦଳୀୟ ନେତାମାନେ ସଂଜୟଙ୍କୁ ଯୀଶୁଖ୍ରୀଷ୍ଟ ଏବଂ ଆଦିଶଙ୍କରାଚାର୍ଯ୍ୟ ପରି ମହାପୁରୁଷଙ୍କ ସାଙ୍ଗରେ ତୁଳନା କଲେ । କାରଣ ସେମାନେ ସମସ୍ତେ ୩୩ ବର୍ଷ ବୟସରେ ଇହଲୀଳା ସମ୍ବରଣ କରିଥିଲେ । କେବଳ ସେତିକି ନୁହେଁ, ତାଙ୍କୁ କାର୍ଲମାର୍କ୍ସ ଏବଂ ଆଇନ ଷ୍ଟାଇନଙ୍କ ସହ ମଧ୍ୟ ତୁଳନା କରାଗଲା । ବୋଧହୁଏ ସବୁଠାରୁ ଏହା ଅକ୍ଷମଣୀୟ । ମାତ୍ର ପରଲୋକଗତ ଏହି "ଭାରତ ସନ୍ତାନ"ଙ୍କର ବ୍ୟକ୍ତିପୂଜା ଯେଉଁଭଳି ଭାବେ ଆରମ୍ଭ ହୋଇଥିଲା, ଠିକ୍ ସେହିଭଳି ପରିସ୍ଥିତିରେ ହଠାତ୍ ପୁଣି ସମ୍ପୂର୍ଣ୍ଣ ରୂପେ ବନ୍ଦ ହୋଇଗଲା ।

## ପରିବାରବାଦର ଛାୟା

ସଂଜୟ ଖାଲି କରିଯାଇଥିବା ଶୂନ୍ୟସ୍ଥାନକୁ କିଏ ପୂରଣ କରିବ ? ଏ ନେଇ ସଂଜୟଙ୍କ ମୃତ୍ୟୁ ପରେ ପରେ ଯେଉଁ ଅନ୍ତର୍ଦ୍ୱନ୍ଦ୍ୱ ଗାନ୍ଧି ପରିବାର ଭିତରେ ଆରମ୍ଭ ହେଲା, ତାହା ସଂଜୟ - ବ୍ୟକ୍ତି - ପୂଜା କାର୍ଯ୍ୟକ୍ରମକୁ ବନ୍ଦକରିବା ନିମିତ୍ତ ମୁଖ୍ୟ କାରଣ ହେଲା । ସଂଜୟଙ୍କର ବିଧବା ପତ୍ନୀ ଯୁବତୀ ମନେକା ହେଲେ ଅତି ମହତ୍ତ୍ୱାକାଂକ୍ଷୀ ଏବଂ ଲଢୁଆ ସ୍ୱଭାବର । ସଂଜୟଙ୍କ ଏକମାତ୍ର ନ୍ୟାୟସଂଗତ ଏବଂ ପ୍ରକୃତ ଉତ୍ତରାଧିକାରୀ ବୋଲି କେବଳ ସେ ନିଜକୁ ବିଚାର କରୁନଥିଲେ, ତା ପାଇଁ ଲଢ଼ିବାକୁ ମଧ ପ୍ରସ୍ତୁତ ଥିଲେ । ଏହା ଇନ୍ଦିରାଙ୍କ ପାଇଁ କେବେ ସ୍ୱୀକାର୍ଯ୍ୟ ହୋଇନପାରେ, କାରଣ ସଂଜୟଙ୍କ ଜୀବିତାବସ୍ଥାରେ ସୁଦ୍ଧା ନିଜ ସାନବୋହୂ ସହ ତାଙ୍କ ସମ୍ବନ୍ଧ ଆଦୌ ସୌହାର୍ଦ୍ଦ୍ୟପୂର୍ଣ୍ଣ ନଥିଲା । ଏହାର ବିପରୀତ, ବଡ଼ବୋହୂ, ରାଜୀବଙ୍କର ପତ୍ନୀ ସୋନିଆଙ୍କ ସହ ତାଙ୍କର ସ୍ନେହପୂର୍ଣ୍ଣ ଏବଂ ସହଯୋଗମୂଳକ ବୋଲି କୁହାଯାଇପାରେ ।

ମନେକା ଏହି କଥାକୁ ନେଇ ସନ୍ତୁଷ୍ଟ ଯେ ରାଜୀବ ରାଜନୀତି ପ୍ରତି ଆଗ୍ରହୀ ନୁହନ୍ତି । ସୋନିଆ ମଧ ଚାହାନ୍ତି ନାହିଁ ତାଙ୍କ ପତି ରାଜନୀତିରେ ପ୍ରବେଶ କରନ୍ତୁ । ସେପଟେ ବିପଦପୂର୍ଣ୍ଣ ବିମାନଚାଳନା ଚାକିରି ତ୍ୟାଗକରି ମା'ଙ୍କୁ ଆବଶ୍ୟକମତେ "ସାହାଯ୍ୟ" କରିବାକୁ ରାଜୀବଙ୍କ ଉପରେ ପ୍ରବଳ ଚାପ ପଡୁଥାଏ । ସେ ଯାହାହେଉ ମନେକା ଭାବୁଥିଲେ ରାଜୀବ ହେଲେ ଜଣେ "କର୍ମକୁଣ୍ଠ" ବ୍ୟକ୍ତି । ଭାଇବୋହୂକୁ ମିଳିଥିବା ରାଜନୈତିକ ଭୂମିକାକୁ "ଛଡ଼େଇ ନେବା" ପାଇଁ ଅସମର୍ଥ ମଧ । ଏକଥା ବି ସତ ହେଲା ଯେ ଶାଶୁଙ୍କର ତାଙ୍କ ପ୍ରତି ଥିବା ତୀବ୍ର ସନ୍ଦେହ ଓ ଅସୂୟାଭାବକୁ ସେ ବୁଝିପାରିଲେ ନାହିଁ । ଇନ୍ଦିରାଙ୍କ ପୂର୍ଣ୍ଣ ସ୍ୱୀକୃତି ଥିଲା ରାଜୀବଙ୍କ ପାଇଁ, ଯଦିଓ ପ୍ରକାଶ୍ୟରେ କେବେ ତାହା ସେ ବ୍ୟକ୍ତ କରିନଥିଲେ । ତାଙ୍କ ପାଖକୁ ଆସୁଥିବା ମାଳ ମାଳ ଆଗନ୍ତୁକ ଯେତେବେଳେ ଅଳି କରନ୍ତି ଯେ ରାଜୀବଙ୍କୁ "ଦାୟିତ୍ୱ" ଦିଆଯାଉ, ତାଙ୍କର କେବଳ ଗୋଟିଏ ଉତ୍ତର, ଆପଣମାନେ ତାକୁ "ବୁଝାନ୍ତୁ" ଏବଂ ସେ ନିଜେ "ନିଷ୍ପତ୍ତି" ନେଉ ।

ସଂଜୟଙ୍କ ମୃତ୍ୟୁର ପାଞ୍ଚଦିନ ପରେ ପ୍ରସିଦ୍ଧ ସାମ୍ବାଦିକ ଏବଂ ଲେଖକ ଖୁସବନ୍ତ ସିଂ ସ୍ୱ - ସଂପାଦିତ 'ହିନ୍ଦୁସ୍ତାନ ଟାଇମ୍‌ସ'ରେ ତାଙ୍କ ବହୁ ପଠିତ ସ୍ତମ୍ଭରେ ଲେଖିଲେ, "ସଂଜୟ ବିଚାର ଧାରାର ଏକମାତ୍ର ସମ୍ଭାବ୍ୟ ଉତ୍ତରାଧିକାରୀ ହେଲେ ମନେକା ଗାନ୍ଧୀ । ନିଜ ପତିଙ୍କ ପରି ସେ ଅତିଶୟ ନିର୍ଭୟ । ଜାଗୃତ ହେଲେ ସିଂହବାହିନୀ ଦୁର୍ଗାରୂପ ସେ ।" ଏକଥା ଶୁଣି ଇନ୍ଦିରା ରାଗରେ ନିଆଁବାଣ । ମନେକାଙ୍କର "ଚକ୍ରାନ୍ତ ଓ ସମ୍ବନ୍ଧ"କୁ ନେଇ ତାଙ୍କର ସନ୍ଦେହ ଘନୀଭୂତ ହେଲା । ସଂଜୟଙ୍କ ସୁପାରିଶରେ ଖୁସବନ୍ତ ରାଜ୍ୟସଭାକୁ ମନୋନୀତ ହୋଇଥିଲେ । ଏହି ଘଟଣା ପରେ ହଠାତ୍ ଖୁସବନ୍ତ ସିଂ ସମସ୍ତ କୃପାରୁ ବଞ୍ଚିତ କରାହେଲେ । ଏକଥା ବି ସ୍ପଷ୍ଟତର ହେଲା ଯେ ଗୋଟାଏ ଛାତତଳେ ଦୁଇଜଣ ସିଂହବାହିନୀ ଦୁର୍ଗା କଦାଚିତ ଅବସ୍ଥାନ କରିନପାରନ୍ତି । ମାତ୍ର ସଂଜୟଙ୍କ ପୁତ୍ର ବରୁଣ ପ୍ରତି ଇନ୍ଦିରାଙ୍କ ଅସୀମ ସ୍ନେହ ରହିଥିଲା । ସ୍ୱାମୀ ଫିରୋଜଙ୍କର ନାଁ ଅନୁସାରେ ପିଲାଟିର ନାଁ ଫିରୋଜ ବରୁଣ ରଖାଯାଇଥିଲା । ତାକୁ ଛାଡି ରହିବା କଥା ଇନ୍ଦିରା

ମନରେ ଚିନ୍ତା କରିପାରୁନଥିଲେ । ଏମିତିରେ ବି ରାଜୀବ ନିଷ୍ପତ୍ତି ନେଇନଥାନ୍ତି । ଏହା ପ୍ରଧାନମନ୍ତ୍ରୀ ନିବାସରେ ରହି ସଂଜୟଙ୍କ ପୈତୃକ ସମ୍ପତ୍ତି ପାଇଁ ଚାପ ସୃଷ୍ଟିକରିବା ସକାଶେ ମନେକାଙ୍କୁ ପ୍ରୋତ୍ସାହିତ କଲା ।

ରାଜୀବ ରାଜନୀତିରେ ନିଜର ଭୂମିକାକୁ ନେଇ ସେଯାଏଁ ସ୍ଥିର ନିଶ୍ଚିତ ନଥିଲେ ଏବଂ ମନେକା ରାଗ ଜର୍ଜରିତ ରହୁଥିଲେ । ଏହି ବେଳାରେ ଇନ୍ଦିରା ପ୍ରଥମେ ସଂଜୟଙ୍କ ସମୟରେ କ୍ଷମତା ଓ ପ୍ରଭାବ ହାସଲ କରିଥିବା ସଂଜୟ ସହଯୋଗୀମାନଙ୍କର ଗୋଟି ଗୋଟି କରି ପକ୍ଷଚ୍ଛେଦନ କଲେ । ତାଙ୍କୁ ଭଲଭାବେ ଜଣା ଯେ ଯେଉଁମାନଙ୍କୁ ତାଙ୍କ ପୁଅ ଏକତ୍ରିତ କରି ରଖିଥିଲେ କେବଳ ପୁଅ ହାତରେ ହିଁ ସେମାନେ ନିୟନ୍ତ୍ରଣରେ ରହିଥାନ୍ତେ । ଅନ୍ୟଥା ସେମାନଙ୍କୁ ବିଦାୟ ଦେବାକୁ ପଡ଼ିବ । ତା'ଠାରୁ ମହତ୍ତ୍ୱପୂର୍ଣ୍ଣ ବିଷୟ ହେଲା ଯେ ସଂଜୟଙ୍କର ଅନୁଗତମାନଙ୍କୁ ନେଇ ମନେକା ଯେଉଁ କ୍ଷମତାର କେନ୍ଦ୍ରଟିଏ ନିର୍ମାଣ କରିବାକୁ ପ୍ରୟାସ କରୁଥିଲେ, ତାକୁ ପ୍ରତିରୋଧ କରିବା ଇନ୍ଦିରାଙ୍କ ପାଇଁ ଅତି ଜରୁରୀ ଥିଲା । ସଂଜୟଙ୍କର ଅତି ପ୍ରିୟ ଅନୁଚର ଆକବର ଅହମ୍ମଦ "ଡ଼ଂପି"ଙ୍କର ଉଦାହରଣରୁ ଏଭଳି ଅନୁଗତମାନଙ୍କର ଅବସ୍ଥା ସମ୍ବନ୍ଧରେ ଧାରଣା କରିହେବ । ପ୍ରଧାନମନ୍ତ୍ରୀ ନିବାସକୁ ଅବାଧ ପ୍ରବେଶର ଅଧିକାର ପାଇଥିବା ଡ଼ଂପି ସେଦିନ ରାଗରେ ଜର୍ଜରିତ, କାରଣ ତାଙ୍କୁ ପ୍ରତିଥର ସଲାମ ଠୁକୁଥିବା ଦରୱାନମାନେ ତାଙ୍କର ପଥରୋଧ କଲେ । କ୍ଷୁବ୍ଧ ଡ଼ଂପିଙ୍କୁ ଦରୱାନମାନେ ଯେତେବେଳେ ସୂଚିତ କଲେ ଯେ ସେମାନେ ଆଦେଶ ଅନୁସାରେ କର୍ତ୍ତବ୍ୟ ପାଳନ ମାତ୍ର କରୁଛନ୍ତି, ଡ଼ଂପି ବଡ଼ ପାଟିରେ ପଚାରିଲେ, "କିଏ ମୂର୍ଖଙ୍କ ଭଳି ଏହି ଆଦେଶ ଦେଲା ?" ଇନ୍ଦିରା ହଠାତ୍ ଫାଟକକୁ ଆସି ଉତ୍ତର ଦେଲେ, "ମୁଁ ଦେଇଛି ।" ଏକଥା ଖୋଦ ଡ଼ଂପି ନିଜେ ସ୍ୱୀକାର କରିଛନ୍ତି ।

ନିଜ ପତିଙ୍କ ପରି ମନେକାଙ୍କ ଠାରେ ମଧ କାର୍ଯ୍ୟ କୁଶଳତାର ଯଥେଷ୍ଟ ଅଭାବ ରହିଥିଲା । ନିଜ ଅସନ୍ତୋଷକୁ ଅଭିବ୍ୟକ୍ତ କରିବାପାଇଁ ଗଣମାଧ୍ୟମଗୁଡ଼ିକରେ ସେ ଲମ୍ବା ଲମ୍ବା ସାକ୍ଷାତକାର ଦେବାକୁ ଲାଗିଲେ, ଯେତେବେଳେ ରାଜୀବ "ମା'ଙ୍କୁ ସାହାଯ୍ୟ" କରିବାପାଇଁ ରାଜନୀତିରେ ଯୋଗଦେଲେ । ରାଜୀବ ନିଜ ଭାଇର ନିର୍ବାଚନମଣ୍ଡଳୀ ଆମେଥିରୁ ଉପନିର୍ବାଚନ ଲଢ଼ି ଅତି ସହଜରେ ଜୟଯୁକ୍ତ ହେଲେ । ଏଆଇସିସିର ସାଧାରଣ ସମ୍ପାଦକ ପଦରେ ମଧ ତାଙ୍କୁ ନିଯୁକ୍ତ କରାଗଲା । ଲୋକସଭା ନିର୍ବାଚନରେ ପ୍ରାର୍ଥୀ ହେବାପାଇଁ ଆବଶ୍ୟକ ଅନ୍ୟୁନ ୨୫ ବର୍ଷ ବୟସ ସେତେବେଳେ ମନେକାଙ୍କୁ ପୂରି ନଥିଲା ବୋଲି ସେ ଚୁପ୍ ରହିଲେ । ଅନ୍ୟଥା ନିଶ୍ଚିତ ରୂପେ ସେ ରାଜୀବଙ୍କ ବିରୋଧରେ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିଥାନ୍ତେ ।

ଯୌଥ ପରିବାରମାନଙ୍କରେ ଶାଶୁ, ବୋହୂ ଭିତରେ କଳହ ହେଲା ଏକ ସାଧାରଣ କଥା । ଦେଶର ମନୋରଂଜନ ଉଦ୍ୟୋଗ ପାଇଁ ମଧ ଏହା ଏକ ମୁଖ୍ୟ ବିଷୟ । ମାତ୍ର ଦେଶର ପ୍ରଥମ ପରିବାରରେ ନାଟକଟିର ଯେଉଁ ସ୍ୱାଭାବିକ ମଞ୍ଚନ ଆରମ୍ଭହେଲା ତାହା ବ୍ୟକ୍ତିଗତ ବିବାଦକୁ ରାଜନୈତିକ ରୂପ ଦେବାରେ ସାହାଯ୍ୟ କଲା ।

ମନେକା ଓ ରାଜୀବ ମଧ୍ୟରେ ଚାଲିଥିବା ପ୍ରତିଦ୍ୱନ୍ଦ୍ୱିତା ଓ ପ୍ରଧାନମନ୍ତ୍ରୀ ଏବଂ ତାଙ୍କ ସାନବୋହୂ ମଧ୍ୟରେ ଚାଲିଥିବା ବାକବିତଣ୍ଡାକୁ ନେଇ ଉଠୁଥିବା ଗୁଜବକୁ କିଛିଲୋକ ଖୁବ୍ ମହତ୍ତ୍ୱ ଦେଲେ, କାରଣ ସେମାନେ ସିଦ୍ଧ କରିବାକୁ ଚାହିଁଲେ ଯେ ଇନ୍ଦିରା ଗାନ୍ଧି ଜଣେ "ପରିବାରବାଦୀ" ଭାବରେ କେବଳ ନିଜ ରକ୍ତ ସମ୍ପର୍କୀୟଙ୍କୁ ଉତ୍ତରାଧିକାର ଦେବାପାଇଁ ବଦ୍ଧପରିପକର । ଏଭଳି ଚର୍ଚ୍ଚା ସଂଜୟଙ୍କୁ ଯୁବରାଜ ପଦବୀ ପାଇଁ ସ୍ୱୀକୃତି ଦିଆଯିବା ଦିନରୁ ଆରମ୍ଭ ହୋଇସାରିଥିଲା । ମାତ୍ର ଆଶ୍ଚର୍ଯ୍ୟର କଥା ରାଜୀବଙ୍କର ରାଜନୀତିରେ ପ୍ରବେଶପରେ ଏଭଳି ସମାଲୋଚନାକୁ ଆଉ ବିଶେଷ ପ୍ରାଧାନ୍ୟ ମିଳିଲା ନାହିଁ ।

ଅନ୍ୟ ପକ୍ଷରେ ରାଜୀବ କଂଗ୍ରେସ (ଆଇ)ର ନେତୃତ୍ୱ ନେଲାପରେ ଅନେକ ଲୋକ ତାଙ୍କୁ ସ୍ୱାଗତ କଲେ । ତାର ଗୋଟାଏ କାରଣ ହେଲା ସେ ଥିଲେ ନିଜ ଭାଇଠାରୁ ଠିକ୍ ଓଲଟା ସ୍ୱଭାବର । ସେ ବୟୋଜ୍ୟେଷ୍ଠମାନଙ୍କୁ ସମ୍ମାନ ଦିଅନ୍ତି । ସମବୟସ୍କଙ୍କ ପ୍ରତି ଭଦ୍ର ବ୍ୟବହାର କରନ୍ତି ଏବଂ ମା'ଙ୍କର ବାହୁଛାୟା ତଳେ ବିନା ପ୍ରତିବାଦରେ କାର୍ଯ୍ୟ କରିବାକୁ ମନା କରନ୍ତି ନାହିଁ । ଏ ସବୁରେ ସଂଜୟଙ୍କ ଠାରୁ ସମ୍ପୂର୍ଣ୍ଣ ବିପରୀତ ତାଙ୍କର ଗୁଣ । ତାଙ୍କର "ଶ୍ରୀ ନିର୍ମଳ" ଭାବମୂର୍ତ୍ତି ତାଙ୍କୁ ପ୍ରତିଷ୍ଠିତ ହେବାରେ ଖୁବ୍ ସାହାଯ୍ୟ କଲା । ତା'ଛଡ଼ା ତାଙ୍କ ସହଯୋଗୀ ଭାବରେ ଯେଉଁମାନେ କ୍ଷମତାର ଅଂଶୀଦାର ହେଲେ ସେମାନେ ମଧ୍ୟ ଭଦ୍ର । ସମୀକ୍ଷକମାନେ "ସଂଜୟଙ୍କ ଗୁନ ଦଳ ଓ ରାଜୀବଙ୍କ ଡୁନ ଦଳ" ମଧ୍ୟରେ ରହିଥିବା ପାର୍ଥକ୍ୟଗୁଡ଼ିକୁ ଖୋଜି ବାହାର କରିବାକୁ ଲାଗିଲେ । ରାଜୀବ ପାଠ ପଢୁଥିବା ସମ୍ଭ୍ରାନ୍ତ ଡୁନ ସ୍କୁଲର ସହପାଠୀମାନଙ୍କୁ "ଡୁନ ଦଳ" ବୋଲି କୁହାଗଲା । ସଂଜୟଙ୍କର ଗୁନ ଦଳର ଅର୍ଥ ହେଲା ଗୁଣ୍ଡାଦଳ ।

ମୋର ଅନ୍ୟ ଏକ ପୁସ୍ତକରେ ମୁଁ ବିସ୍ତୃତ ଭାବରେ ଯୁକ୍ତି ବାଢ଼ିଛି ଯେ ଭାରତ ବାହାରେ ସମଗ୍ର ଉପମହାଦେଶରେ ଲୋକ ଶାସକଙ୍କର ସନ୍ତାନ ସନ୍ତତିଙ୍କୁ "ଅତି ସ୍ୱାଭାବିକ ଭାବରେ ପରବର୍ତ୍ତୀ ଶାସକ ରୂପରେ ସ୍ୱୀକାର କରିନିଅନ୍ତି ।" ଏହି ଉଦ୍ଧୃତାଂଶଟି ଜଣେ ପାକିସ୍ତାନୀ ଲେଖକ ଏବଂ ଜୁଲିଫିକର ଅଲି ଭୁଟ୍ଟୋଙ୍କର ଏକଦା ସହଯୋଗୀ ଥିବା ରାଜା ଅନଓ୍ୱାର । ରାଜା ଅନଓ୍ୱାର ଆହୁରି ମଧ୍ୟ କହିଛନ୍ତି ଯେ, "ପରିବାରବାଦ ତତ୍ତ୍ୱଟି ଏଠାରେ ଏତେ ବିସ୍ତୃତଭାବରେ ଗୃହୀତ ଯେ ବ୍ରିଟିଶ ସମୟରୁ କେତୋଟି ପରିବାରର ସଭ୍ୟ ପ୍ରତ୍ୟେକ ନିର୍ବାଚିତ ଏବଂ ମନୋନୀତ ଆସନକୁ ଏକ ଅଲିଖିତ ନିୟମ ମୁତାବିକ ଅଧିକାର କରିଆସୁଛନ୍ତି । ଶ୍ରୀଲଙ୍କାର ପ୍ରଥମ ତିନିଜଣ ପ୍ରଧାନମନ୍ତ୍ରୀ ସେନାନାୟକ ବଂଶର ସଭ୍ୟ । ୧୯୬୦ ମସିହାରେ ବିଶ୍ୱର ପ୍ରଥମ ନିର୍ବାଚିତ ମହିଳା ପ୍ରଧାନମନ୍ତ୍ରୀ ଶ୍ରୀମାଭୋ ଥିଲେ ଚତୁର୍ଥ ପ୍ରଧାନମନ୍ତ୍ରୀ ଏସ୍.ଡ଼ବ୍ଲ୍ୟୁ.ଆର.ଡ଼ି.ବନ୍ଦରନାୟକେଙ୍କ ବିଧବା ପତ୍ନୀ । ପତିଙ୍କର ହତ୍ୟାପରେ ସେ ପ୍ରଧାନମନ୍ତ୍ରୀ ହେଲେ । ଇନ୍ଦିରା ହେଲେ ଦ୍ୱିତୀୟ ମହିଳା ପ୍ରଧାନମନ୍ତ୍ରୀ ।

ଏ ପ୍ରସଙ୍ଗରେ ଆଉ ଅଧିକା ଚର୍ଚ୍ଚା ନକରି ଏତିକି କହିବା ଯଥେଷ୍ଟ ହେବ ଯେ ରାଜୀବ କିମ୍ବା ସଂଜୟଙ୍କୁ ଇନ୍ଦିରା ନିଜ ଉତ୍ତରାଧିକାରୀ ନିଯୁକ୍ତ କରିବାପାଇଁ ପ୍ରଶିକ୍ଷଣ ଦେବା

ଆଗରୁ, ସୀମିତ ମାତ୍ରାରେ ହେଉ ପଛେ ବଂଶବାଦ ଭାରତରେ ପ୍ରତିଷ୍ଠିତ ହୋଇ ରହିଥିଲା । ଉଦାହରଣସ୍ୱରୂପ ମଧ୍ୟପ୍ରଦେଶରେ ଶ୍ୟାମା ଚରଣ ଶୁକ୍ଳ ପ୍ରଥମେ ପିତା ରବି ଶଙ୍କର ଶୁକ୍ଳଙ୍କର ନିର୍ବାଚନମଣ୍ଡଳୀକୁ ଉତ୍ତରାଧିକାର ସୂତ୍ରରେ ଅଧିକାର କଲେ । ପରେ ମୁଖ୍ୟମନ୍ତ୍ରୀ ପଦ ବି ତାଙ୍କୁ ମିଳିଲା । ଯେତେବେଳେ ପାର୍ଲିଆମେଣ୍ଟକୁ ଇନ୍ଦିରା ଗାନ୍ଧି କେବେ କେବେ ଦର୍ଶକଭାବରେ ଆସନ୍ତି, ସେତେବେଳେ ସର୍ଦ୍ଦାର ପଟେଲ, ରାଜେନ୍ଦ୍ର ପ୍ରସାଦ ଏବଂ ରାଜାଜୀଙ୍କର ସନ୍ତାନମାନେ ସଂସଦକୁ ନିର୍ବାଚିତ ହୋଇ ପ୍ରବେଶ କରିସାରିଥିଲେ । ସେତେବେଳେ କେହି ପରିବାରବାଦର ଅଭିଯୋଗ ଆଣି ନଥିଲେ । ସବୁଠାରୁ ଭିନ୍ନ ତଥା ଅଧିକ ଶକ୍ତିଶାଳୀ ବୋଲି ମନେ ହେଉଥିବା କେବଳ ନେହରୁ - ଗାନ୍ଧି ପରିବାର ଭାରତରେ ପରିବାରବାଦକୁ ବିସ୍ତାର କରୁନଥିଲା । (ସଲମାନ ରସ୍‌ଦିଙ୍କ ଭାଷାରେ "ଦିଲ୍ଲୀର ସବୁ ବଂଶକୁ ପଛରେ ପକେଇ ଦଲ୍ଲୀମାନଙ୍କ ସହ ପ୍ରତିଯୋଗିତା କରୁଥିବା ବଂଶ ।") ଜମ୍ମୁ ଓ କାଶ୍ମୀରର ଅବଦୁଲ୍ଲା ଓ ମୁଫତିଙ୍କଠାରୁ ଆରମ୍ଭକରି ତାମିଲନାଡୁର କରୁଣାନିଧି, ଉତ୍ତରପ୍ରଦେଶ ଓ ବିହାରର ଯାଦବ ଏବଂ ବମ୍ବେର ଅତୁଳନୀୟ ଥାକରେ ଆଦି ଅନେକ ପରିବାର ପୂର୍ଣ୍ଣମାତ୍ରାରେ ପରିବାରବାଦରେ ଆକ୍ରାନ୍ତ । ମାତ୍ର ଏ ସବୁ ହେଲେ କ୍ଷୁଦ୍ର - ପରିବାର, ଛୋଟିଆ ବଂଶମାନେ । ନିଜ ନିଜ ସ୍ଥାନୀୟ କ୍ଷେତ୍ର ଯାଏଁ ସୀମିତ ସେମାନେ । ରାଷ୍ଟ୍ରୀୟସ୍ତରକୁ ଆସିବା କଥା କେବେ ଚିନ୍ତା କରନ୍ତି ନାହିଁ ।

ଏ ସମ୍ପର୍କରେ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ତଥା ଶେଷକଥା ହେଲା ଯେ ପାରିବାରିକ ଉତ୍ତରାଧିକାର ସେତେବେଳେ ବଳବତ୍ତର ରହେ ଯେତେବେଳେ ଭୋଟଦାତା ନାଗରିକ ତାକୁ ସ୍ୱୀକୃତି ଦିଅନ୍ତି । ଅନ୍ୟ ପ୍ରକାରେ ନୁହେଁ ।  ତେଣୁ "ପାରିବାରିକ ରାଜନୀତି"ର ଅଭିଯୋଗ କେବେ ଇନ୍ଦିରାଙ୍କ ପାଇଁ କ୍ଷତିକାରକ ସିଦ୍ଧ ହୋଇନାହିଁ । ସେ ଯାହାହେଉ, ପାରିବାରିକ କଳହ ପ୍ରସଙ୍ଗକୁ ଯଦି ଫେରିଯିବା, ତେବେ ଶାଶୁ - ବୋହୂ ଭିତରେ ବିବାଦର ଅନ୍ତିମ ପର୍ଯ୍ୟାୟ ଆରମ୍ଭହେଲା ୧୯୮୨ ମସିହା ମାର୍ଚ୍ଚ ମାସରେ । ଇନ୍ଦିରା ଗାନ୍ଧି ଭାରତ ମହୋତ୍ସବକୁ ଉଦ୍‌ଘାଟନ କରିବାପାଇଁ ଲଣ୍ଡନ ଗସ୍ତରେ ଯାଇଥାନ୍ତି । ଭାରତୀୟ ସଂସ୍କୃତି, ଲୋକକଳା ଓ ହସ୍ତଶିଳ୍ପକୁ ବିଶ୍ୱ ସମକ୍ଷରେ ପରିଚିତ କରିବାର ଉଦ୍ଦେଶ୍ୟ ନେଇ ମହୋତ୍ସବର ଆୟୋଜନ କରାଯାଉଥାଏ । ତାଙ୍କ ଅନୁପସ୍ଥିତିରେ ମନେକା ସଂଜୟ ଅନୁଗତମାନଙ୍କର ଏକ ସମ୍ମିଳନୀ ଲକ୍ଷ୍ନୌଠାରେ ଆୟୋଜନ କରିବାକୁ ଯୋଜନା କରୁଥାନ୍ତି । ଉଦ୍ଦେଶ୍ୟ ଥାଏ ରାଷ୍ଟ୍ରୀୟ ସଂଜୟ ବିଚାର ମଞ୍ଚ ନାମରେ ଏକ ସଂଗଠନ ଗଠନ କରିବା । ଇନ୍ଦିରା ବୋହୂକୁ ନିର୍ଦ୍ଦେଶ ଦେଲେ ଯେ, ସେ ଯଦି ସମ୍ମିଳନୀରେ ଯୋଗ ଦିଅନ୍ତି, ତାଙ୍କପାଇଁ ୧ - ସଫଦରଜଙ୍ଗ ରୋଡ଼ ବାସଭବନକୁ ଫେରିବା ନିଷିଦ୍ଧ ହେବ । ମନେକା ନିର୍ଦ୍ଦେଶକୁ ଅବମାନନା କଲେ ଏବଂ ସମ୍ମିଳନୀ ସାରି ପ୍ରଧାନମନ୍ତ୍ରୀ ନିବାସକୁ ଯଥାବତ୍ ଫେରିଆସିଲେ । ତେଣିକି ଶାଶୁ ଓ ବୋହୂ ଭିତରେ ଅନେକ ବିଦ୍ୱେଷପୂର୍ଣ୍ଣ ଚିଠିପତ୍ର ଦିଆନିଆ ଚାଲିଲା, ଯାହାକି ଗଣମାଧ୍ୟମରେ ମଧ୍ୟ ପ୍ରଚାରିତ ହେଲା ।

ମନେକାଙ୍କ ଯୋଜନା ଏମିତି ସୁପରିକଳ୍ପିତ ଯେ ଯଦିଓ ସେ ଶାଶୁଙ୍କୁ ଉସ୍‌କାଉଥାନ୍ତି

ସାଧାରଣତଃ ଗଣମାଧ୍ୟମ ଓ ଲୋକ କହିଲେ "ବିଚାରୀ ବୋହୂ"କୁ ଘରୁ "ବିତାଡ଼ିତ କରି ଦିଆଗଲା" । ଏହା ବଡ଼ ବିଚିତ୍ର କଥା ଏବଂ ପ୍ରକୃତରେ ବୁଝା ପଡ଼େନା । ଇନ୍ଦିରା ଅତି ଶାନ୍ତ ସୁଲଭ ଚିତ୍ତରେ କଥାଟିକୁ ନେଲେ ଏବଂ ଚାଲାକ ବିରୋଧୀକୁ ଠିକଣା ଜାଗାରେ ଆଘାତ କଲେ । ଯାହା ହେଲ ବି ମନେକା ତାଙ୍କ ଆଗରେ ଜଣେ ସାନପିଲା । ମାତ୍ର ମନେକାଙ୍କର ବିରୋଧ ଯୋଗୁଁ ସେ ଅଯଥା ମାନସିକ ଅଶାନ୍ତିର ଶିକାର ହେଲେ । ଅଶାନ୍ତିର ପରିମାଣ ଏତେ ବୃଦ୍ଧିପାଇଲା ଯେ ସେ ଅଭିଯୋଗ କଲେ, ତାଙ୍କ ପୁଅ ସହ ବାହାଘର କରି "ମନେକାକୁ ଆମ ପରିବାର ଭିତରେ ଅନୁପ୍ରବେଶ କରିବା ସକାଶେ ଷଡ଼ଯନ୍ତ୍ର କରାଯାଇଛି ।" ଅନ୍ୟ ପକ୍ଷରେ ମନେକା ଇନ୍ଦିରାଙ୍କୁ "ରକ୍ତ ପିପାସୁ" କାଳିମାତା ବୋଲି ଅଭିହିତ କଲେ । ଇନ୍ଦିରାଙ୍କ ମୃତ୍ୟୁର ଚାରିଦିନ ପରେ ପ୍ରକାଶିତ ଏକ ନିବନ୍ଧରେ ଇନ୍ଦିରାଙ୍କ ଜଣେ ଅତି ପୁରୁଣା ବନ୍ଧୁ ମେରି ସେଟନ ଲେଖିଥିଲେ, "ଶେଷ ଜୀବନରେ ଇନ୍ଦିରାଙ୍କୁ ମନେକା ଯେତେ କଷ୍ଟ ଦେଇଥିଲେ, ଆଉ କେହି ସେତିକି କଷ୍ଟ ତାଙ୍କୁ ଦେଇପାରି ନାହାନ୍ତି ।"

## ଅସୁମାରି କଷ୍ଟ

ବିଦ୍ରୋହୀ ମନେକାଙ୍କ ସହ କଳହ ଚାଲିଥିବାବେଳେ ଅସୁମାରି ଦୁଃଖ ଓ କଷ୍ଟ ଇନ୍ଦିରାଙ୍କୁ ବେଢ଼ିଗଲେ । ପରିଶେଷରେ ସେଥିରେ ହିଁ ତାଙ୍କ ଜୀବନ ଗଲା । ପୂର୍ବରୁ ଉଲ୍ଲିଖିତ ଯେ ଦେଶରେ ଧାର୍ମିକ, ଆଞ୍ଚଳିକ, ଜାତିଗତ, ଭାଷାଗତ ବିଦ୍ୱେଷ କିଛି ନୂଆ କଥା ନୁହେଁ । ମାତ୍ର ଆଗ ତୁଳନାରେ ଏବେ ସେ ଧରଣର ସମସ୍ୟା ଭିତରେ ଏକ ବଡ଼ ଧରଣର ପରିବର୍ତ୍ତନ ଦେଖିବାକୁ ମିଳୁଥାଏ । କଳହ ଆଉ ଆଗପରି ସ୍ଥାନୀୟ, କ୍ଷଣସ୍ଥାୟୀ କିମ୍ବା କାଁ ଭାଁ କାହିଁ କେଉଁଠି ସୃଷ୍ଟି ହେଉନଥିଲା । ଅତୀତରେ ଇନ୍ଦିରା ସେ ଧରଣର ସମସ୍ୟା ମୁକାବିଲା କରିଥିଲେ । ୧୯୮୦ ଦଶକ ପ୍ରାରମ୍ଭରେ ତାହା ବେଶି ବିପଦମୟ ହେଲା କାରଣ କଳହ ବ୍ୟାପକ ହେଲା, ନିୟମିତ ରୂପେ ସଂଘଟିତ ହେଲା ଏବଂ ଦୀର୍ଘ ସମୟ ଧରି ତାର ସମାଧାନ ସମ୍ଭବ ହେଲାନାହିଁ । ପ୍ରତ୍ୟେକ କ୍ଷେତ୍ରରେ ହିଂସାର ପରିମାଣ ବୃଦ୍ଧି ପାଇବାକୁ ଆରମ୍ଭକଲା ଏବଂ ତହିଁରେ ଖୁବ୍ ଉନ୍ନତ ଧରଣର ମାରଣାସ୍ତ୍ରର ବ୍ୟବହାର ଦେଖିବାକୁ ମିଳିଲା । ବିଦ୍ୱେଷ ସୃଷ୍ଟିକାରୀମାନେ ବିଦେଶରୁ ମାରଣାସ୍ତ୍ର ଆମଦାନି କଲେ । ଆଫଗାନ ଯୁଦ୍ଧ ଏବଂ ଭିଏତନାମ ଯୁଦ୍ଧରେ ବଳି ପଡ଼ିଥିବା ଅସ୍ତ୍ରଶସ୍ତ୍ରଗୁଡ଼ିକୁ ଖୁବ୍ ସହଜରେ ହସ୍ତଗତ କଲେ ।

ବିଡ଼ମ୍ବନାର ବିଷୟ ହେଲା ଯେ ଇନ୍ଦିରା କ୍ଷମତାକୁ ଫେରିଆସିବା ପରେ ପ୍ରଥମ ବଡ଼ ଧରଣର ହିଂସା ଆରମ୍ଭହେଲା ତାଙ୍କର ସ୍ୱତନ୍ତ୍ର ସମର୍ଥକ ଗୋଷ୍ଠୀ ହରିଜନମାନଙ୍କ ବିରୁଦ୍ଧରେ । ବିହାରର ପିପରା ଓ ପାରସବିଘା ନାମକ ଦୁଇଟି ଗାଁ'ରେ ଉଚ୍ଚ ଜାତିର ଲୋକ ହରିଜନମାନଙ୍କ ଉପରେ ଅତ୍ୟାଚାର କଲେ, ଯାହାକି ବେଲଚି ହରିଜନ ଅତ୍ୟାଚାର ଠାରୁ ଅଧିକ ଭୟାବହ ଥିଲା । ରାଜନୀତିରେ ଅଲୋଡ଼ା ହୋଇ ପଡ଼ିରହିଥିବା ବେଳେ ଇନ୍ଦିରା ହାତୀ ପିଠିରେ ବେଲଚି ଗସ୍ତକରି

ହରିଜନ ଅତ୍ୟାଚାର ପ୍ରସଙ୍ଗ ପ୍ରତି ଲୋକଙ୍କର ଧ୍ୟାନ ଆକର୍ଷଣ କରିଥିଲେ । ଅନେକ ସ୍ଥାନରେ ପୋଲିସର ଦୌରାତ୍ମ୍ୟ ବଢ଼ିପାଣି ପରି ବୃଦ୍ଧିପାଇଲା । ସବୁଠାରୁ ବିକଟାଳ ଥିଲା ସେହି ବିହାର ରାଜ୍ୟରେ ଅବସ୍ଥିତ ଭାଗଲପୁରର ଘଟଣା । ୧୯୮୦ ମସିହା ନଭେମ୍ବର ମାସରେ ହାଜତରେ ଥିବା ଅଭିଯୁକ୍ତ ଅପରାଧୀମାନଙ୍କୁ ଅନ୍ଧ କରିବାପାଇଁ ଆଖିରେ ପୋଲିସ ସୁନିୟୋଜିତ ଢ଼ଙ୍ଗରେ ଏସିଡ୍ ପକାଇଦେଲା । ଏହି ଅବର୍ଣ୍ଣନୀୟ ଦୌରାତ୍ମ୍ୟ ସକାଶେ ଦାୟୀ ୧୫ଜଣ ପୋଲିସ କର୍ମଚାରୀଙ୍କୁ ଯେତେବେଳେ ଚାକିରିରୁ ନିଲମ୍ବିତ କରିଦିଆଗଲା, ସେମାନଙ୍କର ଶହ ଶହ ସହଯୋଗୀ ଏବଂ ସ୍ଥାନୀୟ ଜନତା ନିଲମ୍ବିତ ପୋଲିସଙ୍କ ସମର୍ଥନରେ ବିକ୍ଷୋଭ ପ୍ରଦର୍ଶନ କଲେ । ସେମାନଙ୍କ ଯୁକ୍ତି ଥିଲା ଯେ ଅନ୍ଧ କରାଯାଇଥିବା କଏଦୀମାନେ ହେଲେ ଜଘନ୍ୟ ଅପରାଧୀ । ବିଚାରାଳୟର ବିଳମ୍ବିତ ପ୍ରକ୍ରିୟାରେ ସେମାନଙ୍କୁ ଦଣ୍ଡ ଦିଆଯାଇ ପାରିବ ନାହିଁ କାରଣ କେହି ସେମାନଙ୍କ ବିରୁଦ୍ଧରେ ସାକ୍ଷ୍ୟ ପ୍ରଦାନ କରିବାକୁ ସାହସ କରିବେ ନାହିଁ ।

ଦିଲ୍ଲୀ ନିକଟସ୍ଥ ମୋରାଦାବାଦରେ ହିନ୍ଦୁ - ମୁସଲମାନ ମଧ୍ୟରେ ଏକ ସାମ୍ପ୍ରଦାୟିକ ଦଙ୍ଗା ମଧ୍ୟ ଏହି ସମୟରେ ସଂଘଟିତ ହେଲା । ଏହା ଦୀର୍ଘ ମାସେ କାଳ ଧରି ଚାଲିଲା ଏବଂ ଦଙ୍ଗାରେ ମୋଟ ୧୪୪ଜଣ ବ୍ୟକ୍ତିଙ୍କର ପ୍ରାଣହାନି ଘଟିଲା । କେବଳ ସେତିକି ନୁହେଁ ଏହା ଆଖପାଖର ସହରକୁ ଏବଂ ଶେଷରେ ଆହ୍ଲାବାଦ, ମଧ୍ୟପ୍ରଦେଶର ମାଉ ଏବଂ ସାମ୍ପ୍ରଦାୟିକ ଦଙ୍ଗା ଦ୍ୱାରା ସାଧାରଣତଃ ଆକ୍ରାନ୍ତ ହେଉ ନଥିବା କାଶ୍ମୀରକୁ ମଧ ବ୍ୟାପିଗଲା ।

ସମୟ ଅତିକ୍ରାନ୍ତ ହୁଅନ୍ତେ ହରିଜନ ଓ ମୁସଲିମ ସମସ୍ୟା ପରସ୍ପର ଭିତରେ ଯୋଡ଼ି ହେବାକୁ ଲାଗିଲେ, କାରଣ କେତେକ ସ୍ଥାନରେ ସଶସ୍ତ୍ର ପୋଲିସ ଉଭୟ ସଂଖ୍ୟାଲଘୁ ଗୋଷ୍ଠୀ ଉପରେ ଆକ୍ରମଣ କରୁଥିଲା ଏବଂ ପରିମାଣସ୍ୱରୂପ ପୋଲିସ ଓ ସଂଖ୍ୟାଲଘୁଙ୍କ ମଧ୍ୟରେ ଖଣ୍ଡଯୁଦ୍ଧ ଆରମ୍ଭ ହେଲା । ତାମିଲନାଡୁର ମିନାକ୍ଷୀପୁରମ ନାମକ ଏକ ଗାଁରେ ୧୩୦୦ ହରିଜନ ଧର୍ମାନ୍ତରଣ କରି ମୁସଲିମ ଧର୍ମରେ ଦୀକ୍ଷିତ ହୋଇଥିଲେ । ଏହାର ପରିଣାମସ୍ୱରୂପ ମୂଳ ସୁଧ ମିଶାଇ ହରିଜନମାନଙ୍କ ଉପରେ ଅଧିକ ଅତ୍ୟାଚାର ହେଲା ଏବଂ ଅଧିକ ସଂଖ୍ୟକ ହରିଜନ ଇସଲାମ ଧର୍ମକୁ ଧର୍ମାନ୍ତରଣ କଲେ । ହିନ୍ଦୁବାଦୀମାନେ ଦାବି କଲେ, ଭାରତକୁ "ହିନ୍ଦୁରାଷ୍ଟ୍ର" ଘୋଷଣା କରାଯାଉ ଏବଂ ଧର୍ମାନ୍ତରଣ ଉପରେ ପ୍ରତିବନ୍ଧକ ଲାଗୁ । ଇନ୍ଦିରାଙ୍କ ଦୃଢ଼ ଜବାବ ଭାରତ "ଏକ ଧର୍ମନିରପେକ୍ଷ ରାଷ୍ଟ୍ର" ଓ ଭବିଷ୍ୟତରେ ମଧ ତାର ଏହି ଚରିତ୍ରରେ କୌଣସି ପରିବର୍ତ୍ତନ ହେବନାହିଁ । ଧର୍ମାନ୍ତରଣ ଉପରେ ପ୍ରତିବନ୍ଧକକୁ ସମ୍ବିଧାନ ପ୍ରଦତ୍ତ ଧାର୍ମିକ ସ୍ୱାଧୀନତାର "ସମ୍ପୂର୍ଣ୍ଣ ପରିପନ୍ଥୀ" ବୋଲି ସେ କହିଲେ । ୧୯୮୧ ମସିହାରେ ଗୁଜରାଟରେ ହରିଜନ ସମସ୍ୟା ଖୁବ୍ ବ୍ୟାପକ ଆକାର ଧାରଣ କଲା । ସଂରକ୍ଷଣ ବିରୁଦ୍ଧରେ, ବିଶେଷକରି ଡାକ୍ତରୀ ଏବଂ ଇଂଜିନିୟରିଂ କଲେଜରେ, ଉଚ୍ଚ ଜାତିର ଲୋକେ ଏକ ତୀବ୍ର ଆନ୍ଦୋଳନ ଆରମ୍ଭ କଲେ । ଏଥିରେ ସରକାର ଓ ସଂରକ୍ଷଣ ନୀତି ନିୟନ୍ତାମାନଙ୍କ ଅପେକ୍ଷା ଅସହାୟ ହରିଜନମାନେ ହିଂସାର ଅଧିକ ଶିକାର ହେଲେ । "ଏଡ଼ିଟର ଗିଲ୍‌ଡ଼ସ ଅଫ୍ ଇଣ୍ଡିଆ" ଦ୍ୱାରା କରାଯାଇଥିବା ଏକ ତଦନ୍ତରୁ ସିଦ୍ଧ ହେଲା

ଯେ ସେତେବେଳେ ଅଧିକାଂଶ ଗୁଜରାଟ ସମ୍ବାଦପତ୍ରଗୁଡ଼ିକ ହରିଜନମାନଙ୍କ ବିରୁଦ୍ଧରେ ଭୀଷଣ ପକ୍ଷପାତ ନୀତି ଆଚରଣ କରିଥିଲେ ।

ନକ୍ସଲାଇଟ ନାମରେ ପରିଚିତ ମାଓବାଦୀମାନେ ଗୋଟାଏ ଦଶନ୍ଧି ଆଗରୁ ସେମାନଙ୍କର ଦୁର୍ଗ ପଶ୍ଚିମବଙ୍ଗରୁ ନିପାତ ହୋଇଥିଲେ । ମାତ୍ର ଅଶୀ ଦଶକର ଆରମ୍ଭରେ ପୁଣି ଥରେ ସେମାନଙ୍କ କାର୍ଯ୍ୟକଳାପ ବୃଦ୍ଧି ପାଇଲା । ୧୯୮୧ ମସିହାରେ କେବଳ ମୋଟ ୩୨୪ଟି ଘଟଣାରେ, ବିଶେଷକରି ଆଦିବାସୀ ଅଞ୍ଚଳରେ, ସେମାନେ ୯୨ଜଣ ଲୋକଙ୍କୁ ହତ୍ୟା କରିଥିଲେ ।

ସବୁଠାରୁ ଅଧିକ ଭୟାବହ ଏବଂ ଉଲ୍ଲେଖନୀୟ ଥିଲା ଦେଶର ଉତ୍ତର - ପୂର୍ବାଞ୍ଚଳରେ ଲାଗିରହିଥିବା ହିଂସାତ୍ମକ କାର୍ଯ୍ୟକଳାପ । ହଠାତ ତାର ତୀବ୍ରତା ଓ ବ୍ୟାପକତା ବୃଦ୍ଧି ପାଇଲା । ପଞ୍ଜାବ ସମସ୍ୟା ଏତେବେଳକୁ ଭୃଣ ଅବସ୍ଥାରେ ଥାଏ । ଉଭୟ ସମସ୍ୟାକୁ ଯଥାସମ୍ଭବ ବିସ୍ତୃତଭାବରେ ଆଲୋଚନା କରିବାର ଏଠାରେ ଆବଶ୍ୟକତା ରହିଛି ।

## ସର୍ବାଗ୍ରେ ଦୁର୍ନୀତି

ଦୁର୍ଭାଗ୍ୟର କଥା ଯେ ଇନ୍ଦିରାଙ୍କ ସବୁ ସମସ୍ୟା ପାଇଁ କେବଳ ପରିସ୍ଥିତିକୁ ଦାୟୀ କରାଯାଇ ନପାରେ । କେତେକ ଅସୁବିଧା ତାଙ୍କ ନିଜ ଦ୍ୱାରା ସୃଷ୍ଟ ଆଉ କିଛି ସଂଜୟଙ୍କ ଦ୍ୱାରା । ଦଳ ଭିତରେ ଇନ୍ଦିରା ସର୍ବୋଚ୍ଚ ନେତ୍ରୀ । ତହିଁରେ ନା କୌଣସି ବିବାଦ ଥିଲା, ନା ବିବାଦର ଆଶଙ୍କା ରହିଥିଲା । ମାତ୍ର "ସମ୍ପୂର୍ଣ୍ଣ ସୁରକ୍ଷା" ସକାଶେ ସେ କିଛି ନା କିଛି ପଦକ୍ଷେପ ନେବାରୁ ବିରତ ହୁଅନ୍ତି ନାହିଁ । ଏହି ପଦକ୍ଷେପଗୁଡ଼ିକ ଭିତରେ ମୁଖ୍ୟମନ୍ତ୍ରୀଙ୍କୁ ମଝିରେ ମଝିରେ ପରିବର୍ତ୍ତନ କରିବା ଏବଂ ଅତନ୍ତଃ ତିନି ମାସରେ ଥରେ ମନ୍ତ୍ରୀମଣ୍ଡଳରେ ଅଦଳ ବଦଳ କରିବା ଅନ୍ୟତମ । କେତେଦିନ ପାଇଁ ମନ୍ତ୍ରୀପଦ ହାତରେ ରହିବ, ସେ ନେଇ କେହି ନିଶ୍ଚିତ ନଥିଲେ । ଫଳରେ କ୍ଷମତାରେ ଥିବା ଭିତରେ ଯେତେ ସମ୍ଭବ ଅଧିକ ଅର୍ଥ ସଂଗ୍ରହ କରିବାକୁ ସେମାନେ ପ୍ରୟାସ କରୁଥିଲେ । ତେଣୁ, ଦୁର୍ନୀତି ଓ କ୍ଷମତାର ଅପବ୍ୟବହାରର ମାତ୍ରା ଅନେକ ବଢ଼ିଗଲା । ସ୍ଥିତି ପ୍ରାକ୍‌ଇମର୍ଜେନ୍‌ସି ଭଳି ମନେହେଲା ।

କଂଗ୍ରେସ (ଆଇ) ଏବଂ ଏପରିକି ପ୍ରଧାନମନ୍ତ୍ରୀଙ୍କ ପାଇଁ ସବୁଠାରୁ ଅଧିକ କ୍ଷତିକାରକ ହେଲା ଏ.ଆର. ଆନ୍ତୁଲେଙ୍କ ଚାଲାକି । ଦେଶର ସବୁଠାରୁ ବେଶି ସମ୍ପନ୍ନ ପ୍ରଦେଶ ମହାରାଷ୍ଟ୍ରର ମୁଖ୍ୟମନ୍ତ୍ରୀ ପଦରେ ତାଙ୍କୁ ନିଯୁକ୍ତ କରାଯାଇଥିଲା । ଏହାର ଏକମାତ୍ର କାରଣ ହେଲା ସେ ପରଲୋକଗତ ସଂଜୟ ଗାନ୍ଧିଙ୍କ ଅତ୍ୟନ୍ତ ଅନୁଗତ । ରାଜନୀତିରେ ସଫଳତା ପାଇଁ ଟଙ୍କାର ବିଶେଷ ଆବଶ୍ୟକତା ରହିଛି ଉପଲବ୍ଧି କରି ସେ ଧଡ଼ାଧଡ଼ ମାନ ସମ୍ମାନକୁ ଖାତିର ନକରି ଟଙ୍କା ଯୋଗାଡ଼ରେ ଲାଗିପଡ଼ିଲେ । ଇନ୍ଦିରା ଗାନ୍ଧି ପ୍ରତିଭା ପ୍ରତିଷ୍ଠାନ ନାମରେ ଏକ ଟ୍ରଷ୍ଟ ଗଠନକରି ବିଭିନ୍ନ ସ୍ଥାନରେ ତାର ଶାଖାମାନ ଆରମ୍ଭ କଲେ । ତେଣିକି ବିଜ୍ଞାପନ ଜରିଆରେ ଘୋଷଣା କଲେ ଯେ, ଟ୍ରଷ୍ଟ ପାଇଁ ସାହାଯ୍ୟ ସେ ଟଙ୍କା ଆକାରରେ ନ ନେଇ କେବଳ ଚେକ ଆକାରରେ

ଗ୍ରହଣ କରିବେ । ଅଳ୍ପଦିନ ପରେ ବିଚାରାଳୟ ଏବଂ ପାର୍ଲିଆମେଣ୍ଟରେ ଅଭିଯୋଗ ହେଲାପରେ ଏକଥା ପ୍ରମାଣିତ ହେଲା ଯେ ସରକାରୀ ଅନୁକମ୍ପା ଦେଇ ତା ବଦଳରେ ଲୋକଙ୍କଠାରୁ ଆନ୍ତୁଲେ ଟଙ୍କା "ଆଦାୟ" କରୁଛନ୍ତି । ଇନ୍ଦିରା ସରକାର ଘଟଣାଟିକୁ ଗାମ୍ଭୀର୍ଯ୍ୟର ସହ ନେବା ପରିବର୍ତ୍ତେ ପ୍ରାକ୍ - ଇମର୍ଜେନ୍ସି କୌଶଳ ଅବଲମ୍ବନ କଲେ ଏବଂ ସମସ୍ତ ଅଭିଯୋଗକୁ "ମିଥ୍ୟା ଓ ଉଦ୍ଦେଶ୍ୟମୂଳକ" ବୋଲି ଖାରଜ କରିଦେଲେ । ସଂସଦ କକ୍ଷରେ ତାକୁ ନେଇ ଆଲୋଚନା କରିବାକୁ ମଧ୍ୟ ସମ୍ମତି ପ୍ରଦାନ କଲେ ନାହିଁ । ପରିଣାମସ୍ୱରୂପ, କେବଳ ଆନ୍ତୁଲେଙ୍କ କାରଣରୁ ପାର୍ଲିଆମେଣ୍ଟର ପୂରା ଅଧିବେଶନ ଚାଲିପାରିଲା ନାହିଁ । ଶେଷରେ ଇନ୍ଦିରା ଅବଶ୍ୟ ଆନ୍ତୁଲେଙ୍କୁ ଇସ୍ତଫା ପ୍ରଦାନ କରିବାକୁ ନିର୍ଦ୍ଦେଶ ଦେଲେ । ମାତ୍ର ସେତେବେଳକୁ ସରକାରଙ୍କର ସମ୍ମାନରେ ପ୍ରଭୂତ କ୍ଷତି ସାଧିତ ହୋଇସାରିଥିଲା । ତଳ ଅଦାଲତ ଆନ୍ତୁଲେଙ୍କୁ ଦୋଷୀ ସାବ୍ୟସ୍ତ କଲା, ଯଦିଓ ଅନେକ ବର୍ଷର ଅନ୍ତରାଳରେ ଘଟଣାଟି ମନରୁ ପାଶୋରି ହୋଇଯିବା ପରେ ସର୍ବୋଚ୍ଚ ନ୍ୟାୟାଳୟ ତାଙ୍କୁ ନିର୍ଦ୍ଦୋଷ ଘୋଷଣା କଲେ ।

ଠିକ ଏକା ଧରଣର କଳାକାହାଣୀ ଏକ ସିଙ୍ଗାପୁରର ସଂସ୍ଥାରୁ ତେଲ କିଣା ଅଭିଯୋଗକୁ ନେଇ ଆରମ୍ଭ ହେଲା । ଖବର ଅନୁଯାୟୀ ସନ୍ଦେହାସ୍ପଦ "ସାଧୁପୁରୁଷ" ଧୀରେନ୍ଦ୍ର ବ୍ରହ୍ମଚାରୀ ଏବଂ ସଂଜୟଙ୍କର ଆଉ କେତେଜଣ ଚାମଚା ଏଥିରେ ଜଡ଼ିତ ଥିଲେ । ସଂଜୟଙ୍କର ଅନ୍ୟ ଅନୁଗତମାନେ ଦୃଶ୍ୟରୁ ଅପସରି ଗଲାପରେ ସୁଦ୍ଧା କେବଳ ଧୀରେନ୍ଦ୍ର ବ୍ରହ୍ମଚାରୀଙ୍କୁ ପ୍ରଧାନମନ୍ତ୍ରୀ ନିବାସକୁ ପ୍ରବେଶାଧିକାର ରହିଥିଲା । ରାଜୀବ ଗାନ୍ଧି ହିଁ ତାଙ୍କୁ କଠୋରତାର ସହ ଦୂରେଇ ରଖିଲେ ।

## ସୁଦୃଶ୍ୟ ଚିତ୍ରପଟ

ଏକଥା ସତ ଯେ ଭାରତୀୟ ପରିଦୃଶ୍ୟରେ କଳାଛାଇ ବେଳୁବେଳ ବିସ୍ତାରିତ ହେଉଥାଏ । ମାତ୍ର ଇନ୍ଦିରାଙ୍କ ଦ୍ୱିତୀୟ ଥର ପ୍ରଧାନମନ୍ତ୍ରୀତ୍ୱ କାଳରେ ବିଷାଦ ଓ ଅପଯଶ ଭରି ରହିଥିଲା କହିବା ବଡ଼ ଭୁଲ ହେବ । ଏହାର ବିପରୀତ, ଏହି ସମୟରେ ଅନେକ କୃତିତ୍ୱପୂର୍ଣ୍ଣ ଉପଲବ୍ଧି ମଧ୍ୟ ପ୍ରାପ୍ତ ହେଲା ଏବଂ ଦେଶ ତାର ଭୂୟସୀ ପ୍ରଂଶସା କଲା । ଏହା ବିଷାଦଭାବକୁ ଆଚ୍ଛାଦିତ କରି ଉଜ୍ଜ୍ୱଳ ତାରକା ସଦୃଶ ତାଙ୍କ ଜୀବନରେ ଶୋଭା ପାଇଲା ।

୧୯୭୪ ମସିହା ମେ' ମାସରେ ଇନ୍ଦିରା ଗାନ୍ଧିଙ୍କର ପ୍ରଥମ ଥର ପ୍ରଧାନମନ୍ତ୍ରୀତ୍ୱ କାଳରେ ଭାରତ ବିଶ୍ୱର ସର୍ବାପେକ୍ଷା ମହତ୍ତ୍ୱପୂର୍ଣ୍ଣ ଆଣବିକ କ୍ଲବର ଷଷ୍ଠତମ ସଦସ୍ୟ ହେବାର ସମ୍ମାନ ପାଇଲା । ସେହି ଘଟଣାର ଛ' ବର୍ଷ ଅନ୍ତରାଳରେ ଏଥର ଭାରତ ମହାକାଶ ଗବେଷଣାରେ ଅନେକ କୃତି ଅର୍ଜନ କଲା । ସଫଳତାର ସହ ଉପଗ୍ରହ ପ୍ରେରକ ଯାନ ଏସଏଲଭି-୩ କୁ ଅନ୍ତରୀକ୍ଷକୁ ପ୍ରକ୍ଷେପଣ କଲା । ସ୍ୱଦେଶରେ ନିର୍ମିତ ୩୫ କେ.ଜି ଓଜନର ଉପଗ୍ରହ ରୋହିଣୀ-୧ କୁ ଅନ୍ତରୀକ୍ଷରେ ସ୍ଥାପିତ କରାଗଲା । ଭାରତୀୟ ମହାକାଶ ଗବେଷଣା କେନ୍ଦ୍ର (ଇସ୍ରୋ) ଏ

ସମ୍ବନ୍ଧରେ ଅଧିକ ଗବେଷଣା କରି ଏକ ଯୋଗାଯୋଗ ଉପଗ୍ରହକୁ ମଧ୍ୟ ସ୍ଥାପନ କଲା । ବିଜ୍ଞାନ ଓ ପ୍ରଯୁକ୍ତି କ୍ଷେତ୍ରରେ ଅନ୍ୟ ଏକ ପ୍ରମୁଖ ପ୍ରକଳ୍ପ ହେଲା ୧୯୮୨ ମସିହାରେ "ସମନ୍ୱିତ ପ୍ରକ୍ଷେପଣ କାର୍ଯ୍ୟକ୍ରମ"ର ଶୁଭାରମ୍ଭ । ୧୯୮୪ ମସିହାରେ ସ୍କ୍ୱାଡ୍ରନ ଲିଡ଼ର ରାକେଶ ଶର୍ମା ସୋଭିଏତ ସାଲ୍ୟୁଡ଼-୭ ର ମହାକାଶଚାରୀ ଦଳରେ ସାମିଲ ହୋଇ ମହାକାଶକୁ ଯାତ୍ରା କଲେ । ସେ ହିଁ ଭାରତର ପ୍ରଥମ ମହାକାଶଚାରୀ ।

୧୯୭୭ ମସିହା ପୂର୍ବରୁ ଏବଂ ୧୯୮୦ ମସିହା ପରେ ଅନ୍ୟ ଦେଶ ସହ ସମକକ୍ଷ ହେବା ନିମିତ୍ତ ଦେଶ ପାଇଁ ଆବଶ୍ୟକ ଅତ୍ୟାଧୁନିକ ପ୍ରଯୁକ୍ତି ପ୍ରତି ଇନ୍ଦିରା କେତେ ଗମ୍ଭୀରତାର ସହ ଧ୍ୟାନ ଦେଉଥିଲେ, ତାର ପ୍ରମାଣ ମିଳିଲା ୧୯୭୬ ମସିହା ଗ୍ରୀଷ୍ମ ଋତୁରେ । ତାଙ୍କର ବିଜ୍ଞାନ ପରାମର୍ଶଦାତା ଅଶୋକ ପାର୍ଥସାରଥୀଙ୍କୁ ଡ଼ାକେଇ ସେ ପଚାରିଲେ, "ଅଶୋକ, ଆମେ ସିଲିକନ କ୍ଷେତ୍ରରେ କ'ଣ ସବୁ ପଦକ୍ଷେପ ନେଇଛନ୍ତି ।" ସେ କ୍ଷେତ୍ରରେ ନିଆଯାଇଥିବା ଏବଂ ଭବିଷ୍ୟତରେ ନେବାକୁ ଥିବା ପଦକ୍ଷେପ ସମ୍ବନ୍ଧରେ ଅଶୋକ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କଲେ । ତା'ପରେ ସାହସ ସଂଚୟ କରି ପଚାରିଲେ, "ମାଡ଼ାମ, ଏହି ଗ୍ରୀଷ୍ମର ଅପରାହ୍ନରେ ଆପଣଙ୍କ ମୁଣ୍ଡକୁ ସିଲିକନ କଥା କେମିତି ପଶିଲା ?" ତେଣିକି ଇନ୍ଦିରା ତାଙ୍କ ଟେବୁଲରେ ରଖାଯାଇଥିବା "ଇକୋନମିଷ୍ଟ" ପତ୍ରିକାର ସଦ୍ୟତମ ଅଙ୍କ ପ୍ରତି ଦୃଷ୍ଟି ଆକର୍ଷଣ କଲେ । ସେଥିରେ ଏକ ମୁଖ୍ୟ ନିବନ୍ଧରେ କୁହାଯାଇଥିଲା ଯେ, "ବିଂଶ ଶତାବ୍ଦୀରେ ଲୌହ ଶିଳ୍ପର ଯେଉଁ ମହତ୍ତ୍ୱ ରହିଥିଲା ଏକବିଂଶ ଶତାବ୍ଦୀରେ ବିକାଶ ପାଇଁ ସିଲିକନର ସେହି ଆବଶ୍ୟକତା ରହିବ ।" ୧୯୭୯ ମସିହା ଡ଼ିସେମ୍ବର ମାସର ବ୍ୟସ୍ତ ନିର୍ବାଚନ ପ୍ରଚାର କାର୍ଯ୍ୟକ୍ରମ ଭିତରେ, ଯେଉଁଥିରେ ତାଙ୍କର ଭବିଷ୍ୟତ ନିର୍ଭର କରୁଥିଲା, ସେ ବିଶ୍ୱବ୍ୟାପୀ କମ୍ପ୍ୟୁଟର ସାକ୍ଷରତା ଅଭିଯାନର ଜଣେ ଜଣାଶୁଣା ପକ୍ଷଧର ଜିନ ଜେକ ସେର୍ଭାନ ସ୍ରେଇବରଙ୍କ ସାଙ୍ଗରେ ଦୀର୍ଘ ଆଲୋଚନା ପାଇଁ ସମୟ ବାହାର କଲେ । ଅବଶ୍ୟ ସେତେବେଳେ ସେ ମାଇକ୍ରୋଚିପର ପ୍ରଭୂତ କ୍ଷମତା ସମ୍ବନ୍ଧରେ ବିଶେଷ ଜାଣି ନଥିଲେ,ମାତ୍ର ସ୍ରେଇବରଙ୍କ ମତରେ ସବୁ କଥାକୁ ଧ୍ୟାନପୂର୍ବକ ଶୁଣି ସେ ସମ୍ବନ୍ଧରେ ଅନେକଗୁଡ଼ିଏ ବିଶ୍ଳେଷଣାତ୍ମକ ପ୍ରଶ୍ନ ପଚାରିବାକୁ ଇନ୍ଦିରା ଆଗ୍ରହୀ ହୋଇଥିଲେ ।

ଏହି ପରିପ୍ରେକ୍ଷୀରେ ପରମାଣୁ କାର୍ଯ୍ୟକ୍ରମର ପୁନରାରମ୍ଭ କରିବାକୁ ଯାଇ ସେ ଘୋର ଅସୁବିଧାର ସମ୍ମୁଖୀନ ହେଲେ । ମୋରାରଜୀ ଦେଶାଇଙ୍କ ସମୟରେ କାର୍ଯ୍ୟକ୍ରମଟି ଏପଟ ସେପଟ ହୋଇ ସ୍ଥାଣୁ ଅବସ୍ଥାରେ କେବଳ ପଡ଼ି ରହିଥିଲା । ଏହି ସନ୍ଦର୍ଭରେ ପ୍ରଥମ ପଦକ୍ଷେପ ସ୍ୱରୂପ ସେ ପ୍ରମୁଖ ପରମାଣୁ ବୈଜ୍ଞାନିକ ରାଜା ରମନ୍ନାଙ୍କୁ ମୁମ୍ବାଇସ୍ଥିତ ଭାବା ଗବେଷଣା କେନ୍ଦ୍ରକୁ ବଦଳି କରି ନେଇଆସିଲେ । ପ୍ରତିରକ୍ଷା ମନ୍ତ୍ରୀଙ୍କର ବିଜ୍ଞାନ ପରାମର୍ଶଦାତା ଭାବରେ ରମନ୍ନାଙ୍କୁ ପୂର୍ବରୁ ଦିଲ୍ଲୀକୁ ସ୍ଥାନାନ୍ତରିତ କରାଯାଇଥିଲା । ପରମାଣୁ ଅସ୍ତ୍ର ନିର୍ମାଣ ପାଇଁ ଅବଶ୍ୟ ସେ ମାନସିକସ୍ତରରେ ନିଷ୍ପତ୍ତି ନେଇ ନଥିଲେ । ମାତ୍ର ଆବଶ୍ୟକତା ପଡ଼ିଲେ ଭାରତ ଯେମିତି ପରମାଣୁକ୍ଷମ ହୋଇପାରିବ ସେ ନେଇ ସବୁପ୍ରକାର ପ୍ରସ୍ତୁତି କରିବା ପାଇଁ ସେ ଆଗ୍ରହ ପ୍ରକାଶ କରିଥିଲେ । ତାଙ୍କର

ପ୍ରକ୍ଷେପାସ୍ତ୍ର ଯୋଜନା ପରମାଣୁ କାର୍ଯ୍ୟକ୍ରମ ଯୋଜନା ସାଙ୍ଗରେ ମିଶି ରହିଥିଲା । ୧୯୮୩ ମସିହାର ପ୍ରାରମ୍ଭରେ ଏପରିକି ଦ୍ୱିତୀୟ ଥର ପାଇଁ ମାଟିତଳେ ସେ ପରମାଣୁ ପରୀକ୍ଷଣ କରିବା କଥା ଚିନ୍ତା କରୁଥିଲେ । ମାତ୍ର ବିଶେଷକରି ଆମେରିକାର ଚାପରେ ତାଙ୍କୁ ନିଷ୍ପତ୍ତି ପରିବର୍ତ୍ତନ କରିବାକୁ ପଡ଼ିଲା ।

ଦ୍ୱିତୀୟ ଥର ପ୍ରଧାନମନ୍ତ୍ରୀ ହେଲା ପରେ ସେ ପ୍ରତିରକ୍ଷା ବିଭାଗକୁ ନିଜ ହାତରେ ରଖିଲେ । ଭାରତ ମହାସାଗର ସମେତ ଦେଶର ଚାରିଆଡ଼େ ସୁରକ୍ଷା ପରିବେଶ କ୍ରମଶଃ ନଷ୍ଟ ହେଉଥିବାରୁ ଦେଶର ପ୍ରତିରକ୍ଷା ବ୍ୟବସ୍ଥାକୁ ସୁଦୃଢ଼ କରିବା ସକାଶେ ଯଥେଷ୍ଟ ପଦକ୍ଷେପ ନେବାର ଆବଶ୍ୟକତା ଥିଲା । ତେଣୁ ଅସ୍ୱାଭାବିକ ଭାବେ ସେ ପ୍ରତିରକ୍ଷା ବିଭାଗ ଦାୟିତ୍ୱ ନିଜେ ନେଲେ । ଇନ୍ଦିରାଙ୍କର ଏହି ପ୍ରୟାସ ପାଇଁ କେହି ଧନ୍ୟବାଦ ଦେବାର ଶୁଣାଯାଏ ନାହିଁ, କାରଣ ବିଭିନ୍ନ ସାମରିକ କିଣାବିକାରେ "କିକବେକ" ଓ "କମିଶନ" କାରବାର ହେବାର ଶୁଣାଗଲା । ସାମରିକ କିଣାବିକା ଭିତରେ ବିଶେଷ ଉଲ୍ଲେଖନୀୟ ଥିଲା ଜର୍ମାନ ଏଚ୍‌ଡିଡ଼ବ୍ଲୁ ପୋତ । ତାକୁ କିଣିବା ସକାଶେ ସଂଜୟ ଗାନ୍ଧି ଯଥେଷ୍ଟ ଆଗ୍ରହ ପ୍ରକାଶ କରିଥିଲେ । ଆମେରିକାର ଜଣେ ପ୍ରମୁଖ ଦକ୍ଷିଣ ଏସିଆ ବିଶେଷଜ୍ଞ ସେଲିଗ ହରିସନ ଏମିତିରେ ଇନ୍ଦିରାଙ୍କର "ଜଟିଳ ଓ ଅନିୟନ୍ତ୍ରିତ" ସ୍ୱରାଷ୍ଟ୍ର ରାଜନୀତିକୁ ଖୁବ୍ ସମାଲୋଚନା କରନ୍ତି । ମାତ୍ର "ସୁରକ୍ଷା ଓ ବିଦେଶ ନୀତି ପରିଚାଳନା" ନିମନ୍ତେ ସେ ଇନ୍ଦିରାଙ୍କର ଭୂୟସୀ ପ୍ରଶଂସା କରିଛନ୍ତି । ଖାସକରି " ୧୯୭୪ ମସିହାର ପରମାଣୁ ପରୀକ୍ଷଣ" ନିଷ୍ପତ୍ତି ତାଙ୍କର ବିଶେଷ ପ୍ରଶଂସନୀୟ । ସେହି ନିଷ୍ପତ୍ତି ଏଭଳି ଏକ ସମୟରେ ନିଆଗଲା, ଯେତେବେଳେ "ଚୀନର ପରମାଣୁ ଶକ୍ତି ଭାବରେ ଅଭ୍ୟୁତ୍‌ଥାନ ଘଟିଥାଏ ଏବଂ ଯୁକ୍ତରାଷ୍ଟ୍ର ଆମେରିକା ତଥା ଅନ୍ୟାନ୍ୟ ପରମାଣୁ ଶକ୍ତି ସମ୍ପନ୍ନ ରାଷ୍ଟ୍ରମାନେ (ଆଣବିକ ନିରସ୍ତ୍ରୀକରଣ ପାଇଁ ଆବଶ୍ୟକ ଥିବା) ଏନ୍‌ପିଟିର ଷଷ୍ଠ ନିୟମକୁ ଖୋଲାଖୋଲି ଭାବେ ଉପେକ୍ଷା କରୁଥାନ୍ତି ।"

ଇନ୍ଦିରା ଗାନ୍ଧିଙ୍କର କୂଟନୀତିକ ହସ୍ତକ୍ଷେପ ପରି ବିଜ୍ଞାନ ଓ ପ୍ରଯୁକ୍ତି କ୍ଷେତ୍ରରେ ନିଆଯାଇଥିବା ପଦକ୍ଷେପଗୁଡ଼ିକ ମଧ୍ୟ ଖୁବ୍ ଉଲ୍ଲେଖନୀୟ । ଏଥର ପ୍ରଧାନମନ୍ତ୍ରୀ ହେବାପରେ ତାର ସାଢ଼େ ଚାରି ବର୍ଷ ଉତ୍ତାରୁ ତାଙ୍କୁ ହତ୍ୟା କରାଗଲା । ସେହି ସମୟ ଭିତରେ ସେ ଅନ୍ୟୂନ ୧୮ଥର ବିଦେଶ ଗସ୍ତରେ ଯାଇ ୩୦ରୁ ଅଧିକ ରାଷ୍ଟ୍ର ସହ ଭାରତର ସ୍ୱାର୍ଥରକ୍ଷା ପାଇଁ ବିଚାର ଆଲୋଚନା କରିଥିଲେ । ସେ ଗସ୍ତ କରିଥିବା ଦେଶଗୁଡ଼ିକ ଭିତରେ ଯୁକ୍ତରାଷ୍ଟ୍ର ଆମେରିକା ଠାରୁ ଆରମ୍ଭକରି ସୋଭିଏତ ୟୁନିଅନ, ଫିନଲାଣ୍ଡ ଠାରୁ ଫିଜି, ମେକ୍ସିକୋ ଠାରୁ ଗ୍ରୀସ୍ ଏବଂ ଅଷ୍ଟ୍ରେଲିଆ ଠାରୁ ଆରମ୍ଭକରି ସାଉଦି ଆରବ ଯାକେ ସବୁ କିସମର ଦେଶ ସାମିଲ ଥିଲେ । ଉଦାହରଣସ୍ୱରୂପ, ୱାଶିଂଟନ ଗସ୍ତ ସମୟରେ ଥରେ ସେ ଓ ରୋନାଲଡ଼ ରିଗାନ ଆମେରିକା ନିର୍ମିତ ତାରାପୁର ଆଣବିକ ଶକ୍ତି କେନ୍ଦ୍ରକୁ ପରମାଣୁ ଇନ୍ଧନ ଯୋଗାଣ ନିମିତ୍ତ ବୁଝାମଣା କରି ଏକ ପୁରୁଣା ବିବାଦର ସମାଧାନ କରିଥିଲେ । ଆଫଗାନିସ୍ତାନ ସମସ୍ୟାକୁ ନେଇ ଯଦିଓ ଆମେରିକା ଓ ଭାରତ ମଧ୍ୟରେ କୌଣସି ସହମତି ନଥିଲା, ତଥାପି ଭାରତ - ଆମେରିକା ସମ୍ପର୍କରେ ଉଲ୍ଲେଖନୀୟ

ଅଗ୍ରଗତି ଦେଖିବାକୁ ମିଳିଲା । ଧନୀ ଓ ଗରିବ ରାଷ୍ଟ୍ରଗୁଡ଼ିକ ମଧ୍ୟରେ କାନ୍‌କୁନଠାରେ ଆୟୋଜିତ ସମ୍ମିଳନୀରେ ରିଗାନଙ୍କର ଇନ୍ଦିରା ଗାନ୍ଧିଙ୍କ ସହିତ ସାକ୍ଷାତ ହୋଇଥିଲା । ରିଗାନ ତାଙ୍କ ଦ୍ୱାରା ବେଶ ପ୍ରଭାବିତ ହୋଇଥିଲେ ।

୧୯୮୦ ମସିହାରେ ଜୋସିପ ବ୍ରୋଜ ଟିଟୋଙ୍କର ଅନ୍ତେଷ୍ଟିକ୍ରିୟାରେ ଯୋଗଦେବା ସକାଶେ ବେଲଗ୍ରେଡ଼ ଗସ୍ତ କଲାବେଳେ ସେ ଚୀନ୍ କମ୍ୟୁନିଷ୍ଟ ପାର୍ଟିର ତଦାନିନ୍ତନ ଚେଆରମେନ ହୁଆ ଗୁଫେଙ୍ଗଙ୍କ ସହ ସାକ୍ଷାତ କଲେ ଏବଂ ଦୀର୍ଘ ଦୁଇ ଦଶନ୍ଧି ଧରି ସ୍ଥାଣୁ ହୋଇ ରହିଯାଇଥିବା ଭାରତ - ଚୀନ ସମ୍ବନ୍ଧକୁ ସୁଧାରିବା ନିମିତ୍ତ ପଦକ୍ଷେପ ନେବାକୁ ଅନୁରୋଧ କଲେ । ଏହାକୁ ସବୁ ମହଲରେ ସ୍ୱାଗତ କରାଗଲା । ଜୁନ ୧୯୮୧ ମସିହାରେ ଚୀନ୍ ବୈଦେଶିକ ମନ୍ତ୍ରୀ ହୁଆଂ ହୁଆଙ୍କ ଦିଲ୍ଲୀ ଗସ୍ତ ସହିତ ସମ୍ବନ୍ଧ ସୁଧୁରିବାର ପ୍ରକ୍ରିୟା ତ୍ୱରାନ୍ୱିତ ହେଲା ।

ଯୁକ୍ତରାଷ୍ଟ୍ର ଆମେରିକା ଠାରୁ ବିପୁଳ ସାମରିକ ସାହାଯ୍ୟ ପାଇବା ପରେ ପାକିସ୍ତାନ ହଠାତ ଗତ ତିରିଶ ବର୍ଷ ଧରି ପ୍ରତ୍ୟାଖ୍ୟାନ କରି ଆସିଥିବା ଭାରତ ସହ ଯୁଦ୍ଧ ବିରତି ନୀତିରେ ଯେତେବେଳେ ପରିବର୍ତ୍ତନ ଆଣିବାକୁ ଆଗ୍ରହ ପ୍ରକାଶ କଲା, ଇନ୍ଦିରାଙ୍କ ଅମଳରେ ଭାରତ ପ୍ରତିବଦଳରେ ଶାନ୍ତି, ମୈତ୍ରୀ ଓ ସହଯୋଗର ଅନ୍ୟ ଏକ ଚୁକ୍ତି ତା' ଆଗରେ ଉପସ୍ଥାପନ କରି ନିଜ ବିଚକ୍ଷଣତା ସିଦ୍ଧ କଲା ।

ଏସବୁକୁ ବାଦ ଦେଇ ଆହୁରି ଅନେକ ବିଚକ୍ଷଣ କାର୍ଯ୍ୟ ମଧ୍ୟ ତାଙ୍କ ସମୟରେ ସମାପନ ହେଲା । ପ୍ରତ୍ୟେକ ଅବସରରେ ତାଙ୍କ ମହତ୍ତ୍ୱପୂର୍ଣ୍ଣ ଭୂମିକାରୁ ସିଦ୍ଧ ହୁଏ ଯେ ସେ ଥିଲେ ଜଣେ ବିଶ୍ୱସ୍ତରର ମାନ୍ୟତାପ୍ରାପ୍ତ ଓ ସମ୍ମାନସ୍ପଦ ନେତ୍ରୀ । ନିର୍ବାଚିତ ରାଷ୍ଟ୍ରମୁଖ୍ୟ ଭାବରେ ସେ ସମସ୍ତଙ୍କଠାରୁ ଅଧିକ କାଳ କ୍ଷମତାସୀନ ହୋଇ ରହିଥିଲେ । ୧୯୮୩ ମାର୍ଚ୍ଚ ମାସରେ ସେ ଗୋଷ୍ଠୀ ନିରପେକ୍ଷ (ନାମ) ଶୀଖର ସମ୍ମିଳନୀରେ ପୌରହିତ୍ୟ କଲେ । ଶେଷ ମୁହୂର୍ତ୍ତରେ ଇରାକରେ ଆୟୋଜିତ ହେବାକୁ ଥିବା ଏହି ସମ୍ମିଳନୀକୁ ନୂଆଦିଲ୍ଲୀକୁ ସ୍ଥାନାନ୍ତରିତ କରାଯାଇଥିଲା, କାରଣ ଇରାକ ଦୀର୍ଘ ଆଠବର୍ଷ ଧରି ଇରାନ ସହ ଯୁଦ୍ଧରେ ବ୍ୟାପୃତ ରହିଥିଲା । ନାମ ଶୀଖର ସମ୍ମିଳନୀରେ ଉଭୟ ଇରାକ ଓ ଇରାନ ଉପସ୍ଥିତ ଥିଲେ । ଠିକ୍ ସେହିଭଳି କାମ୍ବୋଡ଼ିଆକୁ ନେଇ କଳହ କରୁଥିବା ଦକ୍ଷିଣ - ଏସିଆର ରାଷ୍ଟ୍ରମାନେ ମଧ୍ୟ ଉପସ୍ଥିତ ଥିଲେ । ନାମକୁ "ସର୍ବବୃହତ ଶାନ୍ତି ଆନ୍ଦୋଳନ" ବୋଲି କୁହାଗଲା । ସବୁପ୍ରକାର ବିବାଦୀୟ ପ୍ରସଙ୍ଗରେ ଏହା ଦକ୍ଷତାର ସହ ସହମତି ଆଣିବାରେ ସହାୟକ ହେଲା । ନଭେମ୍ବରରେ ଅନୁଷ୍ଠିତ କମନୱେଲ୍‌ଥ ଦେଶର ରାଷ୍ଟ୍ରମୁଖ୍ୟମାନଙ୍କ ବୈଠକରେ (ଚୋଗମ) ତାଙ୍କ ଅତିଥି ସତ୍କାରକୁ ମଧ୍ୟ ସମପରିମାଣରେ ପ୍ରଶଂସା କରାଗଲା । ମଦର ଟେରେସାଙ୍କୁ ରାଷ୍ଟ୍ରପତି ଭବନରେ ଏକ "ଇନଭେଷ୍ଟିଚ୍ୟୁର" ଉତ୍ସବରେ ରାଣୀ ଏଲିଜାବେଥଙ୍କ ହାତରେ "ଅର୍ଡ଼ର ଅଫ ମେରିଟ" ସମ୍ମାନ ଦିଆଯିବାର କାର୍ଯ୍ୟକ୍ରମ ରହିଥିଲା । ଅତି ଧୀରସ୍ଥିର ଭାବେ ଇନ୍ଦିରା ଏହି କାର୍ଯ୍ୟକ୍ରମରୁ ରାଣୀ ଏଲିଜାବେଥଙ୍କୁ ବାରଣ କରିନେଲେ ।

ମଝିରେ ଏସୀୟ କ୍ରୀଡ଼ା ଇନ୍ଦିରାଙ୍କର ପଞ୍ଚଷଠିତମ ଜନ୍ମ ଦିବସରେ ୧୯୮୨ ମସିହା ନଭେମ୍ବର ୧୯ ତାରିଖ ଦିନ ଆରମ୍ଭ ହେଲା । ଏହା ଡ଼ିସେମ୍ବର ମାସ ପର୍ଯ୍ୟନ୍ତ ଚାଲିଲା । ମାତ୍ର ସେ ଏକ ଭିନ୍ନ କାହାଣୀ, କାରଣ ଏସିଆଡ୍ ସହିତ ପଞ୍ଜାବର ସମସ୍ୟା ମଧ୍ୟ ସମ୍ପର୍କିତ ।

## ଦୁର୍ବିପାକ ପରେ ଦୁର୍ବିପାକ

ନାମ ଓ ଚୋଗମରେ ଚମକପ୍ରଦ ସଫଳତା ମିଳିଥିଲା ସତ, ମାତ୍ର ୧୯୮୩ ମସିହାର ବର୍ଷଟି ଏମିତିରେ ଇନ୍ଦିରାଙ୍କ ସକାଶେ ଭୀଷଣ ଦୁଃସମୟ ଆଣି ଆସିଥିଲା । ଆସାମ ଗଭୀର ବିପର୍ଯ୍ୟସ୍ତ ଅବସ୍ଥାରେ ; ମନେ ହେଉଥାଏ ପଞ୍ଜାବ ହାତଛଡ଼ା ହୋଇଯିବ । ବର୍ଷେ ପରେ ତାହା ହିଁ ହେଲା । ଜାନୁଆରୀ ୧୯୮୩ ମସିହାରେ ତଦ୍ଵାରା ଇନ୍ଦିରାଙ୍କ ଉପରେ ଯେଉଁ ବଜ୍ରପାତର ଆଘାତ ପଡ଼ିଲା, ତାହା ଅକଳନୀୟ । ରାଜ୍ୟ ବିଧାନସଭା ନିର୍ବାଚନ ଫଳାଫଳରୁ ସ୍ପଷ୍ଟ ହୋଇଥାଏ ଯେ ଆନ୍ଧ୍ର ଓ କର୍ଣ୍ଣାଟକ ପରି ଦକ୍ଷିଣର ଦୁଇଟି ଇନ୍ଦିରା ଅନୁଗତ ପ୍ରଦେଶ ତାଙ୍କ ହାତରୁ ଚାଲିଯାଇଛି । ସ୍ଵାଧୀନତା ପରଠାରୁ, ଏପରିକି ୧୯୬୯ ଓ ୧୯୭୮ ମସିହାର ଦଳ ବିଭାଜନ ପରେ ମଧ୍ୟ ଦୁଇଟିଯାକ ରାଜ୍ୟରେ ତାଙ୍କ ପ୍ରଭାବ କେବେ ଊଣା ପଡ଼ିନଥିଲା । ବିଳମ୍ବରେ ହେଉ ପଛକେ ଇନ୍ଦିରା ବୁଝିପାରିଲେ ଯେ ଦଳ ଘୋର ସଙ୍କଟାପନ୍ନ ସ୍ଥିତିରେ, ଅଥଚ ସ୍ଥିତିକୁ ସୁଧାରିବା ପାଇଁ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିପାରୁ ନାହାନ୍ତି । ବିକଳ୍ପ ପାଇଁ ତାଙ୍କ ହାତରେ କିଛି ଉପଶମ ମଧ୍ୟ ରହିଲା ନାହିଁ । ଏତେବେଳକୁ ଦଳ ଏକ "ଉଲ୍ଟୃତ ପିରାମିଡ଼" ତୁଲ୍ୟ ହୋଇ କେବଳ ପଡ଼ି ରହିଥିଲା । ଇନ୍ଦିରାଙ୍କର ବିଶାଳ ବ୍ୟକ୍ତିତ୍ୱରେ ଭରସା କରି ଜମାଟ ବାନ୍ଧିଥିବା ଏକ ବିଶୃଙ୍ଖଳ ଭିଡ଼ ଭଳି ଏହା ପ୍ରତୀୟମାନ ହେଉଥିଲା । କଂଗ୍ରେସ (ଆଇ) ଦଳର ସମସ୍ତ ସଭ୍ୟ "ଇନ୍ଦିରାଜୀ ଏବଂ ତାଙ୍କ ପରିବାର" ପ୍ରତି ଆମରଣ ଆନୁଗତ୍ୟର ଶପଥ ନେଇସାରି ବ୍ୟକ୍ତିଗତ ସ୍ୱାର୍ଥ ସିଦ୍ଧି ପାଇଁ ସର୍ବଦା ପ୍ରମତ୍ତ ରହୁଥିଲେ ।

ଦକ୍ଷିଣର ଦୁଇଟିଯାକ ଦୁର୍ଗର ପରାଜୟ ମଧ୍ୟରେ, ଆନ୍ଧ୍ରର ପରାଜୟ ଥିଲା ଅଧିକ ବିଷାଦଦାୟୀ । କାରଣ, ଏହା କଂଗ୍ରେସର ଦୟନୀୟ ସ୍ଥିତିକୁ ପର୍ଦ୍ଦାଫାଶ କଲା । ସାଙ୍ଗରେ ଏକଥା ମଧ୍ୟ ସ୍ପଷ୍ଟ ହେଲା ଯେ ତାର ଦୁଷ୍ପରିଣାମ ସୁଦୂର ପ୍ରସାରୀ । ବିଗତ ତିନିବର୍ଷ ଧରି ଚେନ୍ନା ରେଡ୍ଡି ଆନ୍ଧ୍ରପ୍ରଦେଶର ମୁଖ୍ୟମନ୍ତ୍ରୀ ଭାବେ ରହିଥିଲେ । ଯେତେବେଳେ ଇନ୍ଦିରା ନିଜେ ରାଜନୀତିରେ ଅପଦସ୍ଥାସ୍ଥିତିରେ, ସେହି ସମୟରେ ରେଡ୍ଡିଙ୍କର ଉତ୍‌ଥାନ । ଫଳରେ ତାଙ୍କ ଆତ୍ମଗର୍ବ ଅସମ୍ଭାଳ ହୋଇପଡ଼ିଲା । ୧୯୮୨ ମସିହାରେ ଇନ୍ଦିରା ସ୍ଥିର କଲେ, ରେଡ୍ଡିଙ୍କଠାରୁ ତ୍ରାହି ପାଇବାକୁ ହେବ । ରେଡ୍ଡିଙ୍କ ସ୍ଥାନରେ ସେ ଟି. ଆଞ୍ଜୟାଙ୍କୁ ମୁଖ୍ୟମନ୍ତ୍ରୀ ପଦରେ ଅଭିଷିକ୍ତ କଲେ । ଅବଶ୍ୟ ଆଞ୍ଜୟା ଜଣେ ଭଲ ମଣିଷ, କିନ୍ତୁ ତାଙ୍କର ଆଦୌ ଅଭିଜ୍ଞତା ନଥିଲା, ପ୍ରଭାବଶାଳୀ ମଧ୍ୟ ନୁହନ୍ତି । ବିଚରାଙ୍କୁ ଜଣା ନଥିଲା ଯେ "ଯୁବରାଜ" ରାଜୀବ ନିଜ ସାନଭାଇ ପରି, ଖୋସାମଦ - ପସନ୍ଦ ବ୍ୟକ୍ତି ନୁହନ୍ତି । ନୂଆ ଯୁବରାଜଙ୍କ ସମ୍ମାନାର୍ଥେ ତାଙ୍କ ଆଗମନ ଉପଲକ୍ଷେ ରାଜଧାନୀ

ହାଇଦ୍ରାବାଦରେ ସେ ଏକ ଦାସୋଚିତ ସମ୍ବର୍ଦ୍ଧନାର ଆୟୋଜନ କଲେ । ରାଜୀବ ଏଥିରେ ଭୀଷଣ କ୍ରୋଧ ପ୍ରକାଶ କଲେ ଏବଂ ସମ୍ବର୍ଦ୍ଧନା ପାଇଁ ଏକତ୍ରିତ ହୋଇଥିବା ଜନସମୂହ ଆଗରେ ଆଞ୍ଜୋୟା ପ୍ରତି ତୀବ୍ର କଟୂମନ୍ତବ୍ୟ ଦେଲେ ।

ସାରା ଦେଶରେ ଏହି "ଅପମାନ" ବିରୁଦ୍ଧରେ ଗଭୀର ପ୍ରତିକ୍ରିୟା ପ୍ରକାଶ ପାଇଲା । କେବଳ ମୁଖ୍ୟମନ୍ତ୍ରୀ ନୁହଁନ୍ତି, "ସମଗ୍ର ଆନ୍ଧ୍ର"ର ଅପମାନ କରାଯାଇଛି !

ଏହାର ସୁଯୋଗ ନେଇ ଜଣେ ଅତ୍ୟନ୍ତ ଲୋକପ୍ରିୟ ତଥା ବିଶିଷ୍ଟ ଚଳଚ୍ଚିତ୍ର ଅଭିନେତା ଏନ.ଟି. ରାମାରାଓ ତତକ୍ଷଣାତ ତେଲଗୁ ଦେଶମ ପାର୍ଟି (ଟିଡ଼ିପି) ନାମରେ ଏକ ରାଜନୈତିକ ଦଳ ଗଠନ କଲେ । ତାଙ୍କର ଏକମାତ୍ର ଉଦ୍ଦେଶ୍ୟ ଥିଲା, "ଆନ୍ଧ୍ରର ପୂର୍ବ ଗୌରବ ଓ ହୃତ ଆତ୍ମ - ସମ୍ମାନକୁ ଫେରାଇ ଆଣିବା ।" ଏନ.ଟି. ରାମାରାଓ ବେଶି ପରିଚିତ ଥିଲେ "ଏନଟିଆର୍" ନାମରେ । ଚଳଚ୍ଚିତ୍ର ତାରକାଙ୍କର ରାଜନୈତିକ କ୍ଷମତାକୁ ନେଇ ଇନ୍ଦିରା ଖୁବ ସଚେତନ ଥିଲେ । ଜଣେ ସିନେ ତାରକା ଏମ.ଜି. ରାମଚନ୍ଦ୍ରନ, ଶ୍ରଦ୍ଧାରେ ଯାହାଙ୍କୁ ଲୋକେ "ଏମଜିଆର" ବୋଲି ଡ଼ାକୁଥିଲେ, ଅନେକ ବର୍ଷ ଧରି ତାମିଲନାଡୁରେ ଶାସନ କରୁଥିଲେ । ଇନ୍ଦିରାଙ୍କ ଭାଷାରେ, ଯୁକ୍ତରାଷ୍ଟ୍ର ଆମେରିକା ରୋନାଲଡ଼ ରିଗାନଙ୍କୁ ରାଷ୍ଟ୍ରପତି ପଦରେ ନିର୍ବାଚିତ କରିବାର ବହୁ ବର୍ଷ ପୂର୍ବରୁ ଭାରତୀୟ ସିନେ ଅଭିନେତାମାନେ ରାଜନୀତିରେ ନିଜର ବୈଶିଷ୍ଟ୍ୟ ସ୍ଥାପନ କରିବାରେ ସଫଳକାମ ହୋଇଛନ୍ତି । ତା' ସତ୍ତ୍ୱେ, ତାଙ୍କର ପନ୍ଥୁଆଳମାନଙ୍କ କଥାରେ ପଡ଼ି ସେ ଧରିନେଲେ ଯେ "ଏନଟିଆର କଦାପି ଏମଜିଆର ହୋଇପାରିବେ ନାହିଁ ।" ଇନ୍ଦିରାଙ୍କର ଏହି ଆତ୍ମତୁଷ୍ଟୀଭାବ "ମେଟିନି ଆଇଡ଼ଲ"ଙ୍କୁ ନିର୍ବାଚନରେ ବିପୁଳ ବିଜୟ ଲାଭ କରିବାକୁ ଅବସର ଦେଲା । ତା' ସାଙ୍ଗକୁ ରାତାରାତି ସେ ଏକ ପବିତ୍ର ବିଗ୍ରହରେ ପରିଣତ ମଧ୍ୟ ହେଲେ । ଅବଶ୍ୟ ନିର୍ବାଚନ ଫଳାଫଳ ପ୍ରକାଶ ପାଇବାର ବହୁ ପୂର୍ବରୁ ଆଞ୍ଜୋୟା ବିଦା ହେଲେ । ସେତେବେଳେ ତାଙ୍କର କ୍ଲାସିକ ମନ୍ତବ୍ୟ ଥିଲା, "ମାଡ଼ାମଙ୍କ ଯୋଗୁଁ ମୁଁ ଆସିଥିଲି, ପୁଣି ମାଡ଼ାମଙ୍କ ଯୋଗୁଁ ବିଦା ହେଲି ; ମତେ ଆଦୌ ଜଣାନାହିଁ, କାହିଁକି ମୁଁ ଆସିଥିଲି, ଅଥବା କାହିଁକି ବା ବିଦା ହେଲି ।"

ପ୍ରାୟ ଆରମ୍ଭରୁ ଏନଟିଆର ଏକ ବ୍ୟାପକ ରାଷ୍ଟ୍ରୀୟ ଭୂମିକା ପାଇଁ ନିଜକୁ ପ୍ରସ୍ତୁତ କରୁଥିଲେ । ଏଥିପାଇଁ ସମସ୍ତ ଅଣ - କଂଗ୍ରେସ ମୁଖ୍ୟମନ୍ତ୍ରୀଙ୍କ ସମେତ ମୋଟ ଚଉଦଟି ବିରୋଧୀ ଦଳ ନେତାଙ୍କର ସେ ବାରମ୍ବାର "ସମ୍ମିଳନୀମାନ" ଆୟୋଜନ କରିବାକୁ ଲାଗିଲେ । ଏହି ସମ୍ମିଳନୀମାନଙ୍କରେ ରାଷ୍ଟ୍ରସଂଘୀୟ ବ୍ୟବସ୍ଥାରେ ସମତାକ ରକ୍ଷା କରିବାପାଇଁ ଦାବି କରାଗଲା । ଅର୍ଥାତ୍ ଇନ୍ଦିରା ଗାନ୍ଧିଙ୍କ ହାତରେ "ପୁଂଜିଭୂତ" କ୍ଷମତାର ବିକେନ୍ଦ୍ରୀକରଣ ସକାଶେ ସ୍ୱର ଉଠିଲା । ଏଥିରେ ଇନ୍ଦିରା ଭୀଷଣ କ୍ରୋଧାନ୍ୱିତ ହେଲେ । ପ୍ରାୟ ଦୁଇବର୍ଷ ଭିତରେ ଏନଟିଆରଙ୍କ କ୍ରମବର୍ଦ୍ଧିଷ୍ଣୁ ଲୋକପ୍ରିୟତା ହ୍ରାସ ପାଇବାକୁ ଆରମ୍ଭ କଲା । ମାତ୍ର ଇନ୍ଦିରାଙ୍କର କେତେ ଜଣ ଅତି - ଅନୁଗତ ତାଙ୍କ (ଇନ୍ଦିରାଙ୍କ) ବିନା ଅନୁମତି ତଥା ସମ୍ପୂର୍ଣ୍ଣ ଅଜାଣତରେ ରାଜ୍ୟର ରାଜ୍ୟପାଳଙ୍କ ସାହାଯ୍ୟ ନେଇ ଏନଟିଆରଙ୍କୁ ସରକାରରୁ ବରଖାସ୍ତ କରେଇ ଦେଲେ । ଏହା ଏତେବଡ଼ ଏକ ଭୁଲ

ପ୍ରମାଣିତ ହେଲା ଯେ ତାର ଦୁଷ୍ପରିଣାମର ପରିମାଣ ଅକଳନୀୟ । ଅବଶ୍ୟ ଆନ୍ଧ୍ର ଘଟଣା ପୂର୍ବରୁ ଆସାମ, ପଞ୍ଜାବ ଏବଂ କାଶ୍ମୀରରେ ଘଟିଥିବା ବିପର୍ଯ୍ୟୟ ଥିଲା ଆହୁରି ଭୟାବହ । ତେଣୁ, ସବୁ ସମସ୍ୟାଗୁଡ଼ିକୁ ସମାନ ପରିପ୍ରେକ୍ଷୀରେ ଦେଖାଯାଇପାରେ ।

## ଆସାମ ନରସଂହାର

ଆନ୍ଧ୍ର ଓ କର୍ଣ୍ଣାଟକରେ ଇନ୍ଦିରାଙ୍କ ପରାଜୟର ଏକ ମାସ ଉତ୍ତାରୁ ସ୍ୱର୍ଣକାତର ଏବଂ ବିଦ୍ରୋହଗ୍ରସ୍ତ ଉତ୍ତର - ପୂର୍ବାଞ୍ଚଳର ସର୍ବବୃହତ ରାଜ୍ୟ ଆସାମରେ ନିର୍ବାଚନ ଅନୁଷ୍ଠିତ ହେବାର ଥିଲା । ସ୍ୱାଭାବିକ ସମୟ ହୋଇଥିଲେ ଇନ୍ଦିରା ତାଙ୍କର ଅଭିଜ୍ଞ ପରାମର୍ଶଦାତା ଏବଂ ଗୁପ୍ତଚର ସଂସ୍ଥାଗୁଡ଼ିକର ପରାମର୍ଶ ମାନି ଆସାମ ନିର୍ବାଚନକୁ ଘୁଞ୍ଚେଇ ଦେଇଥାନ୍ତେ, କାରଣ ନିର୍ବାଚନ ଦ୍ୱାରା ସେଠି "ବ୍ୟାପକ ହିଂସା" ସୃଷ୍ଟି ହେବାର ଆଶଙ୍କା ରହିଥିଲା । ମାତ୍ର ସମୟ ଥିଲା ଅସାମାନ୍ୟ । ଦକ୍ଷିଣରେ ଦାରୁଣ ବିପର୍ଯ୍ୟସ୍ତ ହେବା ଉତ୍ତାରୁ ତାଙ୍କର ଅଭିଳାଷ ଥିଲା ଅନ୍ତତଃ ଗୋଟାଏ ରାଜ୍ୟର ନିର୍ବାଚନରେ ଦଳ ଜୟଲାଭ କରୁ । ଏହା ଅବଶ୍ୟ ସମ୍ଭବପର ହେଲା । ମାତ୍ର, ତା' ପଛରେ କାରଣ ହେଲା ସମସ୍ତ ବିରୋଧୀ ଦଳର ନିର୍ବାଚନ ବର୍ଜନ ଏବଂ କେବଳ ଦଶ ପ୍ରତିଶତ ଭୋଟଦାତାଙ୍କର ମତଦାନ । ତା'ଛଡ଼ା ନିର୍ବାଚନ ସମୟରେ ଅତି ଜଘନ୍ୟ ହିଂସାକାଣ୍ଡମାନ ସଂଘଟିତ ହେଲା । ଏଥିରେ ହଜାର ହଜାର ଲୋକଙ୍କର ପ୍ରାଣହାନି ହେଲା ଏବଂ ଲକ୍ଷ ଲକ୍ଷ ଲୋକଙ୍କୁ ବାସଚ୍ୟୁତ ହେବାକୁ ପଡ଼ିଲା ।

ଅଧିକାଂଶ ହତ୍ୟାକାଣ୍ଡ ଅତି ଦୂରଦୂରାନ୍ତର ଉପାନ୍ତ ଅଞ୍ଚଳରେ ସଂଘଟିତ ହୋଇଥିଲା । ସେ ନେଇ ସୂଚନା ପହଞ୍ଚିବାକୁ ଦଶ ବାର ଦିନ ସମୟ ଲାଗିଯାଉଥାଏ । ସେଥିପାଇଁ ସବୁଠାରୁ ବଡ଼ ହତ୍ୟାକାଣ୍ଡ ସମ୍ବନ୍ଧରେ ସୂଚନା ଯେତେବେଳେ ପହଞ୍ଚିଲା, ଭାରି ଅଡୁଆ ସ୍ଥିତି ସୃଷ୍ଟି ହେଲା । ଗୋଷ୍ଠୀ ନିରପେକ୍ଷ ଶୀର୍ଷର ସମ୍ମିଳନୀ ଠିକ୍ ସେତେବେଳେ ଦିଲ୍ଲୀରେ ଆରମ୍ଭ ହୋଇଥାଏ । ସଦ୍ୟତମ ଇଣ୍ଡିଆ ଟୁଡ଼େ ପତ୍ରିକାର ମଲାଟରେ ରହିଥାଏ ନେଲି ନାମକ ଗ୍ରାମରେ ହତ୍ୟାକାଣ୍ଡର ଶିକାର ହୋଇଥିବା ଶିଶୁମାନଙ୍କର ରକ୍ତାକ୍ତ ଶରୀରର ଚିତ୍ରିତ ଦୃଶ୍ୟ । ହତ୍ୟା କଲା ପରେ ସେମାନଙ୍କୁ ଧାଡ଼ି ଧାଡ଼ି କରି ତଳେ ଶୁଆଇ ଦିଆଯାଇଥାଏ । ଆଶ୍ଚର୍ଯ୍ୟର କଥା ଯେ ନେଇଲିରେ ଜଣେ ବି ପ୍ରାପ୍ତ ବୟସ୍କ ପୁରୁଷ ଲୋକଙ୍କୁ ହତ୍ୟା କରାଯାଇ ନଥିଲା । କେବଳ ମହିଳା ଓ ଶିଶୁ । ପରେ ଜଣାପଡ଼ିଲା ଯେ, ସେତେବେଳେ ପୁରୁଷ ଲୋକମାନେ ନଦୀ ଆରପାରିକୁ ଯାଇଥିଲେ ଶତ୍ରୁତା ଆଚରିଥିବା ସମ୍ପ୍ରଦାୟର ଲୋକଙ୍କୁ ହତ୍ୟା କରିବାକୁ ।

ଏଥିରୁ ଗୋଟାଏ କଥା ସ୍ପଷ୍ଟ ଜଣାପଡ଼େ ଯେ ଜଟିଳ ଆସାମ ସମସ୍ୟା ଇନ୍ଦିରା କ୍ଷମତାକୁ ପ୍ରତ୍ୟାବର୍ତ୍ତନ କରିବା ପୂର୍ବରୁ ଆରମ୍ଭ ହୋଇସାରିଥିଲା । ତାଙ୍କୁ କେବଳ ସମସ୍ୟାଟିକୁ ପିଠିରେ ବୋହି ବାଟ ଚାଲିବାକୁ ପଡ଼ିଲା । ୧୯୭୮ ମସିହା ପୂର୍ବରୁ ପୂର୍ବ - ପାକିସ୍ତାନ ନାମରେ ପରିଚିତ ବାଂଲାଦେଶୀ ଅନୁପ୍ରବେଶକାରୀମାନେ ସମଗ୍ର ଆସାମକୁ ମାଡ଼ି ଯାଇଥିଲେ ।

"ବିଦେଶୀ"ମାନଙ୍କର ଏହି "ଅପରିସୀମ" ଅନୁପ୍ରବେଶ ବିରୁଦ୍ଧରେ ଏକ ଛାତ୍ର ଆନ୍ଦୋଳନ ଆସାମରେ ଆରମ୍ଭ ହେଲା । ଛାତ୍ର ନେତାମାନେ ସେମାନଙ୍କ ଦାବିକୁ ରୋମାନ ବର୍ଣ୍ଣମାଳାର ଚାରୋଟି "ଡ଼ି"ରେ ଗୁନ୍ଥିବାକୁ ଚେଷ୍ଟା କରିଥିଲେ । ବିଦେଶୀମାନଙ୍କୁ ଚିହ୍ନିତ କରାଯାଉ ; ସେମାନଙ୍କର ମତଦାନ ଅଧିକାର ପ୍ରତ୍ୟାହାର କରାଯାଉ ; ସେମାନଙ୍କର ନାମ ନିର୍ବାଚନ ସୂଚୀରୁ ଅଲଗା କରାଯାଉ ; ଏବଂ ସେମାନଙ୍କୁ ବାଲାଂଦେଶକୁ ପ୍ରତ୍ୟାନ୍ତର କରିଦିଆଯାଉ । ଦେଖିବାକୁ ଗଲେ ଦାବିରେ ଅଯଥାର୍ଥତା କିଛି ନଥିଲା । ନିଜ ଜାଗାରେ ଆସାମିଆମାନେ ବହିରାଗତଙ୍କ ଦ୍ୱାରା "ମାଡ଼ି" ହୋଇଯିବାକୁ ଚାହୁଁ ନଥିଲେ । ମାତ୍ର ବାସ୍ତବତା ଥିଲା ଭୀଷଣ ମାତ୍ରାରେ ଜଟିଳ । ଲୋକ ଆସିଥିଲେ ବହୁ ଲୋକ ସଂଖ୍ୟା ବିଶିଷ୍ଟ ପୂର୍ବବଙ୍ଗ ଅଞ୍ଚଳରୁ ଏବଂ ରହିଥିଲେ ଆସାମର ଜନସଂଖ୍ୟା ବିରଳ ଉର୍ବର ସମତଳ ଅଞ୍ଚଳରେ । ଏହି ପ୍ରକ୍ରିୟା ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଆରମ୍ଭ ହୋଇଥିଲା, ଯେତେବେଳେ ସମଗ୍ର ଭାରତୀୟ ଉପମହାଦେଶ ଗୋଟାଏ ରାଷ୍ଟ୍ର ହୋଇ ରହିଥିଲା । ସ୍ୱାଧୀନତା ପରେ ମାଲିକମାନେ ଶସ୍ତାରେ ମଜୁରିଆ ପାଇବା ସକାଶେ ଏବଂ ରାଜନୈତିକ ଦଳମାନେ, ଖାସକରି ଅବିଭକ୍ତ କଂଗ୍ରେସ ଦଳ, "ଭୋଟ ବ୍ୟାଙ୍କ"କୁ ସୁରକ୍ଷିତ କରିବା ସକାଶେ ବିଦେଶୀ ଅନୁପ୍ରବେଶକୁ ପ୍ରୋତ୍ସାହିତ କଲେ । ଫଳରେ ସମସ୍ୟା ଅସମ୍ଭାଳ ହେଲା ।

ତା'ଛଡ଼ା, ଉପର ଠାଉରିଆ ଭାବେ ବାଲାଂଦେଶୀମାନଙ୍କ ବିରୁଦ୍ଧରେ ଆନ୍ଦୋଳନ ସଂଗଠିତ ହୋଇଥିଲା ସତ । ମାତ୍ର ପ୍ରକୃତରେ ତାର ଲକ୍ଷ୍ୟ ରହିଲା ସମସ୍ତ ଭାରତୀୟ ବଙ୍ଗାଳିମାନଙ୍କ ବିରୁଦ୍ଧରେ । କେବଳ ବଙ୍ଗାଳି କାହିଁକି ଆସାମରେ ବସବାସ କରୁଥିବା କିମ୍ବା ଆସାମ ପରିଦର୍ଶନରେ ଆସିଥିବା ସମସ୍ତ ଅଣ - ଆସାମିଆମାନେ ମଧ୍ୟ ଆନ୍ଦୋଳନର ଶତ୍ରୁ ରୂପେ ପରିଗଣିତ ହେବାକୁ ଲାଗିଲେ । ପରିଣାମସ୍ୱରୂପ, ପଶ୍ଚିମବଙ୍ଗରେ ଏହାର ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଲା । ଆସାମ ଭିତରେ ଏହା ଆଦିବାସୀ ଓ ଅଣ - ଆଦିବାସୀଙ୍କ ମଧ୍ୟରେ ଗଭୀର ବିଭେଦ ସୃଷ୍ଟିକଲା, ତା'ସାଙ୍ଗରେ ପାର୍ବତ୍ୟାଞ୍ଚଳ ଆଦିବାସୀମାନେ, ବିଶେଷକରି ବୋଡ଼ୋମାନେ ଦାବିକଲେ ଯେ ସେମାନେ ହିଁ ଆସାମର ଆଦ୍ୟ ଅଧିବାସୀ ; ଆସାମିଆ ହିନ୍ଦୁମାନେ ନୁହନ୍ତି । ଆସାମରେ ଥିବା ଅଧିକାଂଶ ବାଲାଂଦେଶୀ ଯେହେତୁ ମୁସଲମାନ, ବିଭାଜନ ପୁଣି ଧର୍ମ ଆଧାରିତ ହେଲା ଏବଂ ଅଧିକ ନୃଶଂସ ଆକାର ଧାରଣ କଲା । ଅନ୍ୟପକ୍ଷରେ ବାଲାଂଦେଶ ୧୯୭୧ ମାର୍ଚ୍ଚ ୨୫ ତାରିଖ ଅର୍ଥାତ୍ ତାର ସ୍ୱାଧୀନତା ଦିବସ ପରଦିନଠାରୁ ଯେଉଁ ନାଗରିକମାନେ ସୀମା ପାର ହୋଇ ଆସାମ ଯାଇଥିବେ, ସେମାନଙ୍କୁ କେବଳ ସ୍ୱଦେଶକୁ ଫେରାଇ ନେବାକୁ ସମ୍ମତି ଜଣାଇଲା । ତା' ପୂର୍ବରୁ ଯାଇଥିବା ଲୋକଙ୍କର ଦାୟିତ୍ୱ ନେବାପାଇଁ ଦେଶ ମନାକଲା । ଇନ୍ଦିରା ଏହି ତାରିଖକୁ "କଟଅଫ" ତାରିଖ ଭାବରେ ଗ୍ରହଣ କରିନେବାକୁ ବହୁତ ପ୍ରବର୍ତ୍ତାଇଲେ । ମାତ୍ର ଛାତ୍ରମାନେ ତାଙ୍କର କଥାକୁ ଆଦୌ ମାନିଲେ ନାହିଁ । ଏଭଳି ଏକ ବିସ୍ଫୋରକ ତଥା ଅନିଶ୍ଚିତ ପରିସ୍ଥିତି ମଧ୍ୟରେ ଆସାମରେ ନିର୍ବାଚନ ଅନୁଷ୍ଠିତ ହେଲା ।

## କାଶ୍ମୀରରେ ବିବାଦ

ଆସାମର ମରଣାନ୍ତକ ନିର୍ବାଚନ ଶେଷ ହେବାର କିଛି ଦିନ ଉତ୍ତାରୁ ଜାମ୍ମୁ ଓ କାଶ୍ମୀରରେ ନିର୍ବାଚନ ସଂଘଟିତ ହେଲା, ଯଦିଓ ସେଠି ବିଧାନସଭା କାର୍ଯ୍ୟକାଳ ପୂରିବାକୁ ଆହୁରି ବର୍ଷେ ବାକି ରହିଥିଲା । ଇନ୍ଦିରା ସେଠାରେ ଆଦୌ କୌଣସି ବିଳମ୍ବ ଅବଲମ୍ବନ କଲେନାହିଁ । ସର୍ବୋଚ୍ଚ କାଶ୍ମୀର ନେତା ଶେଖ ମହମ୍ମଦ ଅବଦୁଲ୍ଲାଙ୍କ ଉତ୍ତରାଧିକାରୀ ଭାବେ ନୂଆକରି ମୁଖ୍ୟମନ୍ତ୍ରୀ ପଦ ସମ୍ଭାଳିଥିବା ଫାରୁଖ ଅବଦୁଲ୍ଲା ଚାହୁଁଥିଲେ ନିର୍ବାଚନ ଆଗତୁରା ଅନୁଷ୍ଠିତ ହେଉ । ତା' ପଛରେ ତାଙ୍କର ଯଥେଷ୍ଟ କାରଣ ବି ରହିଥିଲା ।

ଅବଦୁଲ୍ଲା ପରିବାର ଓ ନେହେରୁ ପରିବାର ମଧ୍ୟରେ ସର୍ବଦା ଅତି ଘନିଷ୍ଠ ସମ୍ପର୍କ ଅତୁଟ ରହିଥିଲା । ମଝିରେ ଯେତେବେଳେ ଶେଖ ଅବଦୁଲ୍ଲାଙ୍କୁ ଲମ୍ବା ଅବଧି ପାଇଁ ବନ୍ଦୀ ଭାବରେ ରଖାଗଲା, ସେତେବେଳେ ମଧ୍ୟ ସମ୍ପର୍କ ଅତୁଟ ରହିଥିଲା । ନେହେରୁ ହିଁ ସେ ସମୟରେ ଅବଦୁଲ୍ଲା ପରିବାରର ହାନିଲାଭ ବୁଝୁଥିଲେ । ଫାରୁଖଙ୍କର ଭାରତ ତଥା ବିଦେଶରେ ପାଠପଢ଼ା ଦାୟିତ୍ୱ ମଧ୍ୟ ସେ ନେଇଥିଲେ । ଫାରୁଖ ଭାରତ ଫେରି ଯେତେବେଳେ ରାଜନୀତିରେ ପାଦ ଦେଲେ, ଇନ୍ଦିରାଙ୍କୁ "ମମ୍ମି" ବୋଲି ସମ୍ବୋଧନ କରୁଥିଲେ । ୧୯୮୨ ସେପ୍‌ଟେମ୍ବର ମାସରେ ଶେଖ ଅବଦୁଲ୍ଲାଙ୍କ ମୃତ୍ୟୁ ପରେ ତାଙ୍କ ଜ୍ୱାଇଁ, ଉଗ୍ର ଓ କୁଟିଳ ସ୍ୱଭାବର ଜି.ଏମ. ଶାହଙ୍କ ବିରୋଧ ସତ୍ତ୍ୱେ ପୁତ୍ର ଫାରୁଖଙ୍କୁ ବାପାଙ୍କର ଉତ୍ତରାଧିକାରୀତ୍ୱ ପ୍ରଦାନ କରିବା ନିମନ୍ତେ ଇନ୍ଦିରା ଆବଶ୍ୟକତାଠାରୁ ଅଧିକ ଆଗକୁ ଯାଇ ସାହାଯ୍ୟ ପ୍ରଦାନ ମଧ୍ୟ କରିଥିଲେ । ମାତ୍ର, ତା'ପରେ ଦ୍ରୁତ ଗତିରେ ସମ୍ପର୍କରେ ପରିବର୍ତ୍ତନ ହେବାକୁ ଲାଗିଲା ।

ବୋଧହୁଏ ଇନ୍ଦିରାଙ୍କ ପ୍ରତି କ୍ରମବର୍ଦ୍ଧିଷ୍ଣୁ ବିରୋଧରେ ପ୍ରଭାବିତ ହୋଇ ତଥା କାଶ୍ମୀର ଆତ୍ମସତ୍ତାର ସଂରକ୍ଷକ ଭାବରେ ନିଜର ଭାବମୂର୍ତ୍ତି ଗଠନ କରିବା ଉଦ୍ଦେଶ୍ୟରେ ଫାରୁଖ ଆନ୍ଧ୍ରପ୍ରଦେଶର ମୁଖ୍ୟମନ୍ତ୍ରୀ ଏନଟିଆରଙ୍କ ଦ୍ୱାରା ଘନ ଘନ ଆୟୋଜିତ ହେଉଥିବା ଅଣକଂଗ୍ରେସ ସମ୍ମିଳନୀମାନଙ୍କରେ ଆଗ୍ରହରେ ଯୋଗଦେବା ଆରମ୍ଭ କଲେ । ଏହା ଦେଖି ଇନ୍ଦିରା ରାଗରେ ନିଆଁବାଣ । ଫାରୁଖଙ୍କର ମନରେ ଆଶଙ୍କା ହେଲା, କାଳେ ଇନ୍ଦିରା ତାଙ୍କ ସରକାରକୁ ବରଖାସ୍ତ କରିଦେବେ ! ଆଗତୁରା ନିର୍ବାଚନକୁ ୧୯୮୩ ଗ୍ରୀଷ୍ମ ଋତୁକୁ ଘୁଞ୍ଚାଇ ଆଣିବାକୁ ପ୍ରସ୍ତାବ ଦେଲେ । ଏହାଦ୍ୱାରା ସେ ନିଜ ସ୍ଥାନ ସୁରକ୍ଷିତ ରଖିବା ସକାଶେ କୌଶଳ ପାଞ୍ଚୁଥିଲେ । ନିର୍ବାଚନ ପ୍ରଚାର ସମୟରେ ଏମିତି ହୀନଚକ୍ରାନ୍ତମାନ କରାଗଲା ଯେ, ତା' ପାଇଁ ନୂଆ ରେକର୍ଡ଼ ସୃଷ୍ଟି ହେଲା । ଇନ୍ଦିରା ସମ୍ବୋଧନ କରୁଥିବା ଏକ ନିର୍ବାଚନ ସଭାରେ ଫାରୁଖଙ୍କର କେତେକ ସମର୍ଥକ ଅଶ୍ଳୀଳତା ପ୍ରଦର୍ଶନ କଲେ । କାଶ୍ମୀର ଉପତ୍ୟକାର ବହୁ ସଂଖ୍ୟାରେ ଆସନ ଲାଭ କରି ଫାରୁଖ ରାଜ୍ୟର ନିର୍ବାଚନ ଜିଣିଲେ । ଅନ୍ୟପକ୍ଷରେ ହିନ୍ଦୁ ବହୁଳ ଜାମ୍ମୁ ଅଞ୍ଚଳରେ ଇନ୍ଦିରା କଂଗ୍ରେସକୁ ଅଧିକାଂଶ ଆସନ ଲାଭହେଲା । ଇନ୍ଦିରାଙ୍କର ବିରୋଧୀମାନେ ଏବେ ଅଭିଯୋଗ କଲେ, ସେ ହିନ୍ଦୁ ଭୋଟକୁ ସଂଖୋଳିବାକୁ ପ୍ରୟାସ କରୁଛନ୍ତି । ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସାଧାରଣ ସମ୍ପାଦକ

ସି. ରାଜେଶ୍ୱର ରାଓ ଅଭିଯୋଗଟିକୁ ଏତେ ମାତ୍ରାରେ ବାରମ୍ବାର ଆଣିଲେ ଯେ ଇନ୍ଦିରା କ୍ଷୁବ୍ଧ ହୋଇ ଅଖିଳ ଭାରତୀୟ କଂଗ୍ରେସ କମିଟି ବୈଠକରେ ସୋଭିଏତ ନେତା ୟୁରି ଆନ୍ଦ୍ରୋପୋଭଙ୍କୁ "ପ୍ରିୟ ସାଧାରଣ ସମ୍ପାଦକ" ସମ୍ବୋଧନ କରି ଏକ ପତ୍ର ଲେଖିଲେ ଏବଂ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର "ଅହେତୁକ କୁଘାଟଣା" ପ୍ରତି ଦୃଷ୍ଟି ଦେବାକୁ ଅନୁରୋଧ କଲେ ।

## ପଞ୍ଜାବରେ ମହାବାତ୍ୟା

ଏହା ନିହାତି ବିସ୍ମୟକର ଯେ ଯେତେବେଳେ ପଞ୍ଜାବରେ ରାଜନୈତିକ ସ୍ଥିତି ଏକ ମହାବାତ୍ୟାର ରୂପ ଧାରଣ କରୁଥାଏ ଏବଂ ତାହା ଚରମ ସୀମା ଆଡ଼କୁ ଅଗ୍ରଗତି କରୁଥାଏ, ସେଠାରେ ପୂରା ଧ୍ୟାନ ଦେବାର ଆବଶ୍ୟକତା ରହିଥାଏ, ଇନ୍ଦିରା ଗାନ୍ଧି ସରକାର ସେତେବେଳେ କାଶ୍ମୀରଠୁ ଆନ୍ଧ୍ର ଯାଏଁ ସବୁଠାରେ ହୀନ ରାଜନୀତିକ ଖେଳ ଖେଳୁଥାନ୍ତି । ସର୍ବଦା ଦେଶର ଭାତହାଣ୍ଡି ଏବଂ ପାଇକ ଆଖଡ଼ା ହୋଇ ରହି ଆସିଥିବା ପଞ୍ଜାବରେ ମୃତ୍ୟୁର ତାଣ୍ଡବଲୀଳା ଦିନକୁ ଦିନ ବିକଟାଳ ରୂପ ଧାରଣ କରି ରାଜ୍ୟକୁ ଧ୍ୱଂସ ଆଡ଼କୁ ଟାଣି ନେଉଥାଏ । ସାଙ୍ଗରେ ଏକଥା ମଧ୍ୟ ସତ ଯେ ଇନ୍ଦିରାଙ୍କ ବିରୁଦ୍ଧରେ ଯେଉଁ ଅଭିଯୋଗ କରାଯାଉଥିଲା ଯେ, ତାଙ୍କର ହୁଏତ "ଶିଖମାନଙ୍କ ପ୍ରତି ବିଦ୍ୱେଷ" ରହିଥିବା ଯୋଗୁଁ କିମ୍ବା ଅନ୍ୟଆଡ଼େ "ରାଜନୈତିକ ଫାଇଦା" ନେବା ପାଇଁ ଇନ୍ଦିରା ପଞ୍ଜାବକୁ ଧ୍ୱଂସ ମୁଖକୁ ଟାଣି ନେଉଥିଲେ, ତାହା ସମ୍ପୂର୍ଣ୍ଣ କପୋଳକଳ୍ପିତ ।

ଇନ୍ଦିରାଙ୍କ ଶିଖମାନଙ୍କ ପ୍ରତି କୌଣସି ପ୍ରକାର ବିଦ୍ୱେଷ ନଥିଲା । ଶିଖ "ସମ୍ପ୍ରଦାୟକୁ ସେ ଅତ୍ୟନ୍ତ ଭଲ ପାଉଥିଲେ ।" ଏକଥା ମାର୍କ ତୁଲି ଏବଂ ସତୀଶ ଜାକୋବ ତାଙ୍କ ପୁସ୍ତକ "ଅମୃତସର : ଇନ୍ଦିରା ଗାନ୍ଧିସ ଲାଷ୍ଟ ବେଟେଲ" ("ଅମୃତସର : ଇନ୍ଦିରା ଗାନ୍ଧିଙ୍କର ଶେଷ ଯୁଦ୍ଧ")ରେ ଉଲ୍ଲେଖ କରିଛନ୍ତି । ପବିତ୍ର ଶିଖ ଧର୍ମପୀଠ ସ୍ୱର୍ଣ୍ଣ ମନ୍ଦିରକୁ ସୈନ୍ୟ ପ୍ରେରଣ କରି ସେ ଭୁଲ କରିନାହାନ୍ତି, ବରଂ ତାଙ୍କର ଅକ୍ଷମଣୀୟ ଅପରାଧ ହେଲା ଯେ ସ୍ଥିତି ଏତେ ଶୋଚନୀୟ ଅବସ୍ଥା ଯାଏଁ ଯିବା ପର୍ଯ୍ୟନ୍ତ ସେ କୌଣସି ପଦକ୍ଷେପ ନେଲେ ନାହିଁ, ଯଦ୍ୱାରା ପରିଶେଷରେ ସାମରିକ କାର୍ଯ୍ୟାନୁଷ୍ଠାନ ଅବଶ୍ୟମ୍ଭାବୀ ହୋଇପଡ଼ିଲା । ନିର୍ବିବାଦରେ ଏହା ହିଁ ଥିଲା ଇନ୍ଦିରାଙ୍କର ସବୁଠାରୁ ବଡ଼ ବିଫଳତା । ଅବଶ୍ୟ ଏଥିପାଇଁ ନିରିହ ଜନତାଙ୍କର ନିଷ୍ଠୁର ଏବଂ ଅବାରିତ ହତ୍ୟାକାରୀରେ ପରିଣତ ହୋଇଯାଇଥିବା ଅକାଳୀ ଆନ୍ଦୋଳନକୁ ଏବଂ ତାର ନେତାମାନଙ୍କୁ ମଧ୍ୟ ଦୋଷ ସ୍ୱୀକାର କରିବାକୁ ପଡ଼ିବ । ମାତ୍ର ଏକଥା ବି ସତ ଯେ ଶୀର୍ଷସ୍ଥ ବ୍ୟକ୍ତିଭାବରେ ଇନ୍ଦିରାଙ୍କର ଦାୟିତ୍ୱ ଅନ୍ୟମାନଙ୍କ ଅପେକ୍ଷା ଥିଲା ଅଧିକ ।

ସେ ଯାହାହେଉ, ୧୯୮୪ ଜୁନ ମାସର ପ୍ରଥମ ସପ୍ତାହରେ ସ୍ୱର୍ଣ୍ଣ ମନ୍ଦିରକୁ ସୈନ୍ୟ ପ୍ରେରଣ କରି ନଥିଲେ, ଦେଶର ପ୍ରଧାନମନ୍ତ୍ରୀ ଭାବରେ ତଥା ଦେଶର ଏକତା, ସ୍ୱାଧୀନତା ଏବଂ ସୀମାନ୍ତର ରକ୍ଷକ ଭାବରେ ସେ କର୍ତ୍ତବ୍ୟର ଚରମ ଅବହେଳା କରିଛନ୍ତି ବୋଲି ବୁଝାପଡ଼ିଥାନ୍ତା । କାରଣ, ସେତେବେଳେ ଧର୍ମପୀଠଟି ପାକିସ୍ତାନ ସମର୍ଥିତ ଆତଙ୍କବାଦୀମାନଙ୍କ ପାଇଁ ଆଡ୍ଡା ଭୂଇଁ

ଏବଂ ଦୃଢ଼ ଅଭେଦ୍ୟ ଶସ୍ତ୍ରାଗାରରେ ପରିଣତ ହୋଇସାରିଥିଲା । ପାକିସ୍ତାନର ସାମରିକ ଶାସକ ଜିଆ ଉଲ ହକ କୁଖ୍ୟାତ ଇଣ୍ଟର ସର୍ଭିସେସ ଇଣ୍ଟେଲିଜେନ୍‌ସକୁ (ଆଇଏସ୍‌ଆଇ) ବ୍ୟବହାର କରି ନିଆଁରେ ଘିଅ ଢ଼ାଳୁଥାନ୍ତି, ଯେଣିକି ଭାରତର ପଞ୍ଜାବରେ ଉତ୍ପାତ ସୃଷ୍ଟି ହେବ ଏବଂ ହିନ୍ଦୁ ଓ ଶିଖମାନଙ୍କ ଭିତରେ ସ୍ଥାୟୀ ରୂପରେ ଏକ ଖାଇ ନିର୍ମାଣ ହେବ । ସ୍ୱର୍ଣ୍ଣ ମନ୍ଦିରରେ ଅସ୍ତ୍ରଶସ୍ତ୍ର ଆଣି ଭର୍ତ୍ତିକରି ରଖିବାରେ ସାହବେଗ ସିଂ ନାମରେ ସେନାର ଜଣେ ବହିଷ୍କୃତ ମେଜର ଜେନେରାଲ ପ୍ରମୁଖ ଭୂମିକା ନିର୍ବାହ କରିଥିଲେ । ଫଳରେ ସେଠି ଅନେକ ମାରାତ୍ମକ ଅସ୍ତ୍ରଶସ୍ତ୍ର ଆସି ଜମା ହେଲା ଏବଂ ଆତଙ୍କବାଦୀମାନଙ୍କୁ ପ୍ରଶିକ୍ଷଣ ଦିଆଗଲା ।

ପଞ୍ଜାବ ଗଣ୍ଡଗୋଳ, ଯାହା ପରବର୍ତ୍ତୀ ସମୟରେ ଏକ ବିକଟାଳ ରୂପ ଧାରଣ କଲା, ଆରମ୍ଭ ହେଲା ୧୯୭୨ ମସିହାର ଆଦ୍ୟ ଭାଗରେ ଘଟିତ ଏକ ସାଧାରଣ ଘଟଣା ଭାବରେ । ସେତେବେଳେ ଜ୍ଞାନୀ ଜୈଲ ସିଂ ଥାଆନ୍ତି ପଞ୍ଜାବର ମୁଖ୍ୟମନ୍ତ୍ରୀ । ୧୯୮୦ ରେ ସେ ଇନ୍ଦିରା ଗାନ୍ଧିଙ୍କର ଗୃହମନ୍ତ୍ରୀ ଏବଂ ପରେ ଦେଶର ରାଷ୍ଟ୍ରପତି ହେଲେ । ଜଣେ ରୁକ୍ଷ ଗାଉଁଲି ଅଥଚ ଚତୁର ରାଜନେତା ଭାବରେ ସେ ଶିଖ ଧାର୍ମିକ ଭାବନାକୁ ମାଧମ କରି ଅକାଳୀମାନଙ୍କର ରାଜନୈତିକ ଆଧାରକୁ ଆପଣେଇ ନେବାକୁ ଚେଷ୍ଟା କରୁଥିଲେ । ଅକାଳୀମାନେ ଏହା ପସନ୍ଦ କଲେ ନାହିଁ । ସେମାନେ ଶିଖ ସମ୍ପ୍ରଦାୟର ପ୍ରିୟ ଭାଜନ ହେବାପାଇଁ ଏଣିକି ସୁଯୋଗ ଅପେକ୍ଷାରେ ରହିଲେ । ଫଳରେ ଯେଉଁ ବିପଦର ଅୟମାରମ୍ଭ ହେଲା, ତାକୁ ଇନ୍ଦିରା ଅନୁମାନ କରିନେବା କଥା, କିନ୍ତୁ ପାରିଲେ ନାହିଁ । ଅନ୍ୟମାନଙ୍କ ଠାରୁ ମଧ କୌଣସି ଉପଶମ ମିଳିଲା ନାହିଁ ।

ଏହି ସମୟରେ କେତେକ ଅକାଳୀ ନେତା, ଖାସକରି ପ୍ରବାସୀ ଶିଖ, ଏକ ଶିଖଭୂମି ବା ସ୍ୱାଧୀନ "ଖଲିସ୍ତାନ" ରାଷ୍ଟ୍ର କଥା କହିବା ଆରମ୍ଭ କଲେ । ଉଦାହରଣସ୍ୱରୂପ ଜଗଜିତ ସିଂ ଚୌହାନ ନାମରେ ଜଣେ ଲଣ୍ଡନ ପ୍ରବାସୀ ନିଜକୁ "ଖଲିସ୍ତାନ ସାଧରଣତନ୍ତ୍ର"ର "ରାଷ୍ଟ୍ରପତି" ଘୋଷଣା କଲେ । ଏହା ଫଳରେ ଅକାଳୀ ଦଳର ନେତୃତ୍ୱ ଅପେକ୍ଷାକୃତ ଭାବେ ଏଣିକି ସତର୍କତା ଅବଲମ୍ବନ କଲା । ୧୯୭୩ ମସିହାରେ ଶ୍ରୀ ଆନନ୍ଦପୁର ସାହେବ ଠାରେ ଏହା ଏକ ପ୍ରସ୍ତାବ ପାସ କଲା । ପ୍ରସ୍ତାବରେ ଆଦୌ କୌଣସି ସ୍ପଷ୍ଟତା ନଥିଲା । ଖଲିସ୍ତାନ ଦାବିକୁ ଏହା ଅନୁମୋଦନ କରି ନଥିଲା ସତ, ମାତ୍ର ସ୍ୱାଧୀନତା ଓ ପ୍ରଚ୍ଛନ୍ନ ଭାବରେ ନିଜେ ଦାବି କରୁଥିବା ସ୍ୱାୟତ୍ତତା ମଧରେ ରହିଥିବା ପ୍ରଭେଦକୁ ମଧ ସୁସ୍ପଷ୍ଟ କଲାନାହିଁ । "ଶିଖଜାତି"ର ସ୍ୱ - ଘୋଷିତ ମୁଖପାତ୍ର ରୂପେ ଅକାଳୀ ଦଳ ଘୋଷଣା କଲା ଯେ, ଭାରତରେ ଏମିତି ଏକ ଅଞ୍ଚଳ ରହିବା ଆବଶ୍ୟକ, "ଯେଉଁଠି ଖାଲସାର ପ୍ରାଧାନ୍ୟ ରହିବ ।" ଏହି ଉଦ୍ଦେଶ୍ୟ ପୂରଣ ପାଇଁ ପଞ୍ଜାବରେ କେନ୍ଦ୍ର ସରକାରର "ହସ୍ତକ୍ଷେପ" କେବଳ ପ୍ରତିରକ୍ଷା, ବୈଦେଶିକ ମାମଲା, ମୁଦ୍ରା ଏବଂ ଯୋଗାଯୋଗ ବିଭାଗ ଯାଏଁ "ସୀମିତ" ରହିବା କଥା ବୋଲି ଦାବି କଲା । ଅନ୍ୟପକ୍ଷରେ ଆନନ୍ଦପୁର ସାହେବ ପ୍ରସ୍ତାବ ଏକଥା ମଧ ଘୋଷଣା କଲା ଯେ, ଶିଖ ଧର୍ମ "ସାର୍ବଭୌମତ୍ୱ ବିନା ସୁରକ୍ଷିତ ରହିପାରିବ ନାହିଁ ।"

ଏହି ଘଟଣାର ବର୍ଷକ ପରେ ଦେଶରେ ଜେପି ଆନ୍ଦୋଳନ ଆରମ୍ଭ ହେଲା । ତାକୁ ଅକାଳୀମାନେ ସମର୍ଥନ କଲେ । ତେଣିକି ଇମର୍ଜେନ୍‌ସି ଲାଗୁହେଲା । ୧୯୭୭ ମସିହାରେ ଇନ୍ଦିରା ତାଙ୍କ "ୱାଟରଲୁ ଯୁଦ୍ଧ"ରେ ପରାଜିତ ନହେବା ଯାକେ ଅନ୍ୟ ସବୁ ପ୍ରକାର ରାଜନୀତିକ ଗତିବିଧି ନିଲମ୍ବିତ ରହିଲା । ସେହି ବର୍ଷ ଅକାଳୀମାନେ ନିଜ ସାମର୍ଥ୍ୟରେ ପଞ୍ଜାବରେ ନିର୍ବାଚନ ଜିଣିଲେ । ତେଣୁ ୧୯୮୦ ପର୍ଯ୍ୟନ୍ତ କାହାରିକି ଆନନ୍ଦପୁର ସାହେବ ପ୍ରସ୍ତାବର ନାମ ସୁଦ୍ଧା ଶୁଣାଗଲା ନାହିଁ । ୧୯୮୨ ମସିହାରେ ଯେତେବେଳେ ପଞ୍ଜାବରେ ଶାସନ କ୍ଷମତା ଲାଭ କରିବାର ତଥା ପରବର୍ତ୍ତୀ ନିର୍ବାଚନରେ ପୁଣିଥରେ ଜୟଯୁକ୍ତ ହେବାର ସ୍ୱପ୍ନ ଅକାଳୀମାନଙ୍କର ସାକାର ହେଲା ନାହିଁ, ସେତେବେଳେ ଆଉ ଥରେ ପୁଣି ପ୍ରସ୍ତାବକୁ ରାଜନୈତିକ ମହତ୍ତ୍ୱ ମିଳିଲା ।

ଏଥର ଅକାଳୀମାନେ ଆନନ୍ଦପୁର ସାହେବ ପ୍ରସ୍ତାବକୁ ରଣହୁଙ୍କାରର ମୁଖ୍ୟ ମାଧ୍ୟମ କଲେ ଏବଂ ଇନ୍ଦିରା ସରକାର ବିରୁଦ୍ଧରେ ଧର୍ମଯୁଦ୍ଧ ଘୋଷଣା କଲେ ।

ସେମାନଙ୍କର ମୁଖ୍ୟ ଅଭିଯୋଗ ହେଲା, ଶିଖମାନେ ଏକ "ନିର୍ଯାତିତ ଏବଂ ଶୋଷିତ" ସଂଖ୍ୟାଲଘୁ ସମ୍ପ୍ରଦାୟ । ଏହା ନିହାତି ହାସ୍ୟାସ୍ପଦ କଥା, କାରଣ ଏହି ସମୃଦ୍ଧ ସଂଖ୍ୟାଲଘୁ ସମ୍ପ୍ରଦାୟର ପ୍ରତି ବ୍ୟକ୍ତି ଆୟ ଦେଶର ଜାତୀୟ ପ୍ରତି ବ୍ୟକ୍ତି ଆୟ ଅପେକ୍ଷା ଦୁଇଗୁଣ ଅଧିକ । ପ୍ରଶାସନିକ ସେବା ଏବଂ ସାମରିକ ବାହିନୀରେ ଶିଖ ପ୍ରତିନିଧିତ୍ୱ ଶିଖ ଲୋକସଂଖ୍ୟା ତୁଳନାରେ ସବୁଠାରୁ ଅଧିକ । ଚଣ୍ଡିଗଡ଼ ସହର ପୂର୍ଣ୍ଣତଃ ପଞ୍ଜାବର ହୋଇ ରହିବା କଥା ବୋଲି ସେମାନେ କରୁଥିବା ଦାବି ଅବଶ୍ୟ ଅଯଥାର୍ଥ ନୁହେଁ ।

ଅକାଳୀ ଧର୍ମଯୁଦ୍ଧ ଆରମ୍ଭ ହେବାର କିଛି ବର୍ଷ ପୂର୍ବରୁ, ଯେତେବେଳେ ଇନ୍ଦିରା କ୍ଷମତା ବାହାରେ ଥିଲେ, ପୁଅ ସଂଜୟ ଏବଂ ଜୈଲ ସିଂକୁ ପଞ୍ଜାବକୁ ନେଇ ଏମିତି କିଛି କାମ କରିବାକୁ ଅନୁମତି ଦେଲେ, ଯାହାଠାରୁ ବଳି ମୂର୍ଖତାପୂର୍ଣ୍ଣ କାମ ଆଉ କିଛି ହୋଇ ନପାରେ, ଦୁହେଁ ମିଶି ଠାବ କଲେ ଜର୍ଣ୍ଣାଲ ସିଂ ଭିଂଦ୍ରନୱାଲେ ନାମକ ଜଣେ ଅଜ୍ଞାତ ଧର୍ମପ୍ରଚାରକଙ୍କୁ ; ଉଦ୍ଦେଶ୍ୟ - ପଞ୍ଜାବରେ ଅକାଳୀ ସରକାରକୁ ଅପଦସ୍ତ କରିବା ତଥା ଅକାଳୀ ସମର୍ଥକଙ୍କ ଭିତରେ ବିଭେଦ ସୃଷ୍ଟିକରିବା । ସେଥିପାଇଁ ତାଙ୍କୁ (ଭିଂଦ୍ରନୱାଲେଙ୍କୁ) ଚରମ ବିଚାର ପ୍ରକଟ କରିବାକୁ ପ୍ରୋତ୍ସାହିତ କରାଗଲା । ସବୁଠାରୁ ପ୍ରମୁଖ ଏବଂ ଶକ୍ତିଶାଳୀ ଶିଖ ନେତାର ସ୍ୱୀକୃତି ପାଇବା ଲକ୍ଷ୍ୟନେଇ ଭିଂଦ୍ରନୱାଲେ ମଧ୍ୟ ମିଳିଥିବା ଦାୟିତ୍ୱକୁ ସୁଚାରୁ ରୂପେ ସମ୍ପନ୍ନ କଲେ । ଫଳରେ ବରିଷ୍ଠ ନେତାମାନେ ଯାଇ ତାଙ୍କ ପାଖରେ ଆତ୍ମସମର୍ପଣ କଲେ । ପ୍ରତିବଦଳରେ ନେତୃତ୍ୱର ଅନ୍ତତଃ ମୁଖା ପିନ୍ଧି ରହିବାକୁ ସେମାନଙ୍କୁ ତାଙ୍କ ପାଖରୁ ଅନୁମତି ମିଳିଲା । କିଛି ଦିନ ଉତ୍ତାରୁ ସେହି ମୁଖା ବି ସେମାନଙ୍କୁ ପ୍ରାପ୍ତ ହେଲା ନାହିଁ ।

ଇନ୍ଦିରାଙ୍କ କ୍ଷମତାକୁ ପ୍ରତ୍ୟାବର୍ତ୍ତନ ହେବାପରେ ଅକାଳୀ ସରକାର କ୍ଷମତାଚ୍ୟୁତ ହେଲେ । ସେତେବେଳକୁ ଭିଂଦ୍ରନୱାଲେଙ୍କ ଶକ୍ତି ଏତେ ମାତ୍ରାରେ ବୃଦ୍ଧି ପାଇଲାଣି ଯେ ସେ ତାଙ୍କର ପୂର୍ବତନ ଗୁରୁ ଏବଂ ଏପରିକି ଭାରତ ରାଜ୍ୟ - ରାଷ୍ଟ୍ରକୁ ମଧ୍ୟ ଉପେକ୍ଷା କରିବା ଆରମ୍ଭ

କରିଦେଲେ । ପ୍ରକୃତରେ କହିଲେ, ସେ ବ୍ରହ୍ମଗିଳା ରାକ୍ଷସର ରୂପ ଧାରଣ କଲେ । ତାଙ୍କୁ ନିୟନ୍ତ୍ରଣକୁ ଆଣିବା କାଠିକର ହୋଇପଡ଼ିଲା, କାରଣ ସେ ତଦାନିନ୍ତନ ସ୍ୱରାଷ୍ଟ୍ର ମନ୍ତ୍ରୀ ଜୈଲ ସିଂ ତଥା ଅନ୍ୟାନ୍ୟ କଂଗ୍ରେସ ନେତୃବୃନ୍ଦଙ୍କ ସହ ପୂର୍ବରୁ ପରିଚିତ ଥିଲେ । ପୁଣି, ତାଙ୍କ ପରିଚିତ ସଂଜୟଙ୍କର ଇତିମଧ୍ୟରେ ଦେହାନ୍ତ ହୋଇସାରିଥିଲା । ଏଥର ନୂଆ ଏକ ସମସ୍ୟା ହେଲା ଯେ, କଂଗ୍ରେସ ରାଜ୍ୟରେ ପୁଣି ଥରେ କ୍ଷମତାସୀନ ହେବାପରେ ଜୈଲ ସିଂଙ୍କର ଚିର ପ୍ରତିଦ୍ୱନ୍ଦ୍ୱୀ ଦରବାରା ସିଂ ପଞ୍ଜାବର ମୁଖ୍ୟମନ୍ତ୍ରୀ ପଦରେ ନିର୍ବାଚିତ ହେଲେ । ଦୁହେଁ ପରସ୍ପର ପ୍ରତି ଘୋର ସନ୍ଦେହୀ । ପୃଥକ ଉଦ୍ଦେଶ୍ୟ ସାଧନ ପାଇଁ ଉଭୟେ ଏମିତି ହାସ୍ୟାସ୍ପଦ କାମ ସବୁ ଆରମ୍ଭ କଲେ ଯେ ଭିଂଦ୍ରନୱାଲେଙ୍କୁ ଏକ ରକମର ସୁରକ୍ଷା ବଳୟ ଭିତରେ ରହି ଯଥେଚ୍ଛାଚାର କରିବାକୁ ସାମର୍ଥ୍ୟ ମିଳିଲା ।

ହିଂସ୍ର, ମୌଳବାଦୀ ଭିଂଦ୍ରନୱାଲେ ପ୍ରଥମେ ନିରଙ୍କାରୀମାନଙ୍କୁ ନିଶ୍ଚିହ୍ନ କରିବାରେ ଧ୍ୟାନ ଦେଲେ, କାରଣ ରଢ଼ିବାଦୀ ଶିଖମାନଙ୍କ ନଜରରେ ନିରଙ୍କାରୀ ଶିଖ ସମ୍ପ୍ରଦାୟ ହେଲେ ସ୍ୱଧର୍ମ ତ୍ୟାଗୀ । ପରବର୍ତ୍ତୀ ପର୍ଯ୍ୟାୟରେ, ଶିଖ ଯୁବକମାନଙ୍କ ଭିତରେ ଦଳମାନ ଗଠନ କରି ସେ ରାଜ୍ୟର ଚାରିଆଡ଼େ ହତ୍ୟା ଓ ଉଗ୍ରବାଦୀ କାର୍ଯ୍ୟ କରିବା ପାଇଁ ସେମାନଙ୍କୁ ପ୍ରେରଣ କଲେ । ୧୯୮୨ ମସିହା ସାରା ବର୍ବରୋଚିତ ହିଂସାର ତାଣ୍ଡବଲୀଳା ଚାଲିଲା । ୧୯୮୨ ଶେଷ ଆଡ଼କୁ ଅନୁଷ୍ଠିତ ହୋଇଥିବା ଏସୀୟ କ୍ରୀଡ଼ାର ପ୍ରତିଦାନରେ ଏହା ଚରମ ସୀମାରେ ଯାଇ ପହଞ୍ଚିଲା ।

ଏସୀୟ କ୍ରୀଡ଼ା ବା ଏସିଆଡ଼ ଥିଲା ବାସ୍ତବରେ ରାଜୀବ ଗାନ୍ଧିଙ୍କର "କୋଳର ଶିଶୁ" । ତା' ପାଇଁ ପ୍ରକାଣ୍ଡ ଭିତ୍ତିଭୂମି ନିର୍ମାଣ ଠାରୁ ଆରମ୍ଭ କରି ଖେଳର ଶେଷଯାଏଁ ରାଜୀବ ଅନ୍ତରଙ୍ଗ ଭାବେ ସାମିଲ ଥିଲେ । ଉଦ୍ଦେଶ୍ୟ ଥିଲା, ଦେଶ ଜାଣୁ ଯେ ତାଙ୍କ ପାଖରେ ନେତୃତ୍ୱ ଓ ପରିଚାଳନା ପାଇଁ ଯଥେଷ୍ଟ ମାତ୍ରାରେ ଦକ୍ଷତା ରହିଛି । ଏପଟେ ଅକାଳୀମାନେ ଘୋଷଣା କଲେ ଯେ, ସେମାନେ ଏସୀୟ କ୍ରୀଡ଼ାର ପ୍ରତ୍ୟେକ ଖେଳପଡିଆରେ ପ୍ରତିଦିନ ବିକ୍ଷୋଭ ପ୍ରଦର୍ଶନ କରିବେ । ଯେଉଁମାନେ ରାଜୀବଙ୍କୁ ତାଙ୍କ ଦାୟିତ୍ୱ ସମ୍ପନ୍ନ କରିବାରେ ସହଯୋଗ କରୁଥିଲେ, ସେମାନେ ଏକଥା ଶୁଣି ଶଙ୍କାଗ୍ରସ୍ତ ହୋଇପଡ଼ିଲେ । ସେମାନେ ଜାଣନ୍ତି ଯେ ରାଜୀବ ତାଙ୍କ ନେତୃତ୍ୱର ପ୍ରଥମ ପରୀକ୍ଷାରେ ସଫଳ ହୁଅନ୍ତୁ ବୋଲି ପ୍ରଧାନମନ୍ତ୍ରୀ ମଧ୍ୟ ଚାହାନ୍ତି । ତେଣୁ, ସମ୍ଭାବ୍ୟ ପ୍ରଦର୍ଶନକାରୀଙ୍କର ଦେଶର ରାଜଧାନୀକୁ ପ୍ରବେଶ ନିଷେଧ କରିବା ସକାଶେ ସେମାନେ କଠୋର ପଦକ୍ଷେପମାନ ଗ୍ରହଣ କରିବାକୁ ସ୍ଥିର କଲେ । ଏତେବେଳକୁ ଦୃଶ୍ୟରେ ପ୍ରବେଶ ହେଲା ହରିଆନା ମୁଖ୍ୟମନ୍ତ୍ରୀ ଭଜନଲାଲଙ୍କର, ଯିଏ ୧୯୮୦ ଜାନୁଆରୀ ମାସରେ ଇନ୍ଦିରାଙ୍କ ନିର୍ବାଚନ ବିଜୟ ସମ୍ବାଦ ପାଇ ସଦଳବଳେ ଜନତା ପାର୍ଟିରୁ ଯାଇ ଇନ୍ଦିରା କଂଗ୍ରେସରେ ସାମିଲ ହୋଇଥିଲେ । ହରିଆନାକୁ ଏଡ଼ାଇ ଦେଇ ବସ ବା ରେଳରେ କେହି ପଞ୍ଜାବରୁ ଦିଲ୍ଲୀ ଯାତ୍ରା କରିପାରିବେ ନାହିଁ । ଜଣେ ବି ଗଣ୍ଡଗୋଳକାରୀ ଏସୀୟ କ୍ରୀଡ଼ାର ପାଖ ଯେମିତି ମାଡ଼ି ନପାରେ, ତାର ବ୍ୟବସ୍ଥା କରିବାକୁ ଭଜନଲାଲ ଏବଂ ତାଙ୍କର ରୁକ୍ଷ, କର୍କଶ ପୋଲିସ ବାହିନୀ କାର୍ଯ୍ୟାନୁଷ୍ଠାନ

ଗ୍ରହଣ କଲେ । ଫଳରେ ଦିଲ୍ଲୀ ଅଭିମୁଖେ ଯାତ୍ରା କରୁଥିବା ପ୍ରତ୍ୟେକ ଶିଖ ଯାତ୍ରୀଙ୍କୁ ଅପମାନିତ ହେବାକୁ ପଡ଼ିଲା । ଅପମାନିତ ମଧ୍ୟରେ ସାମିଲ ଥିଲେ ଜଣେ ଅତି ସମ୍ମାନନୀୟ, ଭାରତୀୟ ବାୟୁସେନାର ପୂର୍ବତନ ମୁଖ୍ୟ ଓ ଅବସରପ୍ରାପ୍ତ ଜେନେରାଲ, ଯାହାଙ୍କ ଆଗରେ ୧୯୭୧ ମସିହା ବାଲାଂଦେଶ ଯୁଦ୍ଧରେ ପାକିସ୍ତାନୀ ସୈନ୍ୟ ଆତ୍ମସମର୍ପଣ କରିଥିଲେ । ଅବଶ୍ୟ ବିନା କୌଣସି ବାଧାବିଘ୍ନରେ ଏସିଆଡ଼ ସମାପନ ହେଲା । ହେଲେ ଏତେବେଳକୁ ଅଧିକାଂଶ ଶିଖ କ୍ରୋଧରେ ଅଗ୍ନିଶର୍ମା ହୋଇ ସାରିଥିଲେ ।

୧୯୮୩ ମସିହା ଏପ୍ରିଲ ୨୩ ତାରିଖ ଦିନ ସ୍ୱର୍ଣ୍ଣମନ୍ଦିର ପରିସର ଭିତରେ ଅମୃତସରେ ସର୍ବୋଚ୍ଚ ପୋଲିସ ପଦାଧିକାରୀ ଏବଂ ଜଣେ ଗଭୀର ଧର୍ମବିଶ୍ୱାସୀ ଶିଖ ଏ.ଏସ. ଅଟୱେଲଙ୍କୁ ପ୍ରାର୍ଥନା ସାରି ଫେରୁଥିବାବେଳେ ଉଗ୍ରବାଦୀମାନେ ଗୁଳିକରି ହତ୍ୟା କଲେ । ତା'ପରେ ଦରବାରା ସିଂ ସ୍ୱର୍ଣ୍ଣମନ୍ଦିର ଭିତରକୁ ପୋଲିସ ପଠାଇ ଭିଂଦ୍ରନୱାଲେ ଏବଂ ତାଙ୍କ ସହଯୋଗୀ ହତ୍ୟାକାରୀମାନଙ୍କୁ ଗିରଫ କରିବାକୁ ସ୍ଥିର କରିଥିଲେ । ମାତ୍ର ଜୈଲ ସିଂ ଏଥିରେ ପ୍ରତିବନ୍ଧକ ସୃଷ୍ଟିକଲେ । ଏଣିକି ଭିଂଦ୍ରନୱାଲେ ମନ୍ଦିର ପରିସରର ଆବାସୀୟ କ୍ଷେତ୍ରରୁ ଯାଇ ମୁଖ୍ୟ ଶିଖ ପୀଠ ଅକାଲତଖତରେ ଅବସ୍ଥାନ କଲେ । ସଙ୍ଗେ ସଙ୍ଗେ ସେଠାରେ ଆତଙ୍କବାଦୀଙ୍କର ଗଡ଼ ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଗଲା ।

ସ୍ପଷ୍ଟ ଦିବାଲୋକରେ ଅଟୱେଲଙ୍କୁ ଯେମିତି ନିର୍ମମ ଭାବରେ ହତ୍ୟା କରାଗଲା ଏବଂ ସେ ନେଇ ସରକାର କୌଣସି ପଦକ୍ଷେପ ନେବାକୁ ଅକ୍ଷମ ହେଲେ, ତଦ୍ୱାରା ପଞ୍ଜାବରେ ଭୟର ବାତାବରଣ ବୃଦ୍ଧି ପାଇଲା ଏବଂ ଦେଶସାରା ଆତ୍ମବିଶ୍ୱାସ ଭାଙ୍ଗିପଡ଼ିଲା । ଅନ୍ୟପକ୍ଷରେ, ଶିଖ ଯୁବସମାଜରେ ଭିଂଦ୍ରନୱାଲେଙ୍କ ଲୋକପ୍ରିୟତା ଅନେକ ମାତ୍ରାରେ ବୃଦ୍ଧି ପାଇଲା । ଏଥିରେ ଅକାଳୀ ନେତୃତ୍ୱର ତିନି ଜଣ ଶୀର୍ଷ ସ୍ଥାନୀୟ ବୋଲି ମନେ କରାଯାଉଥିବା ନେତା, "ଧର୍ମଯୁଦ୍ଧ"ର "ଡ଼ିକ୍ଟେଟର" ସନ୍ଥ ହରଚାନ୍ଦ ସିଂ ଲଙ୍ଗୱାଲ, ଗୁରୁଦ୍ୱାରା ପ୍ରବନ୍ଧକ କମିଟିର ମୁଖ୍ୟ ଗୁରୁଚରଣ ସିଂ ତୋହରା, ଏବଂ ପଞ୍ଜାବର ମୁଖ୍ୟମନ୍ତ୍ରୀ ପ୍ରକାଶ ସିଂ ବାଦଲ, ମଧ୍ୟ ଆତଙ୍କିତ ହୋଇପଡ଼ିଲେ ।

ହିନ୍ଦୁମାନଙ୍କୁ ପଞ୍ଜାବ ଛାଡ଼ି ଚାଲିଯିବାକୁ ବାଧ୍ୟ କରିବାର ତାନ୍ତ୍ରିକ ପ୍ରୟାସରେ ଭିଂଦ୍ରନୱାଲେ ତାଙ୍କ ଡ଼କାୟତ ଗୋଷ୍ଠୀକୁ ରାସ୍ତାରେ ଯାତ୍ରୀବାହୀ ବସଗୁଡ଼ିକୁ ଅଟକାଇ ତହିଁରେ ବସିଥିବା କେବଳ ହିନ୍ଦୁ ଯାତ୍ରୀଙ୍କୁ ହତ୍ୟା କରିବା ସକାଶେ ନିର୍ଦ୍ଦେଶ ଦେଲେ । ଏହି ଘୃଣ୍ୟ ଉଦ୍ଦେଶ୍ୟ ଅବଶ୍ୟ ତାଙ୍କର ପୂରଣ ହୋଇପାରିଲା ନାହିଁ । ସେ ଯାହାହେଉ, ଦରବାରା ସିଂ ମନ୍ତ୍ରୀମଣ୍ଡଳକୁ ଇନ୍ଦିରା ବରଖାସ୍ତ କଲେ । ପଞ୍ଜାବରେ ରାଷ୍ଟ୍ରପତି ଶାସନ ଲାଗୁ ହେଲା । ଇନ୍ଦିରା ଚାହୁଁଥିଲେ ଅବସ୍ଥା ଅସମ୍ଭାଳ ନ ହେବା ପର୍ଯ୍ୟନ୍ତ ସେଠାରେ କୌଣସି ସାମରିକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରା ନଯାଉ । ମେ' ମାସର ମଧ୍ୟଭାଗରେ ଇନ୍ଦିରା, ତୁଲି ଓ ଜାକୋବଙ୍କ ଭାଷାରେ, "ନରମପନ୍ଥୀ" ନେତୃବୃନ୍ଦଙ୍କ ସହ "ଶେଷଥର ପାଇଁ ବୁଝାମଣା" କରିବାକୁ ବୈଠକ ଡ଼ାକିଲେ । ଅକାଳୀ "ତ୍ରିଶକ୍ତି" ବୁଝାମଣା ପ୍ରସ୍ତାବକୁ ସ୍ୱୀକାର କରିବାକୁ ପ୍ରସ୍ତୁତ ଥିଲେ, ମାତ୍ର ଭିଂଦ୍ରନୱାଲେ ସେମାନଙ୍କୁ "କାପୁରୁଷ",

"ବିଶ୍ୱାସଘାତକ" ଆଖ୍ୟା ଦେଇ ନିନ୍ଦା କରିବାରୁ ସେମାନେ ବୁଝାମଣାରୁ ଓହରି ଗଲେ । ଏହାପରେ, ଏକ ଦୀର୍ଘ ଓ ଲଜ୍ଜାଜନକ କାହାଣୀକୁ ପୂର୍ଣ୍ଣଚ୍ଛେଦ ଦେବା ସକାଶେ, ଭିଂଦ୍ରନୱାଲେ ଆଡୁରେ ସାମରିକ ଶକ୍ତି ପ୍ରୟୋଗ କରିବା ବ୍ୟତୀତ ଅନ୍ୟ କୌଣସି ବିକଳ୍ପ ରହିଲା ନାହିଁ । କେବଳ ଅବସୋସର ବିଷୟ ହେଲା, ଏଥିପାଇଁ ଇନ୍ଦିରା ବିରୋଧୀ ଦଳ ନେତାମାନଙ୍କର ସମର୍ଥନ ଭିକ୍ଷା କଲେ ନାହିଁ, କାରଣ ତାଙ୍କର ଆଶଙ୍କା ଥିଲା ଯେ ବିରୋଧୀଦଳ ତାଙ୍କ ପ୍ରତି ଏତେ ମାତ୍ରାରେ ବିତସ୍ପୃହ ଯେ କଥାବାର୍ତ୍ତା କରିବା ନିମନ୍ତେ ମଧ୍ୟ ଆଗଭର ହେବେ ନାହିଁ ।

"ଅପରେସନ ବ୍ଲୁଷ୍ଟାର" ନାମରେ ପରିଚିତ ଏହି ସାମରିକ କାର୍ଯ୍ୟାନୁଷ୍ଠାନ ଏତେ ମହଙ୍ଗା ପ୍ରମାଣିତ ହେଲା ଯେ, ତାହା ତାର ଯୋଜନାକାରୀମାନେ ମଧ୍ୟ କଳ୍ପନା କରି ନଥିଲେ । ଏକ ସାଧାରଣ କମାଣ୍ଡୋ ଚଢ଼ାଉରେ ଏହା ସୀମିତ ରହିବା କଥା । ମାତ୍ର ଭାରି କ୍ଷୟକ୍ଷତି ଘଟାଇ ଅପରେସନ ତିନିଦିନ ଧରି ଚାଲିଲା । ମୋଟ ୫୭୬ ଜଣ ଲୋକଙ୍କର ଏଥିରେ ପ୍ରାଣହାନି ଘଟିଲା । ତନ୍ମଧ୍ୟରେ ନିଜେ ଭିଂଦ୍ରନୱାଲେ ଏବଂ ୮୩ଜଣ ଭାରତୀୟ ଯବାନ ମଧ୍ୟ ଅନ୍ତର୍ଭୁକ୍ତ ଥିଲେ । ଅକାଳତଖତ ଭାଙ୍ଗି ନଷ୍ଟ ହୋଇଗଲା । ବିଶ୍ୱର ଚାରିଆଡ଼େ ପ୍ରାୟ ସମସ୍ତ ଶିଖ ଏଥିରେ ଅତ୍ୟନ୍ତ କ୍ରୋଧ ଜର୍ଜରିତ ହେଲେ ।

"ଅପରେସନ ବ୍ଲୁଷ୍ଟାର" ଦାୟିତ୍ୱରେ ଥିବା ଛଅଜଣ ଜେନେରାଲଙ୍କ ମଧ୍ୟରେ ଚାରିଜଣ ଥିଲେ ଶିଖ । ମାତ୍ର ଏହାର କୌଣସି ପ୍ରଭାବ ସୈନ୍ୟବାହିନୀରେ ନୂଆ ନିଯୁକ୍ତ ହୋଇଥିବା ଶିଖ ସିପାହିଙ୍କ ଉପରେ ପଡ଼ିଲା ନାହିଁ । ଭିନ୍ନ ଭିନ୍ନ ଆଠଗୋଟି କ୍ଷେତ୍ରରେ ପ୍ରାୟ ୨୫୦୦ ଶିଖ ସିପାହୀ ବିଦ୍ରୋହ ଆରମ୍ଭ କରିଦେଲେ । ଅବଶ୍ୟ ଦଶଲକ୍ଷ ସଂଖ୍ୟା ବିଶିଷ୍ଟ ସେନା ବାହିନୀରେ, ଯେଉଁଠି କେବଳ ଶିଖ ସୈନିକଙ୍କର ସଂଖ୍ୟା ଲକ୍ଷେ କୋଡ଼ିଏ ହଜାରରୁ ଊଣା ନୁହେଁ, ଏହା ଏକ ବହୁତ ବଡ଼ ସଂଖ୍ୟା ନୁହେଁ । ମାତ୍ର ସମସ୍ୟାଟିର ଯଦି ଆରମ୍ଭରେ ମୁକାବିଲା କରାଯାଇଥାନ୍ତା, ସୈନ୍ୟବାହିନୀରେ ଏଭଳି ଏକ ସଙ୍କଟ ସୃଷ୍ଟି ବା ହୋଇଥାନ୍ତା କାହିଁକି ?

## ଅସୀମ ପ୍ରଶାନ୍ତିର ପ୍ରତୀକ ଇନ୍ଦିରା

ଏଠାରେ ଇନ୍ଦିରା ଗାନ୍ଧିଙ୍କର ଏକ ବିଶିଷ୍ଟ ଗୁଣ ସମ୍ବନ୍ଧରେ ସାମାନ୍ୟ ସୂଚନା ଦେବା ବୋଧହୁଏ ଅପ୍ରାସଙ୍ଗିକ ହେବ ନାହିଁ । ଯେତେ ଦୁଃଖ, ଦୁର୍ବିପାକ ଆସିଲେ ସୁଦ୍ଧା, ବ୍ୟକ୍ତିଗତ ସ୍ତରରେ ଯେ କୌଣସି ବିପତ୍ତି ବା ବିପର୍ଯ୍ୟୟର ସମ୍ମୁଖୀନ ହେଲେ ସୁଦ୍ଧା, ଇନ୍ଦିରା କେବେ ତାଙ୍କର ପ୍ରଶାନ୍ତି ହରାଉ ନଥିଲେ । ଆନ୍ତରିକ ସ୍ତରରେ ଯେ କୌଣସି ସଂକଟ ସୃଷ୍ଟି ହେଲେ ସୁଦ୍ଧା, ଲୋକଙ୍କ ଆଗରେ କେବେ ସେ ଭାବପ୍ରବଣ ଜଣାପଡୁନଥିଲେ । ଏଥିରେ ବ୍ୟତିକ୍ରମ ଘଟିଥିଲା ସଂଜୟଙ୍କର ନିଧନ ସମୟରେ । ସେତେବେଳେ ସେ ଆଖିର ଲୁହ ଓ ମନର କୋହକୁ ନିୟନ୍ତ୍ରଣ କରିପାରି ନଥିଲେ ।

ତାଙ୍କ ବାପାଙ୍କ ପରି, ସମସ୍ତଙ୍କ ଆଗରେ ସେ କେବେ କ୍ରୋଧ ପ୍ରକାଶ କରୁନଥିଲେ ।

ଏପରିକି ଘରୋଇ ଭାବରେ ମଧ୍ୟ କ୍ୱଚିତ କ୍ରୋଧାନ୍ୱିତ ହେଉଥିଲେ । ତାଙ୍କ ପ୍ରତି ତିକ୍ତତା ଭାବ ରଖିଥିବା ବ୍ୟକ୍ତି ବିରୁଦ୍ଧରେ ଗୋଟାଏ ଶବ୍ଦ ସୁଦ୍ଧା ଉଚ୍ଚାରଣ ନକରି ସେ ନିଜର ମନୋଭାବ ଅଭିବ୍ୟକ୍ତ କରୁଥିଲେ । "ନୀରବତାର ସୁଦକ୍ଷ ସୁନ୍ଦରୀ" ହେବା ସାଙ୍ଗକୁ, ତାଙ୍କ ପାଖରେ ରହିଥିଲା "ହିମଶୀତଳ ଚାହାଣୀ" । ଅଧିକାଂଶ ସମୟ ସେ ବିଷାଦମୁକ୍ତ, କରୁଣାମୟୀ ତଥା ରମଣୀୟ ଦେଖାଯାଆନ୍ତି । ୧୯୮୩ ମସିହାର ବସନ୍ତ ଋତୁରେ ଘଟି ଯାଇଥିବା ନେଲି ନରସଂହାର ଖବର ଶୁଣି ସେ ଅତ୍ୟନ୍ତ ମର୍ମାହତ ହୋଇ ପଡ଼ିଥିଲେ, ମାତ୍ର ଗୋଷ୍ଠୀ ନିରପେକ୍ଷ ଶୀଖର ସମ୍ମିଳନୀରେ ଏକତ୍ରିତ ହୋଇଥିବା ରାଷ୍ଟ୍ର ମୁଖ୍ୟମାନେ ଦେଖିଲେ ଯେ ସେ ଖୁବ ପ୍ରଫୁଲ୍ଲିତ ଜଣାପଡୁଛନ୍ତି । ଠିକ୍ ସେହିଭଳି ୧୯୮୪ ମସିହା ଜୁନ ୫ ତାରିଖରେ ଯେତେବେଳେ ଅପରେସନ ବ୍ଲୁଷ୍ଟାର ଚାଲିଥାଏ ଏବଂ ତାଙ୍କ ଜୀବନ ପ୍ରତି ଶିଖ ଆତଙ୍କର ଗୁଜବ ଚାରିଆଡ଼େ ବ୍ୟାପି ଚାଲିଥାଏ, ସେ ତାଙ୍କ ବଗିଚାରେ ଅତ୍ୟନ୍ତ ଅବିଚଳିତ ଢ଼ଙ୍ଗରେ ପଶ୍ଚିମ ଜର୍ମାନୀର ସମାଜବାଦୀ ନେତା ଏବଂ ପୂର୍ବତନ ଚାନସେଲର ଓ୍ୱିଲି ବ୍ରାଣ୍ଡଙ୍କ ସହିତ ବିଚାର ଆଲୋଚନା କରୁଥାନ୍ତି । ସେହି ବଗିଚାର ଗୋଟାଏ କୋଣରେ କିଛିଦିନ ପରେ ତାଙ୍କର ପୁଣି ଜୀବନ ଗଲା । ଆଲୋଚନାବେଳେ ପଞ୍ଜାବର ମଧ୍ୟ ନାଁ ପଡ଼ିଲା, ମାତ୍ର ଅଧିକାଂଶ ସମୟ ଇନ୍ଦିରା "ମାନବ ସଭ୍ୟତା ପ୍ରତି ପରମାଣୁ ବିପଦ" ସମ୍ପର୍କରେ ମତବ୍ୟକ୍ତ କରୁଥାନ୍ତି । ପଞ୍ଜାବ ସମସ୍ୟା ଅତି ଗୁରୁତର ଆକାର ଧାରଣ କରିଥିବା ସମୟରେ ମେ' ୨୨ ତାରିଖ ଦିନ ସେ ନେଇଥିବା ପ୍ରମୁଖ ଅନ୍ତିମ ଆନ୍ତର୍ଜାତିକ ପ୍ରୟାସ, "ପରମାଣୁ ସୁରକ୍ଷା ପାଇଁ ଛଅଟି ରାଷ୍ଟ୍ରର ଘୋଷଣା" ସମ୍ପର୍କରେ ମଧ୍ୟ ବିଷଦ ଆଲୋଚନା କରୁଥାନ୍ତି । ସେହି ଛଅଟି ରାଷ୍ଟ୍ର ହେଲେ ଭାରତ, ଆର୍ଜେଣ୍ଟିନା, ଗ୍ରୀସ୍, ମେକ୍ସିକୋ, ସ୍ୱିଡ଼େନ ଏବଂ ତାଞ୍ଜାନିଆ । ପାଞ୍ଚୋଟି ମହାଦେଶର ଦେଶ ସେଗୁଡ଼ିକ । ସେମାନଙ୍କର "ଆକାର, ସମ୍ପନ୍ନତା ଏବଂ ବିକାଶ ମଧ୍ୟରେ ଘୋର ତାରତମ୍ୟ" ରହିଥିଲା । ତା' ସତ୍ତ୍ୱେ ସଦସ୍ୟ ଦେଶଗୁଡ଼ିକର ନେତୃବୃନ୍ଦ ମିଳିତ ସ୍ୱରରେ ସମ୍ପୂର୍ଣ୍ଣ ପରମାଣୁ ନିରସ୍ତ୍ରୀକରଣ ପୂର୍ବରୁ "ପରମାଣୁ ବିରତି" ପାଇଁ ଆହ୍ୱାନ ଦେଇଥିଲେ ।

## ଦୁଇଟି ଲଜ୍ଜାଜନକ ନିଷ୍ପତ୍ତି

ଇନ୍ଦିରାଙ୍କର ଜଟିଳ ଅଥଚ ପ୍ରଭାବଶାଳୀ ବ୍ୟକ୍ତିତ୍ୱର ଗୋଟିଏ ବଡ଼ ବୈଶିଷ୍ଟ୍ୟ ହେଲା ଯେ ତହିଁରେ ଉଭୟ ପ୍ରଶଂସନୀୟ ଏବଂ ଲଜ୍ଜାକର ପଦକ୍ଷେପ ମିଶାମିଶି ହୋଇ ରହୁଥିଲେ । ଗୋଟିଏ ଦିଗରେ ସେ ମାନବ ସଭ୍ୟତାର ସ୍ଥିତି ତଥା ଦେଶର ଆଧୁନିକତା ଓ ବିକାଶ ପାଇଁ ଗଭୀର ଭାବରେ ଚିନ୍ତାମଗ୍ନ ରହୁଥିଲେ, ଅନ୍ୟ ପକ୍ଷରେ ରାଜନୈତିକ ଶତ୍ରୁମାନଙ୍କୁ ଯେନତେନ ପ୍ରକାରେଣ ସାବାଡ଼ କରିବା ପାଇଁ ଉପାୟ କଥା ମଧ୍ୟ ଚିନ୍ତା କରୁଥିଲେ ।

ଅପରେସନ ବ୍ଲୁଷ୍ଟାରର ତିନି ସପ୍ତାହ ନ ଯାଉଣୁ, ଯେତେବେଳେ ସେ ତାର ପରବର୍ତ୍ତୀ ପରିଣତିକୁ ନେଇ ବ୍ୟସ୍ତ ରହିଥାନ୍ତେ, ସେ କାଶ୍ମୀର ମୁଖ୍ୟମନ୍ତ୍ରୀ ଫାରୁଖ ଅବଦୁଲ୍ଲାଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ବରଖାସ୍ତ କରିଦେଲେ । ପ୍ରାୟ ବର୍ଷେ ସମୟ ଧରି ସେ ତାଙ୍କୁ (ଫାରୁଖଙ୍କୁ) ଆକ୍ରମଣ

କରିଚାଲିଲେ । ହେଲେ ଆଜିଯାଏଁ ତାଙ୍କୁ ଅନ୍ତିମ ଆଘାତ ଯଦି ଦେଇ ନଥିଲେ, ତାର ଏକମାତ୍ର କାରଣ ହେଲା, ସମ୍ପର୍କୀୟ ଭାଇ ଏବଂ କାଶ୍ମୀରର ରାଜ୍ୟପାଳ ବି.କେ. ନେହେରୁଙ୍କର ପ୍ରତିରୋଧ । ଶେଷରେ ନେହେରୁଙ୍କୁ ଗୁଜରାଟକୁ ବଦଳି କରାଗଲା ଏବଂ ତାଙ୍କ ସ୍ଥାନରେ ଜଣେ ଅତ୍ୟନ୍ତ ବିଶ୍ୱସ୍ତ ଟାଣୁଆ ପ୍ରଶାସନିକ ଅଧିକାରୀ ଜଗମୋହନଙ୍କୁ ରାଜ୍ୟପାଳ ପଦରେ ସେଠାରେ ନିଯୁକ୍ତ କରାଗଲା । ଜଗମୋହନ ଯଥାରୀତିରେ ଫାରୁଖଙ୍କୁ ବରଖାସ୍ତ କଲେ, ମାତ୍ର ରାଜ୍ୟରେ ରାଷ୍ଟ୍ରପତି ଶାସନ ଜାରି କରିବା ସକାଶେ ନିଷ୍ପତ୍ତି ନେବାକୁ ପ୍ରଧାନମନ୍ତ୍ରୀଙ୍କୁ ବୁଝାଇ ପାରିଲେ ନାହିଁ । ତା' ବଦଳରେ, ଫାରୁଖଙ୍କର ଭିଣେଇ ଏବଂ ତିକ୍ତ ଶତ୍ରୁ ଜି.ଏମ. ଶାହଙ୍କ ରୁକ୍ଷ ହାତରେ ରାଜ୍ୟଟିକୁ ଟେକି ଦିଆଗଲା । ଶାହଙ୍କ ଅପରିଣାମଦର୍ଶୀ ଶାସନର ଦୁଷ୍ପରିଣାମ ଶେଷରେ ରାଜୀବଙ୍କୁ ହିଁ ଭୋଗିବାକୁ ପଡ଼ିଲା ।

ଇନ୍ଦିରାଙ୍କର ଦୀର୍ଘ ରାଜୁତି ସମୟରେ ତିରିଶରୁ ଅଧିକ ରାଜ୍ୟ ସରକାରଙ୍କୁ ବରଖାସ୍ତ କରାଯାଇଥିବ । ମାତ୍ର ଫାରୁଖଙ୍କର ବରଖାସ୍ତ ପରେ ଯେତେ ତୀବ୍ରତାର ସହ ପ୍ରତିବାଦ କରାଗଲା, ଅତୀତରେ ସେମିତି ପ୍ରତିବାଦ କେବେ ହୋଇ ନଥିଲା । ସବୁଠାରୁ ବଡ଼ ପ୍ରତିବାଦୀ ଥିଲେ ଏନଟିଆର । ଅଗଷ୍ଟ ୧୬ ତାରିଖ ଦିନ ତାଙ୍କୁ ମଧ୍ୟ ଅନୁରୂପ ଦଶା ଭୋଗିବାକୁ ପଡ଼ିଲା । ପ୍ରଧାନମନ୍ତ୍ରୀ ନିବାସରୁ ଜଣେ କେହି ଟେଲିଫୋନରେ ଆନ୍ଧ୍ର ରାଜ୍ୟପାଳଙ୍କ ସାଙ୍ଗରେ କଥାବାର୍ତ୍ତା କଲେ । ସେହି ଆଧାରରେ ରାଜ୍ୟପାଳ ଏନଟିଆରଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ବରଖାସ୍ତ କରିଦେଲେ । କିନ୍ତୁ ଏନଟିଆରଙ୍କ ରାଜ୍ୟ ବିଧାନସଭାରେ ବହୁମତ ଅତୁଟ ରହିଥାଏ, ଯାହା ଫାରୁଖଙ୍କ କ୍ଷେତ୍ରରେ ସମ୍ଭବପର ହେଲା ନାହିଁ । ଶେଷରେ ଏନଟିଆରଙ୍କୁ ପୁଣିଥରେ ମୁଖ୍ୟମନ୍ତ୍ରୀ ପଦରେ ଅବସ୍ଥାପିତ କରିବାକୁ ଇନ୍ଦିରା ବାଧ୍ୟ ହେଲେ ।

ଏୟାର ଇଣ୍ଡିଆ ବିମାନରେ ନ୍ୟୁୟର୍କ ଗସ୍ତ କରୁଥିବାବେଳେ ମୁଁ ଲଣ୍ଡନଠାରେ ଏନଟିଆରଙ୍କ ପୁନରାବସ୍ଥାନ ସମ୍ବାଦ ଶୁଣିଲି । ଏହା ସେପ୍ଟେମ୍ବର ୧୬ ତାରିଖ ଘଟଣା । ମତେ ଆଶ୍ୱସ୍ତ ଲାଗିଲା । ଏହାର ଠିକ ୪୫ ଦିନ ପରେ ଲଣ୍ଡନର ଏକ ହୋଟେଲରେ ଅବସ୍ଥାନ କରୁଥିବା ବେଳେ ସକାଳ ପାଞ୍ଚଟା ତିରିଶରେ ମତେ ଫୋନ ଦ୍ୱାରା ସୂଚନା ମିଳିଲା ଯେ ଦୁଇଜଣ ସୁରକ୍ଷାକର୍ମୀ ଅତି ନାରକୀୟ ଢ଼ଙ୍ଗରେ ଇନ୍ଦିରାଙ୍କୁ ହତ୍ୟା କରିଛନ୍ତି ।

## ସେହି ଭୟଙ୍କର ଗୁଳିକାଣ୍ଡ

ଇନ୍ଦିରା ଗାନ୍ଧି ଆରମ୍ଭରୁ ଜାଣିଥିଲେ ଯେ ଅପରେସନ ବ୍ଲୁଷ୍ଟାରର ସେ ଆଦେଶ ଦେଇଛନ୍ତି ଅର୍ଥାତ ସାଙ୍ଗରେ ନିଜ ମୃତ୍ୟୁର ପରୱାନା ପାଇଁ ମଧ୍ୟ ଦସ୍ତଖତ କରିଛନ୍ତି । କୌଣସି ହିଂସାକାଣ୍ଡରେ ହିଁ ତାଙ୍କର ମୃତ୍ୟୁ ହେବ - ଏହି ଚିନ୍ତା ତାଙ୍କ ମନରେ ଅନେକ ବର୍ଷ ଧରି ରହିଥିଲା । ୧୯୭୩ ନଭେମ୍ବର ୧୧ ତାରିଖ ଦିନ ଚିଲିରେ ସଲଭାଡ଼ର ଆଲେଣ୍ଡଙ୍କ ହତ୍ୟା ଖବର ଯେତେବେଳେ ପହଞ୍ଚିଲା, ସେତେବେଳେ ଦିଲ୍ଲୀ ବାଟ ଦେଇ ଯାଉଥିବା ଫିଡ଼ଲ କାଷ୍ଟ୍ରୋଙ୍କ ସମ୍ମାନାର୍ଥେ ଏକ

ଭୋଜିସଭାର ସେ ଆୟୋଜନ କରୁଥାନ୍ତି । କାଷ୍ଟ୍ରୋଙ୍କୁ କହିଲେ, "ଆଲେଣ୍ଡଙ୍କ ଉପରେ ଯାହା କରାଗଲା, ସେହି ପନ୍ଥା ସେମାନେ ମୋ ଉପରେ ମଧ୍ୟ ପ୍ରୟୋଗ କରିବାକୁ ଚାହାନ୍ତି । ଚିଲିରେ ଯେଉଁମାନେ ଏହି ନାରାକୀୟ କାଣ୍ଡ ଘଟାଇଲେ ସେମାନଙ୍କର ସମ୍ବନ୍ଧ ଏଠାରେ ବି ରହିଛି ।" ଏକଥା କାଷ୍ଟ୍ରୋ ପରେ ଜଣାଇଲେ । ଇନ୍ଦିରାଙ୍କର ଏହି ଉକ୍ତିରୁ ସଙ୍କେତ ମିଳେ, ସେ କେମିତି ଦେଶର ଅଧିକାଂଶ ସମସ୍ୟା ମୂଳରେ "ବିଦେଶୀ ହାତ" ରହିଛି ବୋଲି କହି ବୁଲୁଥିଲେ । ଲୋକ ତାଙ୍କ କଥା ଶୁଣି ବିଦ୍ରୁପ କରିଥିଲେ ।

ତାଙ୍କ ଜୀବନ ପ୍ରତି ବିପଦର ଖୁବ ଆଶଙ୍କା ରହିଥିଲା । ଆଶଙ୍କାର ପରିମାଣ ଦିନକୁ ଦିନ ବୃଦ୍ଧି ପାଉଥିଲା । ତା' ସତ୍ତ୍ୱେ ଯେତେବେଳେ ଆର୍. ଭେଙ୍କଟରମଣ, ଇନ୍ଦିରାଙ୍କର ପୂର୍ବତନ ପ୍ରତିରକ୍ଷା ମନ୍ତ୍ରୀ, ସେତେବେଳର ଉପ - ରାଷ୍ଟ୍ରପତି, ପରବର୍ତ୍ତୀ ସମୟର ରାଷ୍ଟ୍ରପତି ଏବଂ ଆଜି ୯୬ ବର୍ଷ ବୟସରେ ସୁଦ୍ଧା ଯିଏ ସୁସ୍ଥ ସବଳ ଭାବେ ଆମ ଗହଣରେ ବିଦ୍ୟମାନ, ତାଙ୍କର (ଇନ୍ଦିରାଙ୍କର) ସୁରକ୍ଷା ଦାୟିତ୍ୱ ସେନାକୁ ହସ୍ତାନ୍ତର କରିବା ପାଇଁ ପ୍ରସ୍ତାବ ଦେଲେ, ସେ ତତ୍କ୍ଷଣାତ୍ ପ୍ରସ୍ତାବଟିକୁ ଅଗ୍ରାହ୍ୟ କରିଦେଲେ । ଯେତେବେଳେ ପ୍ରସ୍ତାବ ଦିଆଗଲା ଯେ ଶିଖମାନଙ୍କୁ ପ୍ରଧାନମନ୍ତ୍ରୀ ସୁରକ୍ଷା ବଳୟ ମଧ୍ୟରୁ ପ୍ରତ୍ୟାହାର କରି ନିଆଯିବା ଉଚିତ, ସେ ଓଲଟା ପଚାରିଲେ, "ଆମେ କ'ଣ ଧର୍ମନିରପେକ୍ଷ ନୁହନ୍ତି ?" ତାଙ୍କର ଅତି ବିଶ୍ୱସ୍ତ ସୁରକ୍ଷା ଉପଦେଷ୍ଟା ଆର.ଏନ. କାଓ ଚିନ୍ତାକଲେ, ଘରର ରହଣି ସ୍ଥଳ ଯେହେତୁ ଅଯଥା ବାହାରକୁ ଦେଖାଯାଉଛି, ସାମନା ବଗିଚାରେ ସାମାନ୍ୟ ଗଛଲତା ଲଗେଇ ତାକୁ କିଛି ମାତ୍ରାରେ ଆଚ୍ଛାଦିତ କରାଯାଇପାରେ । ଏହାକୁ ମଧ୍ୟ ଇନ୍ଦିରା ଅସ୍ୱୀକାର କରିଦେଲେ । କାଓ, ତାଙ୍କ ନିଜ ତରଫରୁ, ସୁରକ୍ଷା ବଳୟ ଭିତରେ ଏକା ଜାଗାରେ ଏକା ସମୟରେ ଦୁଇଜଣ ଶିଖଙ୍କୁ ଡ୍ୟୁଟି ନଦେବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ତା' ସତ୍ତ୍ୱେ ଜଣେ ହତ୍ୟାକାରୀ ସତୱନ୍ତ ସିଂକୁ ଅନ୍ୟତମ ହତ୍ୟାକାରୀ ବିଅନ୍ତ ସିଂ ସାଙ୍ଗରେ ମିଶି ଡ୍ୟୁଟି କରିବା ସକାଶେ ଅନୁମତି ମିଳିବାରେ କୌଣସି କଷ୍ଟ ହେଲା ନାହିଁ ।

୧୯୮୪ ମସିହା ଅକ୍ଟୋବର ମାସ ସାରା ତାଙ୍କ ମୁଣ୍ଡରେ ହିଂସାତ୍ମକ ମୃତ୍ୟୁକଥା ଲାଗି ରହିଥିଲା । ଅନ୍ୟମାନଙ୍କ ଭିତରେ, ଏକଥା ସେ ଜିଡୁ କୃଷ୍ଣମୂର୍ତ୍ତିଙ୍କୁ କହିଥିଲେ । ଶ୍ରୀନଗରକୁ ଲାଗି ଉଚ୍ଚ ପର୍ବତମାଳାରେ ପୀଠ ସ୍ଥାପନ କରି ରହିଥିବା କାଶ୍ମୀରୀ ସାଧୁ ଲକ୍ଷ୍ମଣଜୁଙ୍କୁ ଭେଟିବା ପାଇଁ ଯାଇଥିବା ବେଳେ ବି ସେ ଏହି ଆଶଙ୍କା କଥା ଅଭିବ୍ୟକ୍ତ କରିଥିଲେ । ହତ୍ୟାର ମାତ୍ର ଦୁଇଦିନ ପୂର୍ବରୁ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରଠାରେ ଦେଇଥିବା ତାଙ୍କର ବହୁ ସ୍ମରଣୀୟ ବକ୍ତବ୍ୟରେ ମଧ୍ୟ ଏହା ପ୍ରତିଫଳିତ ହୋଇଥିଲା । ସେ କହିଥିଲେ, "ମୋର ମୃତ୍ୟୁ ପରେ, ମୋର ପ୍ରତିଟି ରକ୍ତବିନ୍ଦୁ ରାଷ୍ଟ୍ରକୁ ଶକ୍ତି ପ୍ରଦାନ କରିବ, ସଂହତିବଦ୍ଧ ଭାରତକୁ ବଳଶାଳୀ କରିବ ।" ସେହି ରାତିରେ ଭୋଜନ ବେଳେ ତାଙ୍କ ଅତିଥି ସତ୍କାରକ ରାଜ୍ୟପାଳ ବିଶ୍ୱମ୍ଭରନାଥ ପାଣ୍ଡେଙ୍କୁ କହିଲେ, "ନିଜ ମା, ବାପା ଏବଂ ଜେଜେବାପାଙ୍କୁ ବିଛଣାରେ କଷ୍ଟପାଇ ମରିବାର ଦେଖି, ସେ "ଚାଲବୁଲ କରୁଥିବା" ଅବସ୍ଥାରେ ଥାଇ ମୃତ୍ୟୁବରଣ କରିବାକୁ ଇଚ୍ଛା ପ୍ରକାଶ କରନ୍ତି । ତା'ପରେ , ଓଡ଼ିଶା

ଗସ୍ତକୁ ଅଧାରେ ରଖି ସେ ଦିଲ୍ଲୀ ଫେରିଆସିଲେ, କାରଣ ତାଙ୍କର ନାତିନାତୁଣୀ କୌଣସି ଏକ କାର ଦୁର୍ଘଟଣାରେ ଜଡ଼ିତ ବୋଲି ତାଙ୍କ ପାଖରେ ଖବର ଆସି ପହଞ୍ଚିଲା । ତାଙ୍କର ସନ୍ଦେହ ହେଲା, ହୁଏତ ଆତଙ୍କବାଦୀମାନେ ପିଲାଙ୍କ ଉପରେ ଆକ୍ରମଣ କରିଥାଇ ପାରନ୍ତି ।

ଅମାପ ଦୁଃଖ କାହାଣୀର ବାକି ଭାଗଟିକୁ ଲୋକ ଏତେ ମାତ୍ରାରେ ଜାଣନ୍ତି ଯେ, ବିସ୍ତାରରେ ତାକୁ ବର୍ଣ୍ଣନା କରିବାର କୌଣସି ଆବଶ୍ୟକତା ନାହିଁ । ହୁଏତ ଏତିକି କହିଲେ ଏହି ପରିପ୍ରେକ୍ଷୀରେ ଯଥେଷ୍ଟ ହେବ ଯେ ଆମ ଭିତରେ କନିଷ୍ଠତମ ବ୍ୟକ୍ତି ମଧ୍ୟ ଯେତେ ଅଧିକ ବର୍ଷ ଧରି ବଞ୍ଚିଲେ ସୁଦ୍ଧା ତାଙ୍କ ପରି ଆଉ ଜଣକ ସହ କେବେ ସାକ୍ଷାତ ହେବା ନୋହିବ ।

——————— ୧୧ ———————



# ଉପସଂହାର

ଇନ୍ଦିରା ଗାନ୍ଧିଙ୍କର ଜୀବନ ବୃତ୍ତାନ୍ତ ଉନ୍ମୋଚନ କରିବାକୁ ମୋର ସାଧ ମତେ ମୁଁ ପୁସ୍ତକଟିରେ ପ୍ରୟାସ କରିଛି । ଦୁଃଖକଷ୍ଟର ସମୟ ଭିତରେ ଇନ୍ଦିରା ନିଜେ ଗଢ଼ି ହୋଇଛନ୍ତି, ସାଙ୍ଗରେ ନୂଆକରି ଗଢ଼ିବାକୁ ମଧ୍ୟ ପ୍ରୟାସ କରିଛନ୍ତି । ତାଙ୍କର ବହୁବିଧ ବ୍ୟକ୍ତିତ୍ୱ ଏବଂ ସ୍ୱକୀୟ ଗୁଣ ଓ ବଦଗୁଣର ମିଶ୍ରଣକୁ, ଯେଉଁଥିରେ ନିଶ୍ଚିତ ରୂପେ ବଦ୍‌ଗୁଣର ମାତ୍ରା ଜଣା ହେବ, ସଂଯୋଜିତ କରିବା ନିମିତ୍ତ ଶେଷରେ ଏକ ସଂକ୍ଷିପ୍ତ ଉପସଂହାରର ଆବଶ୍ୟକତା ରହିଛି ।

ସେଣ୍ଟ ଅଗଷ୍ଟାଇନଙ୍କ ଭାଷାରେ, ଦୁନିଆରେ କେହି କେବେ ନିଷ୍ପାପ ଶାସନ ଦେଇପାରି ନାହାନ୍ତି । ସାଙ୍ଗରେ ଏକଥା ମଧ୍ୟ କୁହାଯାଇପାରେ ଯେ, କେହି ଦୋଷ, ତ୍ରୁଟି ବା ଦୁର୍ବଳତାର ଉର୍ଦ୍ଧ୍ୱରେ ରହି ପାରିବେ ନାହିଁ । ଇନ୍ଦିରାଙ୍କଠାରେ ଏହି ତିନୋଟି ଯାକ (ଅବ) ଗୁଣ କିଛି କିଛି ମାତ୍ରାରେ ରହିଥିଲା । ଜଣେ ନାରୀ ଭାବରେ ତାଙ୍କଠାରେ ସମ୍ବେଦନା ଓ ମାନବୀୟତାର ଅଭାବ ନଥିଲା ; ଅଥଚ ତା' ସାଙ୍ଗରେ ଗର୍ବ ଅହଙ୍କାର ଏବଂ ନିଷ୍ଠୁରତା ବି ଜଣା ନଥିଲା । ସେ ଜାତୀୟ ହେଉ ବା ବ୍ୟକ୍ତିଗତ, ଲକ୍ଷ୍ୟ ହାସଲ କରିବା ସକାଶେ ପନ୍ଥା ତାଙ୍କର କିଛି ବି ହୋଇପାରେ । ଆବଶ୍ୟକତା ପଡ଼ିଲେ ସତ୍ୟକୁ ବି ସେ ଉପେକ୍ଷା କରୁଥିଲେ । ସେ ଜଘନ୍ୟ ଭୁଲ କରିଛନ୍ତି ଏବଂ ତା' ପାଇଁ ଘନ୍ୟ ଭାବରେ ପାଉଣା ବି ପାଇଛନ୍ତି । ତା' ସତ୍ତ୍ୱେ, ତାଙ୍କୁ ବିଚାର କଲାବେଳେ, ସେ କାହା ବିରୁଦ୍ଧରେ ଲଢୁଥିଲେ, ତାକୁ ବିଶେଷ ମହତ୍ତ୍ୱ ଦେବା କଥା ନୁହେଁ । ସେ ଯେଉଁ ସମସ୍ୟା ସହ ମୁକାବିଲା କରୁଥିଲେ, ତାହା ହିମାଳୟ ଠାରୁ ବି ବଡ଼, ଏଥିରେ କୌଣସି ଅତିଶୟୋକ୍ତି ନାହିଁ । ସମସ୍ୟା ମଧ୍ୟରେ ବିରୋଧୀ ଦଳର ଅନମନୀୟତା ଏବଂ ସାଧୁପୁରୁଷ ଜେପିଙ୍କର ସେନାବାହିନୀକୁ ବିଦ୍ରୋହ ପାଇଁ ପ୍ରୋତ୍ସାହନ ଦେବା ସାମିଲ ଥିଲା । ତା' ସତ୍ତ୍ୱେ ଦୀର୍ଘ ଦୁଇ ଦଶନ୍ଧି ପର୍ଯ୍ୟନ୍ତ ସେ ଭାରତୀୟ ପରିଦୃଶ୍ୟରେ ଖୁଣ୍ଟ ପରି ବିଦ୍ୟମାନ ରହିଲେ । ତାଙ୍କର କ୍ଷମତାସୀନ କିମ୍ବା କ୍ଷମତାଚ୍ୟୁତ ହେବା ଦ୍ୱାରା ପରିଦୃଶ୍ୟରେ କିଛି ପାର୍ଥକ୍ୟ ପଡ଼ିଲା ନାହିଁ । ନା ଶତ୍ରୁ, ନା ମିତ୍ର - କେହି ସମସାମୟିକ ତାଙ୍କର ସୁଉଚ୍ଚ ବ୍ୟକ୍ତିତ୍ୱ ପାଖାପାଖି ବି ହୋଇପାରି ନଥିଲେ ।

ତା' ଛଡ଼ା, ଦେଶରେ ତାଙ୍କୁ ନେଇ ଘୋର ବୈଚାରିକ ଭିନ୍ନତା ରହିଥିଲା । ହେଲେ ତାଙ୍କର ପ୍ରଶଂସା ବା ନିନ୍ଦାକୁ ଭ୍ରୁକ୍ଷେପ ନକରି ତୃତୀୟ ବିଶ୍ୱ ତାଙ୍କ କଥାକୁ ଧ୍ୟାନ ସହକାରେ

ଶୁଣୁଥିଲା ; ପୁଣି ପ୍ରଥମ ଓ ଦ୍ୱିତୀୟ ବିଶ୍ୱ ତାଙ୍କ କଥାକୁ ସମ୍ମାନ ଦେଉଥିଲା । ତାଙ୍କର କେତେଗୋଟି ଚରିତ୍ର ଜୀବନ କାଳ ମଧ୍ୟରେ ଏବଂ ମୃତ୍ୟୁର ଅନେକ ବର୍ଷ ପର୍ଯ୍ୟନ୍ତ ଅବୁଝା ରହିଯାଇଥିଲା । ଉଦାହରଣସ୍ୱରୂପ, ପୂର୍ବରୁ ମୁଁ ତାଙ୍କର ଯେଉଁ ଜୀବନୀ ଲେଖିଥିଲି, ସେଥିରେ ଉଲ୍ଲେଖ ରହିଛି ଯେ ଇନ୍ଦିରାଙ୍କର ଔପଚାରିକ ଶିକ୍ଷା କେବଳ ସାମାନ୍ୟ ନଥିଲା, ସାଙ୍ଗରେ ପୁସ୍ତକ ବା ତତ୍ତ୍ୱ-ବିଚାର ଆଦିକୁ ନେଇ ତାଙ୍କଠାରେ ବିଶେଷ ଆଗ୍ରହ ବି ଦେଖାଯାଉ ନଥିଲା । ସ୍ୱାଭାବିକ ପ୍ରବୃତ୍ତିର ନିର୍ଦ୍ଦେଶ ବଶବର୍ତ୍ତୀ ହୋଇ ସାଧାରଣତଃ ସେ କାର୍ଯ୍ୟମାନ ସମ୍ପାଦନ କରୁଥିଲେ । ସାଧାରଣ ସ୍ତରରେ ପ୍ରଚଳିତ ମତକୁ ଆଧାର କରି ମୁଁ ଏଭଳି ଏକ ଧାରଣାର ବଶବର୍ତ୍ତୀ ହୋଇଥିଲି । ମାତ୍ର ୧୯୯୦ ମସିହାରେ "ଟୁ ଏଲୋନ, ଟୁ ଟୁଗେଦର" ପୁସ୍ତକଟିର ପ୍ରକାଶନ ପରେ ମୋର ଧାରଣା ଭ୍ରାନ୍ତ ବୋଲି ମୁଁ ନିଶ୍ଚିତ ହୋଇଥିଲି । ସୋନିଆ ଗାନ୍ଧି ଦ୍ୱାରା ସମ୍ପାଦିତ ଏହି ପୁସ୍ତକଟି ହେଉଛି ଇନ୍ଦିରା ଏବଂ ତାଙ୍କ ପିତାଙ୍କ ମଧ୍ୟରେ ୧୯୨୨ ରୁ ୧୯୬୪ ମସିହା ମଧ୍ୟରେ ବିନିମୟ ହୋଇଥିବା ଚିଠିଗୁଡ଼ିକର ଏକ ସଂଗ୍ରହ । ପୁସ୍ତକଟିରେ ଏକଥା ଆବିଷ୍କାର କରି ମୁଁ ଆଶ୍ଚର୍ଯ୍ୟ ହେଲି ଯେ, ଛାତ୍ର ଜୀବନରୁ ଆରମ୍ଭ କରି ମୃତ୍ୟୁ ପର୍ଯ୍ୟନ୍ତ ଇନ୍ଦିରା ଖୁବ୍ ଅଧ୍ୟବସାୟୀ ଥିଲେ । ବାପ ଓ ଝିଅ ମଧ୍ୟରେ କେବଳ ପଠିତ ପୁସ୍ତକର ଶୀର୍ଷକକୁ ନେଇ ଆଲୋଚନା ସୀମିତ ରହୁ ନଥିଲା, ତା' ସାଙ୍ଗରେ ପଢ଼ି ସାରିଥିବା ପ୍ରତ୍ୟେକ ପୁସ୍ତକର ବିଷୟବସ୍ତୁକୁ ନେଇ ନେହେରୁଙ୍କ ସହ ଇନ୍ଦିରା ବିଚାର ବିନିମୟ କରୁଥିଲେ । ଅନେକ ଥର ସେ "ପାପୁଙ୍କ" ମତ ସହ ନିଜର ଅସହମତି ମଧ୍ୟ ପ୍ରକାଶ କରୁଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେବା ଆଗରୁ ହିଟଲର ଓ ନାଜିମାନଙ୍କର କଳାଛାଇ ଯେମିତି ୟୁରୋପକୁ ବିପର୍ଯ୍ୟୟ ଆଡ଼କୁ ଟାଣି ନେଉଥିଲା, ସେ ସମ୍ପର୍କରେ ସେ (ଇନ୍ଦିରା) ନିୟମିତ ରୂପରେ ମନ୍ତବ୍ୟ ପ୍ରଦାନ କରୁଥିଲେ । ଇନ୍ଦିରା ଗାନ୍ଧି ନିଜ ବକ୍ତବ୍ୟର ଭାଷା ଓ ବିଷୟବସ୍ତୁକୁ ସଂଶୋଧନ, ପୁନର୍ଲିଖନ ଏବଂ ସୁସଂଯତ କରିବାରେ ଯେଉଁ ପରିଶ୍ରମ କରୁଥିଲେ, ତାକୁ ବିଷୟବସ୍ତୁ କରି ତାଙ୍କର ମୁଖ୍ୟ ବକ୍ତବ୍ୟ ଲେଖକ ଶାରଦା ପ୍ରସାଦ ସମ୍ଭବତଃ ଏକ ପାଣ୍ଡୁଲିପି ତିଆରି କରିଦେବେ । ଅତି ଗମ୍ଭୀରତାର ସହ ଥରେ ସେ ମତେ କହିଲେ, ଇନ୍ଦିରା ଗାନ୍ଧିଙ୍କୁ ଯଦି "ବିଶ୍ୱର ସର୍ବୋତ୍କୃଷ୍ଟ ସହ - ସଂପାଦକ" ବୋଲି କୁହାଯାଏ,ତେବେ ହୁଏତ ଅତ୍ୟୁକ୍ତି ହେବ ନାହିଁ ।

ଦ୍ୱିତୀୟତଃ, ଇଚ୍ଛାକଲେ ଅବଶ୍ୟ ଇନ୍ଦିରା ନୀରବ ଓ ଏକାକୀ ରହିଯାଆନ୍ତି, ମାତ୍ର ତାଙ୍କର ବ୍ୟକ୍ତିତ୍ୱ "କର୍କଶ", "କଠୋର" କିମ୍ବା "ଭୟୋଦ୍ଦିପକ" ଥିଲା ବୋଲି ରହିଥିବା ଧାରଣା ସମ୍ପୂର୍ଣ୍ଣ ଭ୍ରମାତ୍ମକ ମନେହୁଏ । ତାଙ୍କର ବ୍ୟକ୍ତିତ୍ୱରୁ ଏକ ଆଭା ନିସୃତ ହୁଏ । ତା' ଛଡ଼ା ସେ ଥିଲେ ମଜାଗପ କରିବାରେ ଜଣେ ଓସ୍ତାଦ ବ୍ୟକ୍ତି । ମଜା କରନ୍ତି ଯେମିତି, ତାକୁ ଉପଭୋଗ ବି କରନ୍ତି ସେମିତି । ମତେ ଜଣାଥିବା ତାଙ୍କର ହସକଥା ସବୁକୁ ଯଦି ଏକତ୍ରିତ କରାଯାଏ, ହୁଏତ ଜାଗା ଅଣ୍ଟିବନି । ତେଣୁ, ଅଳ୍ପ କେତୋଟି ଉଦାହରଣ ଦେବା ଯଥେଷ୍ଟ ହେବ । ଏହି ଅଳ୍ପଦିନ ତଳେ ବୈଦେଶିକ ମନ୍ତ୍ରୀ ପଦବୀରେ ରହିଥିବା କେ. ନଟବର ସିଂ ଥିଲେ ପେଷାରେ

ଜଣେ କୂଟନୀତିଜ୍ଞ । ଇନ୍ଦିରା ଗାନ୍ଧିଙ୍କର ସେ ଗଭୀର ବିଶ୍ୱାସ ଅର୍ଜନ କରିପାରିଥିଲେ । ଇନ୍ଦିରାଙ୍କ ହତ୍ୟାର କିଛି ସମୟ ପୂର୍ବରୁ ଭାରତୀୟ ବୈଦେଶିକ ସେବାରୁ ଇସ୍ତଫା ଦେଇ ରାଜନୀତି କରିବା ସକାଶେ ସେ ଇନ୍ଦିରା କଂଗ୍ରେସ ଦଳରେ ଯୋଗଦେଲେ । ସେତେବେଳେ ସେ ଇନ୍ଦିରାଙ୍କୁ କହିଲେ, ରାଜନୀତି ପାଇଁ ଦରକାର ଖଦି - କୁର୍ତ୍ତା ପାଇଜାମା, ନେହେରୁ ଜାକେଟ ଆଦି ଆଣିବାକୁ ସେ ନିଜ ସହରକୁ ଯିବେ । ଇନ୍ଦିରା ସଂକ୍ଷିପ୍ତ ଉତ୍ତର ଦେଲେ "ଏଠି ତା' ଠାରୁ ବେଶି ଦରକାର ମୋଟା ଚମଡ଼ାର" । ନିଜର ଜଣେ କ୍ୟାବିନେଟ ମନ୍ତ୍ରୀଙ୍କ ସମ୍ବନ୍ଧରେ ସେ ମନ୍ତବ୍ୟ ଦିଅନ୍ତି, "ଭଦ୍ରବ୍ୟକ୍ତି ଯେତେବେଳେ କାମ କରିବା କଥା, ସେତେବେଳେ ବଡ଼ ବଡ଼ କଥା କହନ୍ତି ଏବଂ ଯେତେବେଳେ ବଡ଼ କଥାର ଦରକାର କେତେ ଯେ ଛୋଟଲୋକି କଥା କହନ୍ତି ।"

୧୯୭୭ ମସିହାରୁ ୧୯୮୮ ମସିହା ପର୍ଯ୍ୟନ୍ତ ଜେନେରାଲ ଜିଆ ଉଲ ହକ ପାକିସ୍ତାନର ମିଲିଟାରୀ ଶାସକ ଭାବରେ ରହିଥିଲେ । ୧୯୮୦ ଏପ୍ରିଲ ମାସରେ ଜିମ୍ବାୱେର ସ୍ୱାଧୀନତା ଉତ୍ସବ ଅବସରରେ ହାରାରେ ତାଙ୍କର ପ୍ରଥମ ଥର ପାଇଁ ଇନ୍ଦିରା ଗାନ୍ଧିଙ୍କ ସହିତ ସାକ୍ଷାତ ହେଲା । ତାଙ୍କ ଦୁର୍ଭାଗ୍ୟକୁ ସେଦିନ ସକାଳେ ସମ୍ବାଦପତ୍ରମାନେ ଅତୀତରେ ସେ ଇନ୍ଦିରାଙ୍କ ସମ୍ପର୍କରେ ଦେଇଥିବା କେତେକ କଟୁ ମନ୍ତବ୍ୟକୁ ପୁନଃପ୍ରକାଶିତ କରିଥାନ୍ତି । ଭଦ୍ରୋଚିତ ବ୍ୟବହାରରେ ନିପୁଣ ଜିଆ କଥାବାର୍ତ୍ତା ଆରମ୍ଭରେ ମନ୍ତବ୍ୟ ଦେଲେ, "ମ୍ୟାଡ଼ାମ୍ ସମ୍ବାଦପତ୍ରଗୁଡ଼ିକ ଯାହା ଲେଖନ୍ତି, ସର୍ବଦା ତାହା ସତ ହୋଇ ନଥାଏ ।" ଉତ୍ତରରେ ଇନ୍ଦିରା କହିଲେ, "ହଁ, ତା' ତ ସତ । ସେମାନେ ଲେଖୁନାହାନ୍ତି କି ଆପଣ ଜଣେ ଗାଣତନ୍ତ୍ରିକ ବ୍ୟକ୍ତି ମୁଁ ଏକଛତ୍ରବାଦୀ ବୋଲି ?"

ଏହି ଘଟଣାର କିଛିଦିନ ପୂର୍ବରୁ ପାକିସ୍ତାନର ଜଣେ ବିଶିଷ୍ଟ ସାମ୍ବାଦିକ ଏବଂ ଜୁଲି ଫିକର ଅଲି ଭୁଟ୍ଟୋଙ୍କର ପ୍ରେସ୍ ସେକ୍ରେଟେରୀ ଭାବେ କାର୍ଯ୍ୟ କରିଥିବା ଖାଲିଦ ହାସାନ ଦିଲ୍ଲୀରେ ଇନ୍ଦିରାଙ୍କୁ ପଚାରିଲେ, ମ୍ୟାଡ଼ାମ୍, ଆପଣ ଏତେ ଗୌରବର ସହିତ କ୍ଷମତାକୁ ପୁଣି ପ୍ରତ୍ୟାବର୍ତ୍ତନ କଲେ କେମିତି ? ଇନ୍ଦିରା ଉତ୍ତରଦେଲେ, "କାରଣ ମତେ ଫାଶୀ ଦିଆଯାଇ ନଥିଲା ।

ଏ କଥା ଉଲ୍ଲେଖନୀୟ ଯେ ଯଦିଓ ଇନ୍ଦିରା ନାରୀ ବିମୁକ୍ତି କଥା କହନ୍ତି, ସେ ଯେ କୌଣସି ପଦବୀରେ ରହିଲେ ସୁଦ୍ଧା କେବେ ତା ସାଙ୍ଗରେ ଲିଙ୍ଗଗତ ପ୍ରଶ୍ନକୁ ଯୋଡ଼ନ୍ତି ନାହିଁ । ୧୯୬୬ ମସିହା ଜାନୁଆରୀରେ ଯେତେବେଳେ ସାମ୍ବାଦିକମାନେ ଭାରତର ପ୍ରଥମ ମହିଳା ପ୍ରଧାନମନ୍ତ୍ରୀ ଭାବରେ ତାଙ୍କର ଅନୁଭବ କ'ଣ ବୋଲି ପ୍ରଶ୍ନ କଲେ, ସେ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ, "ମୁଁ ହେଲି ଗୋଟାଏ ଦାୟିତ୍ୱ ବହନ କରିଥିବା ଜଣେ ବ୍ୟକ୍ତି ମାତ୍ର । ମୋର ଦାୟିତ୍ୱ ସାଙ୍ଗରେ ମହିଳା ବା ପୁରୁଷ ହେବାର କୌଣସି ସମ୍ପର୍କ ନାହିଁ ।" ପୂର୍ବରୁ ମଧ୍ୟ ଯେତେବେଳେ ତାଙ୍କୁ "ଲାଲବାହାଦୁର ଶାସ୍ତ୍ରୀ ମନ୍ତ୍ରୀମଣ୍ଡଳର ଏକମାତ୍ର ପୁରୁଷ" ବୋଲି କୁହାଯାଉଥିଲା, ତାଙ୍କୁ ସେ ପସନ୍ଦ କରୁନଥିଲେ ।

ମାର୍ଚ୍ଚ ୧୯୮୦ ମସିହାରେ ପ୍ରଧାନମନ୍ତ୍ରୀ ଭାବରେ ତାଙ୍କର ପ୍ରଥମ ଯୁକ୍ତରାଷ୍ଟ୍ର ଆମେରିକା

ଗସ୍ତ ସମୟରେ ଆଉ ଏକ ସେଭଳିଆ ପ୍ରସିଦ୍ଧ ଘଟଣା ଘଟିଥିଲା । ଭର୍ଜିନିଆ ପ୍ରଦେଶର ପ୍ରାଚୀନ ନଗରୀ ୱିଲିଅମ୍‌ସବର୍ଗରେ ପହଞ୍ଚିଥାନ୍ତି । ପରଦିନ ସକାଳେ ଏକ ଔପଚାରିକ ସମ୍ବର୍ଦ୍ଧନା ସଭାରେ ଯୋଗଦେବା ସକାଶେ ହେଲିକେପ୍ଟରରେ ସେଠାରୁ ହ୍ୱାଇଟ ହାଉସ୍‌କୁ ଯିବାର କାର୍ଯ୍ୟକ୍ରମ ରହିଥାଏ । ଆମେରିକାରେ ସେତେବେଳେ ଭାରତର ରାଷ୍ଟ୍ରଦୂତ ଥିବା ବି.କେ. ନେହେରୁ ରାତିରେ ଡେ଼ରିରେ ଶୁଅନ୍ତି । ହ୍ୱାଇଟ ହାଉସରୁ ଆସୁଥିବା ଫୋନର ଘନଘନ ଘଣ୍ଟିରେ ଅତି ସକାଳୁ ତାଙ୍କର ନିଦ ଭାଙ୍ଗିଗଲା । ରାଷ୍ଟ୍ରପତି ଜନସନ ଜାଣିବାକୁ ଚାହାନ୍ତି, ଭାରତର ପ୍ରଧାନମନ୍ତ୍ରୀଙ୍କୁ କେମିତି ସମ୍ବୋଧନ କରାଯିବ । "ମ୍ୟାଡ଼ାମ୍", ନା "ପ୍ରଧାନମନ୍ତ୍ରୀ" ନା ପୁଣି ତାଙ୍କ ନାଁରେ ? ବି.କେ. ନେହେରୁ ଉତ୍ତରଦେଲେ, ପ୍ରଧାନମନ୍ତ୍ରୀଙ୍କୁ ପଚାରି ସେ ଜଣାଇବେ । ଏକଥା ଶୁଣି ଇନ୍ଦିରା କହିଲେ, ଜନସନଙ୍କୁ କୁହ, ତାଙ୍କର ଯେମିତି ଇଚ୍ଛା, ସେ ସେମିତି ସମ୍ବୋଧନ କରିପାରନ୍ତି । ତାଙ୍କର ଦାଦାପୁଅ ଭାଇ ଯେତେବେଳେ ଯିବାକୁ ବାହାରିଲେ, ସେ ପୁଣି କହିଲେ, "ମୋର ମନ୍ତ୍ରୀମଣ୍ଡଳର କେତେକ ସହକର୍ମୀ ମତେ 'ସାର' ବୋଲି ସମ୍ବୋଧନ କରନ୍ତି । ସେ ଇଚ୍ଛାକଲେ ସେମିତି ବି ସମ୍ବୋଧନ କରିପାରନ୍ତି ।" ପଶ୍ଚିମ ଜର୍ମାନୀର ଚାନ୍‌ସେଲର ହେଲମଟ ସ୍ମିଟ ଇନ୍ଦିରାଙ୍କ ମୃତ୍ୟୁର ବର୍ଷେ ପରେ ଆଉ କ'ଣ ତୁଳନାଟାରେ କହିଥିଲେ, ସେ ଥିଲେ ଜଣେ "ଜୁନ ପଲିଟିକନ", ଅର୍ଥାତ୍ ଏମିତି ଏକ ରାଜନୈତିକ ଜୀବ ଯାହାର କୌଣସି ଲିଙ୍ଗ ନଥାଏ ।

## ଅନ୍ୟମାନଙ୍କ ଦୃଷ୍ଟିରେ ଇନ୍ଦିରା

ଇନ୍ଦିରା ଗାନ୍ଧିଙ୍କର ହତ୍ୟାପରେ, ତାଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳିର ଏକ ବିଶାଳ ପାହାଡ଼ ଛିଡ଼ା ହୋଇଗଲା । ତାଙ୍କ ଜୀବନର ଶେଷ କାଳରେ ଯେଉଁମାନେ ତାଙ୍କର କଟୁ ସମାଲୋଚନା କରୁଥିଲେ, ସେମାନେ ମଧ୍ୟ ଶ୍ରଦ୍ଧାସୁମନ ଅର୍ପଣ କରିବାରେ ପଶ୍ଚାତପଦ ହୋଇନଥିଲେ । ବର୍ଷେ ଉତ୍ତାରୁ ତାଙ୍କ ସ୍ମୃତିରେ ଏକ ସୁନ୍ଦର ବହି ପ୍ରକାଶିତ ହେଲା, ଯେଉଁଥିରେ ବିଶ୍ୱର ଅନେକ ରାଷ୍ଟ୍ରପୁରୁଷ, ଐତିହାସିକ, ଲେଖକ, ଶିଳ୍ପୀ ଏବଂ ବ୍ୟକ୍ତିଗତ ବନ୍ଧୁ ଲେଖିଥିବା ନିବନ୍ଧଗୁଡ଼ିକୁ ସମ୍ମିଳିତ କରାଗଲା । ଲେଖକଙ୍କ ମଧ୍ୟରେ ସାମିଲ ଥିଲେ ଇନ୍ଦିରାଙ୍କର ଅକ୍ସଫୋର୍ଡ଼ ମିତ୍ର ଆଇରିଶ ମର୍ଡ଼କ, ଯିଏ ୨୪ ଜାନୁଆରୀ ୧୯୬୬ରେ "ପ୍ରଥମ ସମରଭିଲ ପ୍ରଧାନମନ୍ତ୍ରୀଙ୍କ" ଖୁସିରେ ତାଙ୍କ ସାଙ୍ଗେ ମିଶି ଟୋଷ୍ଟ ଖାଇଥିଲେ । ବକ୍ତବ୍ୟଗୁଡ଼ିକର ପୁନରୁଦ୍ଧାରର କୌଣସି ଆବଶ୍ୟକତା ନାହିଁ, କାରଣ ସେଗୁଡ଼ିକ ପ୍ରକାଶିତ । ମାତ୍ର ପରେ ମିଳିଥିବା କେତେ ଗୋଟି ଶ୍ରଦ୍ଧାଞ୍ଜଳି ନିଶ୍ଚିତ ରୂପେ ଆମର ଦୃଷ୍ଟି ଆକର୍ଷଣ କରନ୍ତି ।

ପ୍ରଥମଟି ହେଲା ଅନ୍ୟ ଜଣେ ମହିଳା ପ୍ରଧାନମନ୍ତ୍ରୀ ବେନଜିର ଭୁଟ୍ଟୋଙ୍କର ଶ୍ରଦ୍ଧାଞ୍ଜଳି । ବର୍ତ୍ତମାନ ଅବଶ୍ୟ ସେ ପଦଚ୍ୟୁତ ଏବଂ ଆତ୍ମ - ନିର୍ବାସିତା । ଜଣେ କିଶୋରୀ ଭାବରେ ବାପାଙ୍କ ସାଙ୍ଗରେ ସେ ସିମଲା ଆସିଥିଲେ । ସିମଲା ଚୁକ୍ତି ବୈଠକ ସମୟରେ ସେ ଗଭୀର ଭାବରେ ଇନ୍ଦିରାଙ୍କ ଗତିବିଧି ଅନୁଧ୍ୟାନ କରିଥିଲେ । ଷୋହଳ ବର୍ଷ ପରେ ଏହି "ପ୍ରାଚ୍ୟର ଦୁହିତା"

ଜଣକ ଯେତେବେଳେ ଆତ୍ମଜୀବନୀ ଲେଖିଲେ, ସେଥିରେ ସେ ଇନ୍ଦିରାଙ୍କୁ ଜଣେ "ସରୁ ଓ କ୍ଷୀଣ" ଆକୃତି ବିଶିଷ୍ଟ ତଥା "ଶୀଳତାର ଏକାକୀତ୍ୱରେ" ଓତଃପ୍ରୋତଃ ଜଣେ "ରେଶମ ଓ ଇସ୍ପାତର ମହିଳା" ବୋଲି ବର୍ଣ୍ଣନା କରିଛନ୍ତି । ଶ୍ରୀମତୀ ଭୁଟ୍ଟୋଙ୍କ ଭାଷାରେ "କେଉଁଠୁ ଆସେ ଯେ ତାଙ୍କର ବହୁ ଚର୍ଚ୍ଚିତ କଠୋରତା ?" ତାର ସତର ବର୍ଷ ପରେ ଖାଲିଦ ହାସନଙ୍କ ସହାୟତାରେ ମୁଁ ଯେତେବେଳେ ପୁଣି ତାଙ୍କୁ ଇ-ମେଲରେ ସାକ୍ଷାତ ଦେଲି, ଇନ୍ଦିରାଙ୍କ ସମ୍ପର୍କରେ ଅତି ବିସ୍ତାରରେ ବେନଜିର ଆଉ ଅନେକ କଥା କହିଲେ ।

ତାଙ୍କ କଥାର ସାରମର୍ମ ହେଲା, "ଦେଖିବାକୁ ସେ (ଇନ୍ଦିରା) 'ସରୁ ଓ କ୍ଷୀଣ', କିନ୍ତୁ ନିଜ ନେତୃତ୍ୱ ଓ କାର୍ଯ୍ୟାବଳୀ ଦ୍ୱାରା ସେ ଇତିହାସର ପ୍ରେକ୍ଷାପଟକୁ ଅତି ମାତ୍ରାରେ ମଣ୍ଡିତ କରୁଥିଲେ । ସେ କେତୋଟି ଭୁଲ କାମ କରିଛନ୍ତି, ତନ୍ମଧ୍ୟରେ ଇମର୍ଜେନ୍‌ସି ହେଲା ଜଘନ୍ୟ ଭୁଲ, ଯଦ୍ୱାରା ଲୋକଙ୍କୁ ଅନେକ ଯନ୍ତ୍ରଣା ସହ୍ୟ କରିବାକୁ ପଡ଼ିଲା । ହେଲେ ତା' ପାଇଁ ତାଙ୍କୁ ନିଜ ଜୀବଦ୍ଦଶାରେ ପାଉଣା ବି ଦେବାକୁ ପଡ଼ିଲା । ଆତ୍ମ - ଦୟାରେ ଗ୍ରସିତ ନ ହୋଇ କିମ୍ବା ଆତ୍ମ - ହନନ ନକରି ସେ ଅପଚରା ଭାବରେ ରହି ଏହି ସମୟକୁ ଅତିବାହିତ କଲେ । ପରିଶ୍ରମ, ଧୈର୍ଯ୍ୟ ଓ ଦୃଢ଼ତା ବଳରେ ପୁଣିଥରେ ତାଙ୍କୁ ବିଜୟଶ୍ରୀ ପ୍ରାପ୍ତ ହେଲା ।"

ବେନଜିରଙ୍କ ଭାଷାରେ "ଭାରତକୁ ଏକ ସ୍ୱାବଲମ୍ବୀ ରାଷ୍ଟ୍ରରେ ପରିଣତ କରିବାର ଦୂରଦୃଷ୍ଟି ଇନ୍ଦିରାଙ୍କଠାରେ ପୂର୍ଣ୍ଣ ମାତ୍ରାରେ ରହିଥିଲା । ଲକ୍ଷ୍ୟ ହାସଲ ପାଇଁ ଏକନିଷ୍ଠ ଭାବରେ ସେ ଦୃଢ଼ ପ୍ରୟାସ କରୁଥିଲେ । ସେହି ରାଷ୍ଟ୍ରୀୟ ପ୍ରତିବଦ୍ଧତାର ମୂଲ୍ୟ ସ୍ୱରୂପ ତାଙ୍କୁ ଅନେକ ସମୟରେ ବ୍ୟକ୍ତିଗତ ସୁଖ ସୁବିଧାକୁ ମଧ୍ୟ ଜଳାଞ୍ଜଳି ଦେବାକୁ ପଡ଼ିଲା ।

ପୂର୍ବରୁ ଆଲୋଚିତ ଏକ ଅଧ୍ୟାୟରେ, ୧୯୮୦ ଦଶକର ଆଫଗାନିସ୍ତାନ ସମସ୍ୟା ପରିପ୍ରେକ୍ଷୀରେ, ମୁଁ ଉଲ୍ଲେଖ କରିଛି, କିପରି ବିଶ୍ୱର ସବୁଠାରୁ ଦୀର୍ଘକାଳ ଧରି ବୈଦେଶିକ ମନ୍ତ୍ରୀ ରହିଥିବା ଆଂଦ୍ରେଇ ଗ୍ରୋମିକୋ ଇନ୍ଦିରାଙ୍କ ଉପରେ ଅସନ୍ତୁଷ୍ଟ ହୋଇଥିଲେ, ଯେତେବେଳେ ଇନ୍ଦିରା ତାଙ୍କ ନିଜସ୍ୱ ଶୈଳୀରେ କହିଲେ ଯେ ସୋଭିଏତ ଋଷ ଆଫଗାନିସ୍ତାନକୁ ନେଇ ଭାରତଠାରୁ କୌଣସି ପ୍ରକାର ସହାୟତା ଆଶା କରିବା କଥା ନୁହେଁ । ତା' ସତ୍ତ୍ୱେ ନିଜ ସଂସ୍କରଣରେ ଗ୍ରୋମିକୋ ଲେଖିଛନ୍ତି, "ସୋଭିଏତବାସୀଙ୍କ ପାଇଁ ଇନ୍ଦିରା ଥିଲେ ଭାରତର ପ୍ରତୀକ । ତାଙ୍କ ପାଖରେ ବିଂଶ ଶତାବ୍ଦୀର ଦୀର୍ଘ ଅନୁଭୂତି ଥିଲା, ସାଙ୍ଗରେ ଭବିଷ୍ୟତ ପାଇଁ ଉଦଗାର ବି ରହିଥିଲା ; ମାତୃରୂପ ଥିଲା, ସାଙ୍ଗରେ ଅନନ୍ତ ଯୌବନ ବି ରହିଥିଲା ; ନିୟମିତ ରୂପରେ ସେ ମଙ୍ଗଳ କରିବା ପାଇଁ ପ୍ରୟାସ କରୁଥିଲେ, ତା' ସାଙ୍ଗରେ ଅନ୍ୟାୟ ଓ ଅତ୍ୟାଚାରର ବିରୋଧ ମଧ୍ୟ କରୁଥିଲେ । ନିଜ ଦେଶକୁ ଶକ୍ତିଶାଳୀ ଓ ସ୍ୱାବଲମ୍ବୀ କରି ଗଢ଼ିବା ସକାଶେ ସେ ସମସ୍ତ ପ୍ରକାର ଉଦ୍ୟମ କରୁଥିଲେ । ଭାରତର ଇତିହାସରେ ସର୍ବଦା ଇନ୍ଦିରା ସମ୍ମାନର ଅଧିକାରୀ ହୋଇ ରହିବେ ।"

ପ୍ରବାଦପୁରୁଷ ଚାର୍ଲସ ଡ଼ି ଗଲଙ୍କ ସଂସ୍କରଣ ମଧ୍ୟ ପୁସ୍ତକରେ ରହିଛି । ସେ କେବେ

କାହାର ଅଯଥା ପ୍ରଶଂସା କରିନାହାନ୍ତି । ଯାହା ସତ ମନେ କରନ୍ତି, କେବଳ ସେତିକି କହନ୍ତି । ଇନ୍ଦିରାଙ୍କର ତାଙ୍କ ପ୍ରତି ଯଥେଷ୍ଟ ସମ୍ମାନ ରହିଥିଲା । ଲୋକ କହନ୍ତି, ଡ଼ି ଗଲ ଥିଲେ ଇନ୍ଦିରାଙ୍କ ଦୃଷ୍ଟିରେ ଆଦର୍ଶ ପୁରୁଷ । ୧୯୬୬ ମସିହା ମାର୍ଚ୍ଚ ମାସରେ ଏଲିସ ପେଲେସରେ ଇନ୍ଦିରାଙ୍କ ସହ ପ୍ରଥମଥର ସାକ୍ଷାତ ହେବାପରେ ଏହି ଫରାସୀ ରାଷ୍ଟ୍ରପୁରୁଷ ନିଜର କେତେଜଣ ଘନିଷ୍ଠ ବନ୍ଧୁଙ୍କୁ କହିଥିଲେ, "ମହିଳାମାନେ ରାଜନୀତିରେ ସାଧାରଣତଃ ସଫଳତା ଅର୍ଜନ କରନ୍ତି ନାହିଁ, ମାତ୍ର ଏହି ମହିଳା ଜଣକ ନିଶ୍ଚୟ ସଫଳତା ଲାଭ କରିବେ ।"

ଆଶ୍ଚର୍ଯ୍ୟର କଥା, ଡି ଗଲଙ୍କ ଅନ୍ତ୍ୟେଷ୍ଟିକ୍ରିୟାରେ ଯୋଗଦେବା ପୂର୍ବରୁ ଇନ୍ଦିରା ଏକଥା ଆଦୌ ଶୁଣି ନଥିଲେ । ଫ୍ରାନ୍ସରେ ଭାରତର ରାଷ୍ଟ୍ରଦୂତ ଡ଼.ଏନ. ଚାଟାର୍ଜିଙ୍କ ଉପସ୍ଥିତିରେ ଏକଥା ଜଣେ ଫରାସୀ ମନ୍ତ୍ରୀ ସେଦିନ ଇନ୍ଦିରାଙ୍କୁ ଜଣାଇଲେ । ମୋର ସହକର୍ମୀ ଏବଂ ପ୍ରିୟ ବନ୍ଧୁ ଦିଲିପ ପଦଗାଁବକର, ଯିଏ ପରବର୍ତ୍ତୀ କାଳରେ "ଟାଇମ୍ସ ଅଫ ଇଣ୍ଡିଆ"ର ସମ୍ପାଦକ ଦାୟିତ୍ୱ ବହନ କଲେ, ସେତେବେଳେ ଉକ୍ତ ପତ୍ରିକାର ସ୍ୱତନ୍ତ୍ର ୟୁରୋପ ପ୍ରତିନିଧି ଭାବରେ ପ୍ୟାରିସଠାରେ ଅବସ୍ଥାପିତ ଥାଆନ୍ତି । ତାଙ୍କୁ ଯେତେବେଳେ କଥାଟି ଜଣାପଡ଼ିଲା, ସେ ତାର ପ୍ରକାଶନ ପାଇଁ ଇନ୍ଦିରାଙ୍କଠାରୁ ଅନୁମତି ଲୋଡ଼ିଲେ । ଦୃଢ଼ ଭାବରେ ଇନ୍ଦିରା ମନାକରି କହିଲେ, ନା । ଦିଲିପ ଯେତେବେଳେ ପଚାରିଲେ, "ମାତ୍ର ମାଡ଼ାମ, କେବେ ତାହେଲେ କଥାଟିକୁ ପ୍ରକାଶ କରିବି ?" ଇନ୍ଦିରାଙ୍କର ସଂକ୍ଷିପ୍ତ ଉତ୍ତର, "ମୋର ମୃତ୍ୟୁ ପରେ, ତୁମ ମୁଣ୍ଡର ବାଳ ଯେତେବେଳେ ଧୂସର ହୋଇଯିବ ।"

ସେ ଯାହାହେଉ, ୧୯୭୨ ମସିହାରେ ଆଂଦ୍ରେ ମାର୍ଲକ୍ସ ନିଜ ପୁସ୍ତକ "ଫଲନ ଓକ୍ସ"ରେ, ଡି ଗଲଙ୍କ ମୃତ୍ୟୁର ଅଳ୍ପ କିଛିଦିନ ପୂର୍ବରୁ, ଲେଖିଛନ୍ତି, ଜେନେରାଲ ଡ଼ି ଗଲଙ୍କୁ ଯେତେବେଳେ ପଚରାଗଲା, ଇନ୍ଦିରା ଗାନ୍ଧିଙ୍କ ସମ୍ପର୍କରେ ତାଙ୍କର ଧାରଣା କ'ଣ, କିମ୍ବଦନ୍ତୀ ପୁରୁଷ ଚାର୍ଲସ ଡି ଗଲ କହିଲେ, "ସେହି ଶୀର୍ଣ୍ଣକାୟ ଦୁଇଟି କାନ୍ଧ, ଯାହାର ଉପରେ ଭାରତର ସମ୍ପୂର୍ଣ୍ଣ ଭାଗ୍ୟ ନିର୍ଭର କରେ, ନିଜ ଦାୟିତ୍ୱର ବୋଝରୁ କଦାପି ଓହରି ଯାଇ ନପାରେ ।"

## ବାପାଙ୍କ ସାଙ୍ଗରେ ତୁଳନା

ଥରେ କାହିଁକି ଅନେକ ଅବସରରେ ଇନ୍ଦିରା କହିଛନ୍ତି, ତାଙ୍କ ବାପା ଥିଲେ ରାଜନୀତିକୁ ବାଟ ଭୁଲି ଚାଲି ଆସିଥିବା ଜଣେ ସନ୍ଥପୁରୁଷ ।" ତାଙ୍କୁ (ବାପାଙ୍କୁ) ସର୍ବୋଚ୍ଚ ପଦବୀ ପାଇଁ ଅହର୍ନିଶ ସଂଗ୍ରାମ କରିବାକୁ ପଡୁନଥିଲା । ତେଣୁ ସେ "ନିଜର ଶତ୍ରୁମାନଙ୍କ ପ୍ରତି ମଧ୍ୟ ଉଦାର ବ୍ୟବହାର କରିପାରୁ ନଥିଲେ ।" ଅର୍ଥାତ ଇନ୍ଦିରାଙ୍କ ସ୍ଥିତି ବାପାଙ୍କଠାରୁ ପୂରାପୂରି ଭିନ୍ନ ଥିଲା । ଇନ୍ଦିରାଙ୍କୁ "ପ୍ରତି ପାଦରେ ଲଢ଼ିବାକୁ ପଡୁଥିଲା ।" ତାଙ୍କ ଆତ୍ମ - ଯଥାର୍ଥତାର ଏହି ପ୍ରୟାସକୁ ଅନେକ ଲୋକ ଅବଶ୍ୟ ଗ୍ରହଣ କରିନପାରନ୍ତି । ତା' ସତ୍ତ୍ୱେ, ଅନେକ ଦେଶବାସୀଙ୍କର ବିଶ୍ୱାସ ଯେ ଇନ୍ଦିରା ହେଉଛନ୍ତି ଦେଶର ସର୍ବୋତ୍କୃଷ୍ଟ ପ୍ରଧାନମନ୍ତ୍ରୀ ଏବଂ ନିଜ ବାପାଙ୍କ ତୁଳନାରେ ଅଧିକ

ଯଶପ୍ରାର୍ଥୀ । ସମସାମୟିକ ଭାରତ ଇତିହାସର ପ୍ରବୀଣ ଛାତ୍ରମାନେ ହୁଏତ ଉକ୍ତ ମତକୁ ସମର୍ଥନ କରିନପାରନ୍ତି, ମାତ୍ର ଆଂଦ୍ରେବେତେ ପୂର୍ବରୁ ଉଦ୍ଧୃତ ଇପିଡ଼ବ୍ଲ୍ୟୁ ନିବନ୍ଧରେ ଏହି ମତ ସହ ସହମତି ଦର୍ଶାଇ କହିଛନ୍ତି ଯେ ଇନ୍ଦିରା ଥିଲେ "ଭାରତର ଶେଷ ପ୍ରଧାନମନ୍ତ୍ରୀ ।"

ନେହେରୁଙ୍କ ଅତ୍ୟନ୍ତ ସୁସଭ୍ୟ ଶାସନକୁ ଅନୁଭବ କରିଥିବା ଦୁଇ ପିଢ଼ିର ଲୋକେ ଅତୀତକୁ ସ୍ମରଣ କରି କହନ୍ତି ଯେ, "ଉଗ୍ରବାଦୀ" ଏବଂ "ପ୍ରତିକ୍ରିୟାଶୀଳ" ଶକ୍ତିର ପ୍ରତିରୋଧ ବିରୁଦ୍ଧରେ ନେହେରୁଙ୍କର ମଧ୍ୟ, ନିଜ କନ୍ୟା ପରି, ଧୈର୍ଯ୍ୟହାନି ଘଟୁଥିଲା । ମାତ୍ର, ନିଜ କନ୍ୟା ପରି, ସେ କେବେ ଗଣତାନ୍ତ୍ରିକ ପଦ୍ଧତିକୁ ସାମୟିକଭାବେ ବି ପ୍ରତ୍ୟାହାର କରିବା କଥା ଚିନ୍ତା କରୁନଥିଲେ । ପରିଣତି ଯାହା ହେଉନା କାହିଁକି ! ୧୯୭୫ ଜୁନ ମାସରେ ଆହ୍ଲାବାଦ ହାଇକୋର୍ଟର ରାୟ ପ୍ରକାଶିତ ହେବା ସତ୍ତ୍ୱେ ଯେତେବେଳେ ଇନ୍ଦିରା ପଦତ୍ୟାଗ କରିବାକୁ ଦୃଢ଼ଭାବେ ମନାକଲେ (ଇମର୍ଜେନ୍‌ସି ଲାଗୁ ହେବାର ଅବ୍ୟବହିତ ପୂର୍ବରୁ), ବମ୍ବେର କେତେଜଣ ବିଶିଷ୍ଟ ଚିନ୍ତାଶୀଳ ବ୍ୟକ୍ତିଙ୍କର ଅଭିମତ ମୁଁ ନେଇଥିଲି । ମୋର ପ୍ରଶ୍ନ ଥିଲା, "ଏହିଭଳି ଏକ ପରିସ୍ଥିତିର ସମ୍ମୁଖୀନ ହୋଇଥିଲେ ସ୍ୱୟଂ ନେହେରୁ କ'ଣ ପଦକ୍ଷେପ ନେଇଥାନ୍ତେ ?" ମୋତେ ନିଜ ମତ ଦେଇଥିବା ୩୬ଜଣ ଯାକ ବ୍ୟକ୍ତି ଗୋଟାଏ ଉତ୍ତର ଦେଇଥିଲେ, "ମାତ୍ର ଅଧମିନିଟ ଭିତରେ ସେ (ନେହେରୁ) ସିଧା ଯାଇ ତ୍ୟାଗପତ୍ର ଦେଇଥାନ୍ତେ ।" ଏହି କାରଣରୁ, ସର୍ବଦା ପିତାଙ୍କ ତୁଳନାରେ ଇନ୍ଦିରା ଦ୍ୱିତୀୟ ସ୍ଥାନ ହିଁ ପାଇପାରିବେ । ତା'ଛଡ଼ା ଗଣତନ୍ତ୍ରକୁ ଉଜ୍ଜୀବିତ କରି ରଖିବାପାଇଁ ନେହେରୁ ଯେଉଁ ସଂସ୍ଥାମାନ ଗଠନ କରିଥିଲେ, ଇନ୍ଦିରା ସେଗୁଡ଼ିକର ସଂରକ୍ଷଣ ପାଇଁ କୌଣସି ପଦକ୍ଷେପ ନେଲେନାହିଁ, ବରଂ ସେଗୁଡ଼ିକୁ ନଷ୍ଟ ହେବାପାଇଁ ଛାଡ଼ିଦେଲେ ।

ଯେ ଯାହାହେଉ,ମୁଦ୍ରାର ଅପର ପାର୍ଶ୍ୱଟିଏ ବି ରହିଛି । ଏହା ନିଃସନ୍ଦେହ ଯେ, ଇନ୍ଦିରାଙ୍କଠାରେ ବାପାଙ୍କର ଦୂରଦୃଷ୍ଟି, ଇତିହାସବୋଧ ଏବଂ ଗଣତାନ୍ତ୍ରିକ ନୀତିନିୟମ ପ୍ରତି ଥିବା ଦୃଢ଼ ବିଶ୍ୱାସର ଅଭାବ ରହିଥିଲା । ମାତ୍ର କ୍ଷମତାର ମହତ୍ତ୍ୱକୁ ସେ ଯେମିତି ବୁଝିଥିଲେ ତଥା ତାକୁ ବ୍ୟବହାର କରିବା ନିମିତ୍ତ ତାଙ୍କ ଭିତରେ ଯେଉଁ ଆଗ୍ରହ ରହିଥିଲା, ସେ ଧରଣର ଆଗ୍ରହ ବାପାଙ୍କ ପାଖରେ କେବେ ନଥିଲା । ସେହି କଥାକୁ ସ୍ପଷ୍ଟକରି ହେନେରି କିସିଂଜର କହିଥିଲେ ଇନ୍ଦିରା ହେଲେ "ଅସଲି ରାଜନୀତିର ଜଣେ ଉପଯୁକ୍ତ କର୍ତ୍ତା ।" ନେହେରୁଙ୍କର ଜଣେ ପ୍ରଶଂସକ ପି.ଏନ. ଧରଙ୍କ ମତରେ, "ଯେଉଁ ଦୃଢ଼ତାର ସହ ସେ ବାଲାଂଦେଶ ସମସ୍ୟା, ୧୯୭୪ ମସିହାରେ ଆର୍ଥିକ ବିପନ୍ନତା, ସିକିମ ସମସ୍ୟା ଏବଂ ପରମାଣୁ ସମସ୍ୟାକୁ ମୁକାବିଲା କଲେ, ତାଙ୍କ ପିତାଙ୍କ ପାଖରେ ସେହି ଧରଣର ଦୃଢ଼ତା ରହିଥିଲା ବୋଲି ମନେହୁଏ ନାହିଁ ।" ଶାରଦା ପ୍ରସାଦଙ୍କର ମନ୍ତବ୍ୟ ମଧ୍ୟ ଏଠାରେ ପ୍ରଣିଧାନଯୋଗ୍ୟ । ସେ କହିଛନ୍ତି, ଆବଶ୍ୟକତା ପଡ଼ିଲେ, ଇନ୍ଦିରା "ତୀବ୍ର ଆଘାତ" ଦେଉଥିଲେ ସତ, ମାତ୍ର ସାଙ୍ଗରେ ଏକଥା ବି ସତ ଯେ ଦଶ ୟୁନିଟ ଶକ୍ତିର ପ୍ରୟୋଗ ଦ୍ୱାରା ସମ୍ପନ୍ନ ହେଲାଭଳି କାମ ସକାଶେ ସେ ଶହେ ୟୁନିଟ ଶକ୍ତି ପ୍ରୟୋଗ କରୁଥିଲେ ।"

## ଶକ୍ତି ଓ ଦୃଢ଼ତାର ପ୍ରତୀକ

ମୋର ଏହି ଜୀବନୀ ଲେଖା ସମୟରେ ଇନ୍ଦିରା ଗାନ୍ଧି ଏବଂ ତାଙ୍କ ଚିନ୍ତାଧାରାକୁ ନେଇ ଯେତେଜଣ ବିଦେଶୀ ଗବେଷକ ଗବେଷଣା କରିଛନ୍ତି, ତାହା ଦେଖି ମତେ ଖୁବ ଆଶ୍ଚର୍ଯ୍ୟ ଅନୁଭବ ହେଉଛି । ଚନ୍ଦ୍ରଧରୁ ଅନେକ ମତେ ଭେଟିବା ପାଇଁ ଆସିଛନ୍ତି । ପ୍ରତ୍ୟେକ ତାଙ୍କ ସମ୍ବନ୍ଧରେ ବହୁଭାବରେ ଉଚ୍ଚାରିତ ଦୁଇଟି ଶବ୍ଦ କହନ୍ତି, ସେ ଥିଲେ "ସୁଦୃଢ଼" ଓ "ଶକ୍ତିଶାଳୀ" । ଏହି ଉକ୍ତିରେ ଅନେକ ସତ୍ୟତା ରହିଛି । ଏଥିରୁ ଏକଥା ମଧ୍ୟ ସ୍ପଷ୍ଟ ହୁଏ, କାହିଁକି ଅଧିକାଂଶ ଲୋକ ଇନ୍ଦିରା ଭଳି ଜଣଙ୍କୁ ଦିଲ୍ଲୀ ରାଜଗାଦିରେ ଅଧିଷ୍ଠିତ ହେବା କଥା ବୋଲି ଯୁକ୍ତି ବାଢ଼ନ୍ତି । ତାଙ୍କ ପାଖରେ କ୍ଷମତା ନଥିଲା ସମୟରେ ମଧ୍ୟ ତାଙ୍କ ଶକ୍ତି ଊଣା ପଡ଼ି ନଥିଲା । ତାଙ୍କ ନିଷ୍ପତ୍ତିର ଦୃଢ଼ତାକୁ ଦେଖିଲେ ବାସ୍ତବିକତା ସାମାନ୍ୟ ଜଟିଳ ମନେହୁଏ । ଥରେ ନିଷ୍ପତ୍ତି ନେଲାପରେ, ତାହା ଯେତେ ବିପଦ ସଂକୁଳ ହେଉ ନା କାହିଁକି, ତାକୁ କେହି ପରିବର୍ତ୍ତନ କରିପାରିବେ ନାହିଁ । ମାତ୍ର କେବେ କେବେ ସେ ନିଷ୍ପତ୍ତି ନେବାରେ ବିଳମ୍ବ ଅବଲମ୍ବନ କରୁଥିଲେ ଏବଂ ଶେଷରେ ଅନନ୍ୟୋପାୟ ନହେବା ଯାଏ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରୁନଥିଲେ ।

ଉଦାହରଣସ୍ୱରୂପ, ବହୁତ ପୂର୍ବରୁ ପଞ୍ଜାବର ବିଚ୍ଛିନ୍ନତାବାଦୀ ଏବଂ ଉଗ୍ରବାଦୀମାନଙ୍କ ଉପରେ ତାଙ୍କର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାର ଆବଶ୍ୟକତା ରହିଥିଲା । ତାଙ୍କର "ଶେଷ ସଂଗ୍ରାମ" ଖୁବ୍ ଅଧିକ ବିଧ୍ୱଂସକ ଏବଂ ଦୁଃଖଦାୟୀ ହେବା ପଛରେ ବଡ଼ କାରଣ ହେଲା, ସେ ସଂଗ୍ରାମରେ ଝାସ ଦେବାରେ ଅଯଥା ଅନେକ ଡ଼େରି କରିଦେଲେ । ୧୯୬୯ ମସିହାରେ କଂଗ୍ରେସଦଳର ବିଭାଜନ ସମୟରେ ମଧ୍ୟ ଦଳୀୟ "ଏକତା" ରକ୍ଷା କରିବା ଆଶାରେ ଅନେକ ବହୁ ମୂଲ୍ୟବାନ ସମୟର ସେ ଅପବ୍ୟୟ କରିଥିଲେ । ସାଙ୍ଗରେ ଏକଥା ମଧ୍ୟ ସ୍ୱୀକାର କରିବାକୁ ହେବ ଯେ ଦୃଢ ନିଷ୍ପତ୍ତି ସମ୍ପର୍କରେ ରହିଥିବା ତାଙ୍କ ଧାରଣାକୁ ଆଦୌ ଉପେକ୍ଷା କରାଯାଇ ନପାରେ ।

ସେତେବେଳେ ସେ କେବଳ ଶାସ୍ତ୍ରି ମନ୍ତ୍ରୀମଣ୍ଡଳରେ ସୂଚନା ଓ ପ୍ରସାରଣ ମନ୍ତ୍ରୀ ଥାନ୍ତି । ପଞ୍ଜାବୀ ଭାଷା - ଭାଷୀ ସୁବା ଗଠନ ପାଇଁ ମହତ୍ତ୍ୱପୂର୍ଣ୍ଣ କ୍ୟାବିନେଟ କମିଟିର ଅଧ୍ୟକ୍ଷ ପଦରେ ଲାଲବାହାଦୁର ଶାସ୍ତ୍ରୀ ତାଙ୍କୁ ନିଯୁକ୍ତ କରିଥାନ୍ତି । ଗତ ଅନେକ ବର୍ଷ ଧରି ପଞ୍ଜାବୀ ସୁବା ଗଠନ ପାଇଁ ଅକାଳୀମାନେ ଦାବି କରୁଥାନ୍ତି । ଇନ୍ଦିରା ଗାନ୍ଧିଙ୍କୁ ପ୍ରସ୍ତାବ ଦିଆଗଲା ଯେ ଅତି ସମ୍ମାନାସ୍ପଦ ଜଣେ ଭାରତୀୟ ପ୍ରଶାସନିକ ଅଧିକାରୀ ବି.ଏସ. ରାଘବନ କମିଟିର ସଚିବ ଦାୟିତ୍ୱରେ ରହିବେ । ରାଘବନଙ୍କୁ ଔପଚାରିକ ଭାବରେ ଦାୟିତ୍ୱ ଦିଆଯିବା ପୂର୍ବରୁ ସେ ତାଙ୍କୁ ଡ଼ାକି ପଞ୍ଜାବୀ ସୁବା ପାଇଁ ଚାଲିଥିବା ଦାବି ସମ୍ବନ୍ଧରେ ତାଙ୍କର ବ୍ୟକ୍ତିଗତ ମତ ପଚାରିଲେ । ରାଘବନ କହିଲେ, ସେ ପଞ୍ଜାବୀ ସୁବାର "ପକ୍ଷଧର" ଏବଂ ସେ ନେଇ ଯଥୋଚିତ ଯୁକ୍ତି ମଧ୍ୟ ଉତ୍‌ଥାପନ କଲେ । ଇନ୍ଦିରା କହିଲେ, ତାଙ୍କର ବି ସେହି ଏକା ମତ । ଇନ୍ଦିରାଙ୍କର ବିଂଶତମ ଶ୍ରାଦ୍ଧ ଦିବସରେ ରାଘବନ ଲେଖିଛନ୍ତି, "ତେଣିକି କେତେ ମାସ ଧରି ଆମେ କମିଟିର କାର୍ଯ୍ୟାବଳୀକୁ ଲିପିବଦ୍ଧ

କଲୁ, ପ୍ରମାଣଗୁଡ଼ିକୁ ରେକଡ଼ିଂ କଲୁ ତଥା ଆହୁରି ଅନେକ କାମ କଲୁ । ମାତ୍ର କ୍ୟାବିନେଟ କମିଟିର ଏହି ରିପୋର୍ଟ ଆମର ମୂଳ ମତକୁ ଅଧିକ ବଳିଷ୍ଠ କରିବାରେ ହିଁ ବ୍ୟବହୃତ ହେଲା ।"

ରାଘବନ ଜାତୀୟ ସଂହତି ପରିଷଦର ସଚିବ ପଦବୀରେ ମଧ୍ୟ କାର୍ଯ୍ୟ କରିଥିଲେ । ଇନ୍ଦିରା ତାଙ୍କ ପିତାଙ୍କ ସମୟରୁ ପରିଷଦର ସଭ୍ୟ ରହି ଆସିଥିଲେ । ପ୍ରଧାନମନ୍ତ୍ରୀ ହେବାପରେ ହେଲେ ତାର ଅଧକ୍ଷ । ସେହି ପରିପ୍ରେକ୍ଷୀରେ ରାଘବନଙ୍କର ଆଉ ଏକ ମନ୍ତବ୍ୟ ବେଶ ପ୍ରଣିଧାନଯୋଗ୍ୟ । "ପ୍ରତ୍ୟେକ ବୈଠକରେ, ଯାତୁ ସ୍ୟାତୁ ଯାହା ସବୁ ବିଚାର ଆଲୋଚନା ହୁଏ, ତା' ମଝିରେ ବିଧିବଦ୍ଧ ଭାବରେ ଗୋଟାଏ ପ୍ରଶ୍ନ ସେ ପଚାରନ୍ତି, ସେ ସବୁ ଠିକ୍ ଅଛି । ଶେଷରେ ଆମେ କ'ଣ ନିଷ୍ପତ୍ତି ନେବା ?"

ଘଟଣା କ୍ରମରେ ରାଘବନ ଇନ୍ଦିରାଙ୍କ ସାଙ୍ଗରେ ଭିନ୍ନ ଭିନ୍ନ ଦାୟିତ୍ୱରେ ରହିଥିଲେ ଏବଂ ନିଜ ସାମର୍ଥ୍ୟ ଏବଂ କାର୍ଯ୍ୟଦକ୍ଷତା ଯୋଗୁଁ ତାଙ୍କ ଉପରେ ସୁପ୍ରଭାବ ମଧ୍ୟ ପକାଇ ପାରିଥିଲେ । ମଝିରେ ଆସିଲା ଜନତା ସରକାର । ଇମର୍ଜେନ୍‌ସି ସମୟରେ ଗୁଇନ୍ଦା ବ୍ୟୁରୋ ଏବଂ ସିବିଆଇ କାମକୁ ତଦନ୍ତ କରିବାପାଇଁ ଏଲ.ପି.ସିଂ କମିଟି ଗଠିତ ହେଲା । ରାଘବନ ହେଲେ କମିଟିର ସଦସ୍ୟ ସଚିବ । ଇନ୍ଦିରା ଗାନ୍ଧି ଏଥିରେ ଅତ୍ୟନ୍ତ ଅସନ୍ତୁଷ୍ଟ ହେଲେ । ପୁଣି ଯେତେବେଳେ ସେ (ଇନ୍ଦିରା) କ୍ଷମତାକୁ ପ୍ରତ୍ୟାବର୍ତ୍ତନ କଲେ, ରାଘବନଙ୍କୁ ତାଙ୍କ ଅଧୀନରେ କାର୍ଯ୍ୟ କରିବାକୁ ପଡ଼ିଲା । ତାଙ୍କ ପ୍ରତି ଇନ୍ଦିରାଙ୍କ ବାହ୍ୟ ବ୍ୟବହାରରେ କୌଣସି ତ୍ରୁଟି ନଥିଲା । ମାତ୍ର ପେଟ୍ରୋଲିୟମ ବିଭାଗର ସଚିବ ପଦରେ ତାଙ୍କର ନିଯୁକ୍ତି ଓ ପଦୋନ୍ନତି ପ୍ରଶ୍ନ ଯେତେବେଳେ ଆସିଲା, ଇନ୍ଦିରା ଦୃଢ଼ଭାବରେ ତାକୁ "ଭିଟୋ" ପ୍ରୟୋଗ କରି ନାକଚ କରିଦେଲେ । ରାଘବନଙ୍କ ମତରେ ତାଙ୍କ "ପ୍ରତିଶୋଧ ପରାୟଣ ଚରିତ୍ରର" ଏ ହେଲା ଏକ ଛୋଟିଆ ଉଦାହରଣ ।

## ଦୁଇଟି ବିଶେଷ ଗୁଣ

ପୂର୍ବରୁ ଲିଖିତ ଇନ୍ଦିରା ଗାନ୍ଧିଙ୍କ ଜୀବନୀ ପୁସ୍ତକର ସାରକଥାରେ ମୁଁ ତାଙ୍କର ଦୁଇଟି ଅତି ବିଶେଷ ଗୁଣ ଉପରେ ରେଖାପାତ କରିଥିଲି ଯେ ତାଙ୍କର ଜୀବନ ଓ କାର୍ଯ୍ୟ ଭିତରେ ଉକ୍ତ ଦୁଇଟି ଗୁଣ ବାକି ସବୁ ଗୁଣକୁ ବଳି ପଡ଼ନ୍ତି । ସ୍ୱାଧୀନତା ପରବର୍ତ୍ତୀ ସମୟରେ ଭାରତକୁ ନେତୃତ୍ୱ ଦେଇଥିବା ସମସ୍ତ ବ୍ୟକ୍ତିଙ୍କ ମଧ୍ୟରେ ତାହା ତାଙ୍କୁ ଅନନ୍ୟ ବ୍ୟକ୍ତି ଭାବରେ ପ୍ରତିଷ୍ଠିତ କରେ । ସେ ଭିତରେ ଗୋଟାଏ ଗୁଣ ହେଲା ତାଙ୍କର ଦରିଦ୍ର ଜନତା ପ୍ରତି ସହାନୁଭୂତି । ଭୀଷଣ ଖରା ଏବଂ ପ୍ରବଳ ଶୀତରେ ସେମାନେ ଘଣ୍ଟା ଘଣ୍ଟା ଧରି କେବଳ ତାଙ୍କର ଦର୍ଶନ ପାଇଁ ଅପେକ୍ଷା କରି ରହୁଥିଲେ । ଉଚ୍ଚ ମଞ୍ଚରୁ ସେ ଦେଉଥିବା ଭାଷଣର ଗୋଟାଏ ଶବ୍ଦ ବି ସେମାନେ ବୁଝୁ ନଥିଲେ, ଅଥଚ ପୂରା ଧ୍ୟାନ ଦେଇ ତାଙ୍କୁ "ଶୁଣୁଥିଲେ" । ଅନେକଙ୍କୁ ଜଣା ଥିଲା ଯେ ଦାରିଦ୍ର୍ୟ ଦୂରୀକରଣ ନିମନ୍ତେ ନେଇଥିବା ତାଙ୍କ ପ୍ରତିଜ୍ଞା ହୁଏତ କାର୍ଯ୍ୟକାରୀ ହୋଇପାରିବ ନାହିଁ । ତା' ସତ୍ତ୍ୱେ, ଲୋକଙ୍କର ଦୃଢ଼ ବିଶ୍ୱାସ ରହିଥିଲା, ସେ ଲୋକଙ୍କ ପ୍ରତି ଯତ୍ନଶୀଳ । ୧୯୯୮ ମସିହା ଶୀତ ଋତୁରେ, ତାଙ୍କ

ମୃତ୍ୟୁର ଚଉଦ ବର୍ଷ ପରେ ଦିଲ୍ଲୀରେ ଡ୍ରପ୍ସି ରୋଗ ବ୍ୟାପିଲା । ଖାଇବା ପାଇଁ ବ୍ୟବହୃତ ହେଉଥିବା ସୋରିଷ ତେଲରେ ଲାଭଖୋର ବ୍ୟବସାୟୀଙ୍କ ଦ୍ୱାରା ଅପମିଶ୍ରଣ ଯୋଗୁଁ ଏହି ରୋଗ ବ୍ୟାପିଥିଲା । ଏହି ରୋଗ ହେତୁ ଅନେକ ଲୋକ ମୃତ୍ୟୁବରଣ କଲେ । ଆମ ଘରେ ନିଜର ଦୁଃଖ କାହାଣୀ କହି ବାହୁନି ହେବାବେଳେ ଅନେକ ଗରିବ ସ୍ତ୍ରୀ ଲୋକ ମୋ ପତ୍ନୀଙ୍କ ଆଗରେ କହୁଥାନ୍ତି, "ଇନ୍ଦିରାଜୀ ଆଜି ଥିଲେ, ଏକଥା ହେବାକୁ ଦେଇ ନଥାନ୍ତେ ।"

ତା'ଠାରୁ ମହତ୍ତ୍ୱପୂର୍ଣ୍ଣ ଗୁଣ ହେଲା ତାଙ୍କର ଦେଶ ପ୍ରତି ରହିଥିବା ଗଭୀର ଭକ୍ତି ଓ ପ୍ରତିବଦ୍ଧତା । ଦେଶର ଏକତା, ସାମର୍ଥ୍ୟର ବିକାଶ ଏବଂ ସାମରିକଠାରୁ ଆରମ୍ଭକରି ବିଜ୍ଞାନ, ଅର୍ଥନୀତିରୁ ସଂସ୍କୃତି, ପ୍ରଯୁକ୍ତିରୁ ରାଜନୀତି ଆଦି ପ୍ରତିକ୍ଷେତ୍ରରେ ସ୍ୱାୟତ୍ତତାର ବିକାଶ ଓ ଅଭିବୃଦ୍ଧି ପାଇଁ ସେ ପ୍ରତିବଦ୍ଧ ଥିଲେ । ଦେଶର ସମ୍ମାନ ଓ ସ୍ୱାଧୀନତାକୁ ବଳିଦେବାକୁ ପଡ଼ିଲେ ସେ ହୁଏତ ନିଜକୁ ଗୁଳିକରି ଦେଇଥାନ୍ତେ, ଅଥବା ବିଷପାନ କରି ଆତ୍ମହତ୍ୟା କରିଥାନ୍ତେ । ଗୋଟାଏ ଶବ୍ଦରେ କହିଲେ, ମାତୃଭୂମି ଭାରତ ହିଁ ତାଙ୍କ ପାଇଁ ଏକମାତ୍ର ଈଶ୍ୱର ।

ନିଜ ଶେଷ ଇଚ୍ଛା ତଥା ଉଇଲରେ ସେ କହିଛନ୍ତି, "ମୋର ଦେଶବାସୀ ଏବଂ ଦେଶ ପାଇଁ ମୋର ପ୍ରେମର ବ୍ୟାପକତାକୁ ଘୃଣାର କଳାଦାଗ କଦାପି ଆଚ୍ଛାଦିତ କରି ନ ପାରେ । ମୋର ଦେଶକୁ ବିକଶିତ କରିବା ପାଇଁ ମୋର ଲକ୍ଷ୍ୟ ଓ ଉଦ୍ଦେଶ୍ୟକୁ କୌଣସି ଶକ୍ତି ପ୍ରତିରୋଧ କରି ନ ପାରେ । ଭାରତୀୟ ହେବା ସତ୍ତ୍ୱେ ଯେ ଜଣେ ଗର୍ବ ଅନୁଭବ କରିବ ନାହିଁ, ଏକଥା ଆଦୌ ମୁଁ ଚିନ୍ତା କରିପାରେ ନାହିଁ ।"

ମୋର ପୁସ୍ତକର ସାରକଥାକୁ ନେଇ ପ୍ରତିକ୍ରିୟା ସ୍ୱରୂପ ଦୁଇଟି ପରସ୍ପର ବିରୋଧୀ ମତ ପ୍ରକାଶ ପାଇଥିଲା । ଇନ୍ଦିରାଙ୍କ ବଳିଦାନର ପାଞ୍ଚବର୍ଷ ପରେ ବି ତାଙ୍କୁ ନେଇ ଅଭିମତ କେତେ ମାତ୍ରାରେ ସ୍ପର୍ଶକାତର ଏବଂ ବ୍ୟକ୍ତିଗତ ସ୍ତରରେ ବି ବିଭାଜିତ, ତାହା ଏଥିରୁ ପ୍ରତିଫଳିତ ହୁଏ । ପୁସ୍ତକର ଅର୍ଦ୍ଧେକ ପ୍ରାୟ ସମୀକ୍ଷକ ମତ ଦେଲେ, ମୁଁ ତାଙ୍କ (ଇନ୍ଦିରାଙ୍କ) କାମକୁ ଅଯଥା "ଅତିରଂଜିତ" କରି, ତାଙ୍କ "ଦୁର୍ଗୁଣ"ର ତିକ୍ତତାକୁ ଊଣା କରିବାକୁ ପ୍ରୟାସ କରିଛି । କେତେକ ସମୀକ୍ଷକ ଇନ୍ଦିରାଙ୍କ ଦେଶଭକ୍ତିକୁ ପ୍ରଶ୍ନ କଲେ । ଆଉ ଅର୍ଦ୍ଧେକ ସମୀକ୍ଷକଙ୍କ ମତରେ, ମୁଁ ଇମର୍ଜେନ୍‌ସିର ଅଯଥା କଟୁ ସମାଲୋଚନା କରିଛି ଏବଂ ଦେଶ ପ୍ରତି ଇନ୍ଦିରାଙ୍କ ସେବା ଭାବକୁ "ଉପେକ୍ଷା" କରିଛି । ଅଳ୍ପ କେତେକ ଭାରତୀୟ ଏବଂ ଭାରତ ସମ୍ବନ୍ଧରେ ରୁଚି ନେଉଥିବା ଅଧିକାଂଶ ବିଦେଶୀ ପାଠକ କହିଲେ, ଯେ ମୁଁ ନିଷ୍ଠାର ସହ ବାସ୍ତବିକତାକୁ ରୂପାୟିତ କରିବାକୁ ପ୍ରୟାସ ମାତ୍ର କରିଛି । ସବୁଠାରୁ ଭିନ୍ନ ଥିଲା ଭାରତର ବ୍ରିଟିଶ ଉଚ୍ଚାଯୁକ୍ତ ଭାବରେ କାର୍ଯ୍ୟ କରିଥିବା ସାର ଜନ ଥମସନଙ୍କ ମନ୍ତବ୍ୟ । "ସ୍ଟେଟ୍‌ସମେନ" ପତ୍ରିକାର ରବିବାର ସଂଖ୍ୟାରେ ସେ ଲେଖିଥିଲେ, "ଇନ୍ଦିରା ଗାନ୍ଧିଙ୍କ ସମ୍ବନ୍ଧରେ ପୂର୍ଣ୍ଣ ରୂପରେ ତଟସ୍ଥ ହୋଇ କୌଣସି ବିଚାର ରଖିବା ଅତି କାଠିକର ପାଠ । ତାହା କେହି କରିପାରି ନାହାନ୍ତି । ଇନ୍ଦର ମାଲହୋତ୍ରାଙ୍କ ଦ୍ୱାରା ମଧ୍ୟ ତାହା ସମ୍ଭବପର ହୋଇନାହିଁ ।"

ସେହି ପ୍ରକାଶନର ଷୋହଳ ବର୍ଷ ପରେ ଆଜି ଇନ୍ଦିରା ଗାନ୍ଧିଙ୍କ ସମ୍ବନ୍ଧରେ ଭାରତୀୟ ମତ ନାଟକୀୟ ଭାବେ ପରିବର୍ତ୍ତିତ ହୋଇଛି । ତାଙ୍କ କଟୁ ସମାଲୋଚକମାନେ ମଧ୍ୟ ମାନିନେଲେଣି ଯେ, ଇନ୍ଦିରାଙ୍କ ସବୁ ଭୁଲ ସତ୍ତ୍ୱେ, ସେ ପ୍ରଶଂସା ପାଇବା ପାଇଁ ଯୋଗ୍ୟ । ସମୟର ପରିବର୍ତ୍ତନ ହେବା ସାଙ୍ଗରେ ଅଯୌକ୍ତିକ ଆବେଗର ପରିମାଣ ଜଣା ହୋଇଛି । ସାଙ୍ଗରେ ଅତୀତକୁ ବସ୍ତୁନିଷ୍ଠ ଭାବରେ ଦେଖିବା ନିମନ୍ତେ ଅବସର ମଧ୍ୟ ମିଳିଛି । ତା'ଛଡ଼ା ସେ ଏକ ଅସାଧାରଣ ନେତୃତ୍ୱର ଅଧିକାରିଣୀ ଥିଲେ ବୋଲି ଯେଉଁ ବସ୍ତୁନିଷ୍ଠ ମତ ପ୍ରକାଶ ପାଉଛି, ତା' ପଛରେ ଗୋଟାଏ ମହତ୍ତ୍ୱପୂର୍ଣ୍ଣ କାରଣ ହେଲା, ପରବର୍ତ୍ତୀ ପିଢ଼ି ତାଙ୍କ ପରେ ଅନ୍ୟୁନ ଦଶ ଜଣ ପ୍ରଧାନମନ୍ତ୍ରୀଙ୍କୁ ପରଖି ସାରିଲାଣି । ସେ ମଧ୍ୟରୁ ଦୁଇଜଣ ପ୍ରଧାନମନ୍ତ୍ରୀ ଆସିଲେ ଇନ୍ଦିରାଙ୍କ ଦୁଇଟି ଇନିଂସ୍‌ର ମଧ୍ୟକାଳୀନ ସମୟରେ ; ଅନ୍ୟମାନେ ଆସିଲେ ବିଗତ ଦୁଇ ଦଶନ୍ଧି ମଧ୍ୟରେ । ଯେ କୌଣସି ମାନଦଣ୍ଡ ନେଇ ବିଚାର କଲେ ଇନ୍ଦିରା ଅନ୍ୟ ସମସ୍ତଙ୍କ ଅପେକ୍ଷା ଢ଼େର ଆଗରେ ରହିବେ - ଏଥିରେ ସନ୍ଦେହ ନାହିଁ ।

୨୦୦୫ ମସିହା ସ୍ୱାଧୀନତା ଦିବସରେ 'ହିନ୍ଦୁସ୍ତାନ ଟାଇମ୍‌ସ୍' ତାର ପାଠକମାନଙ୍କ ଜରିଆରେ କରିଥିବା ମତଦାନରେ ଇନ୍ଦିରାଙ୍କୁ ହିଁ "ସର୍ବୋତ୍ତମ ନେତା" ବୋଲି ନିର୍ବାଚିତ କରାଯାଇଥିଲା । ତାଙ୍କ ପଛକୁ ଦ୍ୱିତୀୟ ସ୍ଥାନରେ ରହିଲେ ମହାତ୍ମା ଗାନ୍ଧି ଏବଂ ଜବାହରଲାଲ ନେହେରୁ । ଏଠାରେ ଅବଶ୍ୟ ମୋର କହି ରଖିବା ଉଚିତ ଯେ, ଏହି ମତଦାନ ପଛରେ ପ୍ରକୃତ ଲୋକମତ ଜଣାପଡ଼ିବା କଷ୍ଟ, କାରଣ ମତଦାତାଙ୍କ ମଧ୍ୟରେ ଅଧିକାଂଶ ହେଲେ ସହରୀ ଯୁବଗୋଷ୍ଠୀ । ତା' ସତ୍ତ୍ୱେ, ଇନ୍ଦିରା ଗାନ୍ଧିଙ୍କର ସ୍ଥାନ ଭାରତୀୟ ଜନମାନସରେ କେତେ ଉଚ୍ଚରେ, ତାହା ଏଥିରୁ ପ୍ରତିଫଳିତ ହୁଏ । ଦେଶର ସୌଭାଗ୍ୟ ଯେ ଆମ ମହାନ ନେତୃତ୍ୱର ଆଗ ଧାଡ଼ିରେ ମହାତ୍ମା ଗାନ୍ଧି, ଜବାହରଲାଲ ନେହେରୁ ଏବଂ ବଲ୍ଲଭଭାଇ ପଟେଲ ଭଳି ରାଷ୍ଟ୍ରପୁରୁଷ ରହିଛନ୍ତି । ସେମାନେ ନିଶ୍ଚିତ ରୂପରେ ଇନ୍ଦିରା ଗାନ୍ଧିଙ୍କ ଅପେକ୍ଷା ଆଗ ଧାଡ଼ିରେ ରହିବେ । ମାତ୍ର, ବାକି ଯେତକ ନେତୃବୃନ୍ଦ ରହିଲେ ସେମାନଙ୍କ ଆଗରେ ଇନ୍ଦିରାଙ୍କ ସ୍ଥାନ ସୁରକ୍ଷିତ ରହିବ ଏବଂ ଭବିଷ୍ୟତରେ ମଧ୍ୟ ଅନେକ ଦିନ ପର୍ଯ୍ୟନ୍ତ ସ୍ଥିତିରେ ପରିବର୍ତ୍ତନ ହେବ ନାହିଁ - ଏଥିରେ ଆଦୌ ଦ୍ୱିରୁକ୍ତି ନାହିଁ ।

